# ଶ୍ରୀମା ସାରଦାଦେବୀ

ଲେଖକ:

ଶ୍ରୀ ସୌରୀବନ୍ଧୁ କର

ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଶ୍ରୀମା ସାରଦାଦେବୀ


ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୨୦୦୪

ମୁଦ୍ରଣ : ଶାରଳା ଗ୍ରାଫିକ୍ସ ଏବଂ ସଙ୍ଗୀତା ପ୍ରିଣ୍ଟର୍ସ

ମୂଲ୍ୟ : ବନ୍ଧାଇ-ଟ ୮୦.୦୦
ସାଦା- ଟ ୬୫.୦୦


## SRI MAA SARADA DEVI


Sri Souribandhu Kar



Publisher :
Sri N.P. Misra
Cuttack Students' Store
Balubazar, Cuttack - 753002

Principal Adviser :
Sri R.P.Misra

First Edition : 2004

Printers : Sarala Graphics & Sangeeta Printers,
Cuttack

Price: Deluxe-Rs 80.00 only
Popular Rs 65.00only

# ଉତ୍ସର୍ଗ

ରାମକୃଷ୍ଣ ମଠ ଓ ମିସନ୍‌ର ଅଧ୍ୟକ୍ଷ, ବରେଣ୍ୟ ସନ୍ନ୍ୟାସୀ,
ପ୍ରଖ୍ୟାତବାଗ୍ମୀ
ପରମପୂଜ୍ୟ ଶ୍ରୀମଦ୍ ସ୍ୱାମୀ ରଙ୍ଗନାଥାନନ୍ଦଜୀ ମହାରାଜାଙ୍କ
କରକମଳରେ ସମର୍ପିତ

# ନିଜ ମନର କଥା

ଶ୍ରୀମା' ସାରଦାଦେବୀଙ୍କ ସଂପର୍କରେ ବହିଟିଏ ଲେଖିବାର କଳ୍ପନା ବହୁଦିନରୁ ମନରେ ଥିଲେ ମଧ୍ୟ କାର୍ଯ୍ୟକାରୀ ହୋଇ ପାରି ନଥିଲା । ଲେଖି ନ ପାରିବାର ଅନେକ ବ୍ୟକ୍ତିଗତ କାରଣ ଅବଶ୍ୟ ଥିଲା । ୧୯୮୫ ମସିହାରେ ଠାକୁର ଶ୍ରୀରାମକୃଷ୍ଣଙ୍କର ଜୀବନୀ ସଂପର୍କିତ ବହିଟିଏ ଲେଖିଥିଲି । ସେ ବର୍ଷ ଥିଲା ଠାକୁରଙ୍କର ୧୫୦ତମ ଜନ୍ମଜୟନ୍ତୀ ବର୍ଷ । ଠାକୁରଙ୍କ ସଂପର୍କରେ ଲେଖିବାର ଆନନ୍ଦାନୁଭୂତିରେ ଏତେ ତଲ୍ଲୀନ ହୋଇଥିଲି ଯେ ତାହା ମୋତେ ମୋର ନିଜ ଜନ୍ମଦାତ୍ରୀ ମାଆର ମୃତ୍ୟୁର ଦୁଃଖକୁ ସମ୍ମୁଖୀନ ହେବାରେ ଅସୀମ ଧୈର୍ଯ୍ୟ ଦେଇଥିଲା । ଠାକୁର ଶ୍ରୀରାମକୃଷ୍ଣଙ୍କର ଅପାର କରୁଣାରୁ ସେ ଦୁଃଖ ଭସାମେଘ ପରି ଭାସି ଯାଇଥିଲା ।

ମନରେ କଳ୍ପନା ଥିଲା ଶ୍ରୀମା'ଙ୍କୁ ଲେଖାମାଧ୍ୟମରେ କିଛିଟା ଭକ୍ତି ନିବେଦନ କରିବା ପାଇଁ । ଏହା ମଧ୍ୟରେ ଜୀବନର ଏହି ଦୀର୍ଘ କୋଡିଏ ବର୍ଷ କେମିତି ଚାଲିଗଲା ଜାଣି ହେଲାନି । କିନ୍ତୁ ମନରେ ଥାଏ ଶ୍ରୀମା'ଙ୍କ ପ୍ରତି ଗଭୀର ଭକ୍ତି । "କାହାରି ଦୋଷ ଦେଖିବ ନାହିଁ, ଦୋଷ ଦେଖିବ ନିଜର । କେହି ପର ନୁହେଁ, ସମସ୍ତେ ଆପଣାର," ଏହି ମହାବାକ୍ୟ ଯେପରି ଜୀବନର ବ୍ରତ ହୋଇ ଜୀବନକୁ ନିୟନ୍ତ୍ରିତ କରି ଚାଲିଲା ।

ସୁଖ ଦୁଃଖ ଭରା ଜୀବନରେ ଶ୍ରୀମା'ଙ୍କ ସଂପର୍କରେ ବହିଟିଏ ଲେଖିବା କଳ୍ପନାରେ ହିଁ ରହିଯାଇଥାନ୍ତା, ଯଦି ଜୀବନରେ ପୁନଶ୍ଚ ଗଭୀର ଯନ୍ତ୍ରଣା ମିଳି ନଥାନ୍ତା । ସେଇ ଯନ୍ତ୍ରଣା ଥିଲା ମୋର ଏକ୍‌ସିଡେଣ୍ଟରେ ପଡ଼ିବା । ସାମାନ୍ୟ କୁକୁରର ଆଘାତରେ ମୋର ଗୋଡ଼ ଏପରି ଭାଙ୍ଗିଗଲା ଯେ ମୋତେ ବିଛଣାରେ ଦୀର୍ଘ ଦୁଇମାସ ପଡ଼ିରହିବାକୁ ହେଲା । ଏହି ଅତ୍ୟନ୍ତ ଦୁଃଖଦ ସମୟରେ, ଠାକୁର ଶ୍ରୀରାମକୃଷ୍ଣ ଓ ଶ୍ରୀମା'ସାରଦାଙ୍କର ଜୀବନୀ ଓ ବାଣୀ ଯେପରି ମୋ ମନର ଆଘାତ ଉପରେ ବିଷଲ୍ୟକରଣୀ ଔଷଧ ପରି ଲାଗିଲା । ଜୀବନୀ ଦୁଇଟିକୁ ସଦାବେଳେ ପଢ଼ିଚାଲିଲି ଏବଂ ମନେ ମନେ ସଂକଳ୍ପ କଲି ଟିକିଏ ସୁସ୍ଥ ହେଲେ ଲେଖା ମାଧ୍ୟମରେ ଭକ୍ତି ଅର୍ଘ୍ୟ ଅର୍ପଣ କରିବି ।

ଯୋଗକୁ ଏବର୍ଷ ପାଳିତ ହେଉଛି ଶ୍ରୀଶ୍ରୀମା' ସାରଦାଦେବୀଙ୍କର ୧୫୦ତମ ଜନ୍ମଜୟନ୍ତୀ ବର୍ଷ । ଏ ମନ ଯେପରି ସୁଯୋଗ ଅପେକ୍ଷାରେ ଥିଲା । ଏଇ ବର୍ଷ ହିଁ ବହିଟିକୁ ଲେଖି ପ୍ରକାଶ କରିବାକୁ ଚେଷ୍ଟା କଲି । ଲେଖା ଚାଲିଲା ଯଥାରୀତି ଧୀର ଓ ମନ୍ଥର ଗତିରେ । ମନ ଡାକିଲା ଶ୍ରୀମା'ଙ୍କ ଜନ୍ମସ୍ଥାନ ଦେଖିବାକୁ । ଶରୀରର ଦାରୁଣ କ୍ଳେଶ ଭୁଲିଗଲି । ବାହାରିଲି କାମାରପୁକୁର ଓ ଜୟରାମବାଟୀ । ମୋର ଗୁରୁଭାଇ ରାଖାଲ ଦାସ ଓ ତାଙ୍କର ସ୍ତ୍ରୀ ସାଙ୍ଗରେ ଗଲେ । ସିଂହ ବାହିନୀ ମନ୍ଦିର ଦର୍ଶନ, ତାରକେଶ୍ୱର ଶିବଦର୍ଶନର ଆନନ୍ଦ ଲାଭ କଲି । ଶ୍ରୀମା'ଙ୍କ ଜନ୍ମମାଟିର ପବିତ୍ର ଧୂଳି ମୁଣ୍ଡରେ ବୋଳିଲି । ସେଠାରୁ ଫେରିବା ପରେ ଲେଖାକୁ ପରମ ଉତ୍ସାହର ସହ ଆଗେଇ ନେଲି । ମା'ଙ୍କର ଆଶୀର୍ବାଦ ଯେପରି ମୋ ଭିତରେ ଭରିଦେଇଥିଲା ଅସୀମ ଧୈର୍ଯ୍ୟ ଆଉ ଉନ୍ମାଦନା ।

ଷ୍ଟୁଡେଣ୍ଟସ୍ ଷ୍ଟୋର୍‌ର ମାଲିକ, ମୋର ସହୃଦୟ ଅଗ୍ରଜ ନୃସିଂହ ଭାଇନାଙ୍କର ସଶ୍ରଦ୍ଧ ଅନୁରୋଧକୁ ଏଡାଇ ଦେଇ ନ ପାରି ତାଙ୍କୁ ଏହାର ପ୍ରକାଶନର ଦାୟିତ୍ୱ ଦେଲି । ନିକଟରେ ସେ ମୋର ଶ୍ରୀରାମକୃଷ୍ଣ ପରମହଂସ ବହିର ତୃତୀୟ ସଂସ୍କରଣ ପ୍ରକାଶ କରିଛନ୍ତି । ମୋ ଉପରେ ରଖିଥିବା ଆସ୍ଥା ଓ ବିଶ୍ୱାସ ପାଇଁ ତାଙ୍କୁ ମୋର ଗଭୀର କୃତଜ୍ଞତା ।

ସବୁଠାରୁ ବେଶୀ ଆଶୀର୍ବାଦ ଲାଭ କରିଛି ରାମକୃଷ୍ଣ ମଠର ମଠାଧୀଶ ପରମ ପୂଜନୀୟ ଶ୍ରୀମଦ୍ ସ୍ୱାମୀ ଶିବେଶ୍ୱରାନନ୍ଦ ମହାରାଜଙ୍କ ଠାରୁ । ଏକ୍‌ସିଡେଣ୍ଟରେ ପଡ଼ି ଅସହାୟ ବୋଧ କରୁଥିବା ବେଳେ ପୂଜ୍ୟ ମହାରାଜ ଅନେକ ବ୍ୟସ୍ତତା ସତ୍ତ୍ୱେ କଷ୍ଟସ୍ୱୀକାର କରି ମୋତେ ଦେଖିବାକୁ ଆସିଥିଲେ, ଠାକୁର ଓ ଶ୍ରୀମାଙ୍କର ଆଶୀର୍ବାଦ ନେଇ । ଏହା ମୋ ପାଇଁ ଥିଲା ଏକ ଦିବ୍ୟ ଅନୁଭବ । ପୂଜ୍ୟ ସ୍ୱାମୀ ପ୍ରିୟରୂପାନନ୍ଦ (ସୁଦର୍ଶନ ମହାରାଜ) ପାଣ୍ଡୁଲିପିକୁ ଆମୂଳଚୂଳ ପଢ଼ି ସଂଶୋଧନ କରିବା ସହିତ ସୁଚିନ୍ତିତ ପରାମର୍ଶ ଦେଇଛନ୍ତି । ତାଙ୍କର ମୋ ପ୍ରତି ଥିବା ଗଭୀର ଶ୍ରଦ୍ଧା ହିଁ ମୋର ପ୍ରେରଣା ।

ରାମକୃଷ୍ଣମଠର ମୁଁ ଜଣେ ସାମାନ୍ୟ ସେବକ । କିନ୍ତୁ ମଠର ଅନ୍ତେବାସୀ ସନ୍ନ୍ୟାସୀ, ବ୍ରହ୍ମଚାରୀ ଓ କାର୍ଯ୍ୟରତ କର୍ମୀମାନଙ୍କର ଶ୍ରଦ୍ଧା ଓ ସ୍ନେହର୍ଦ୍ର ବାରିଧାରା ମୋର ଜୀବନକୁ ପଲ୍ଲବିତ କରିଛି । ସେମାନେ ମୋର ଏହି ପ୍ରଚେଷ୍ଟାରେ ଅନେକ ସାହାଯ୍ୟ କରିଥିବାରୁ ମୁଁ କୃତଜ୍ଞ ।

ଅଗ୍ରଜ ଭକ୍ତ କିଶୋରୀ ବାବୁ, ଶ୍ରଦ୍ଧେୟ ରବିବାବୁ, ନକୁଳବାବୁ ଆଦି ମୋତେ ଅକୁଣ୍ଠ ପ୍ରେରଣା ଓ ସାହାଯ୍ୟ ପ୍ରଦାନ କରିଛନ୍ତି । ଏହି ପୁସ୍ତକର ଡିଟିପି କାର୍ଯ୍ୟଟିକୁ ନିଷ୍ଠାର ସହ ସଂପାଦନ କରିଛନ୍ତି ଶ୍ରଦ୍ଧେୟ ମାମା ।

ମୋ ପରିବାରର ସମସ୍ତେ ଠାକୁର, ମା', ସ୍ୱାମୀଜୀ ଓ ରାମକୃଷ୍ଣ ମଠ ନିକଟରେ ନିଜ ନିଜକୁ ସମର୍ପଣ କରିଛନ୍ତି । ସେମାନେ ମୋର ଦୁଃଖଦ ଜୀବନର ଅବିଚ୍ଛିନ୍ନ ଅଂଶ, ମୋର ସତ୍‌କର୍ମ ଓ ଦୁଷ୍କର୍ମର ଭାଗୀଦାର ।

ଶ୍ରୀମା'ଙ୍କ ଆଶିଷରୁ ଜନ୍ମ ନେଇଥିବା ଏହି ପୁସ୍ତକ ଓଡ଼ିଶାର ଅଗଣିତ ମାତୃଆଶ୍ରିତ ଭକ୍ତ ଓ ପାଠକମାନଙ୍କ ନିକଟରେ ଆଦୃତ ହେଉ- ମୋର ଶ୍ରୀମା'ଙ୍କ ନିକଟରେ ଏହାହିଁ ପ୍ରାର୍ଥନା । ଜୟ ଶ୍ରୀ ଶ୍ରୀମା' ସାରଦା ।

କାଳୀପୂଜା

ତା ୧୧.୧୧.୨୦୦୪ — ସୌରୀବନ୍ଧୁ କର

# ସୂଚୀପତ୍ର


ଶ୍ରୀ ଶ୍ରୀମା'ଙ୍କ ଧ୍ୟାନ ---------- ୧
ଶ୍ରୀ ଶ୍ରୀମା'ଙ୍କ ସ୍ତବ ---------- ୨
ଉପକ୍ରମଣିକା ---------- ୪
ବାଲ୍ୟ ଜୀବନ ---------- ୨୧
ଶ୍ରୀରାମକୃଷ୍ଣଙ୍କ ସେବାରେ ---------- ୨୮
ଷୋଡ଼ଶୀ ପୂଜା ---------- ୩୭
ଆଧ୍ୟାତ୍ମିକ ପ୍ରଶିକ୍ଷଣ ---------- ୪୦
ତୀର୍ଥ ଯାତ୍ରା ---------- ୫୮
ଓଡ଼ିଶା ମାଟିରେ ଦିବ୍ୟସ୍ପର୍ଶ ---------- ୬୫
କାମାରପୁକୁର ଜୀବନ ---------- ୭୧
ଘରୋଇ ଜୀବନର ଘଟଣାବଳୀ ---------- ୭୭
ଆଧ୍ୟାତ୍ମିକ ଶକ୍ତିର ବିତରଣ ---------- ୮୫
ତାଙ୍କର ବ୍ୟକ୍ତିତ୍ୱ ---------- ୧୦୧
ରାମକୃଷ୍ଣ ସଂଘ ଗଠନରେ ---------- ୧୧୫
ତାଙ୍କର ବାର୍ତ୍ତା ---------- ୧୧୮
ଈଶ୍ୱରଙ୍କର ଦିବ୍ୟ ମାତୃତ୍ୱର ପ୍ରକାଶ ---------- ୧୨୩
ଭକ୍ତମାନଙ୍କ ପ୍ରତି ଶ୍ରଦ୍ଧା ---------- ୧୨୬
(କ) ଗିରିଶ ଚନ୍ଦ୍ର ଘୋଷ (ଖ) ଭଗିନୀ ନିବେଦିତା
(ଗ) ପଦ୍ମବିନୋଦ (ଘ) ନାଗ ମହାଶୟ (ଦୁର୍ଗାଚରଣ ନାଗ)
ଭକ୍ତମାନଙ୍କ ସହିତ କଥୋପକଥନ ---------- ୧୩୩
ମହାସମାଧି ---------- ୧୪୦
ଶ୍ରୀ ଶ୍ରୀମା'ଙ୍କର ଉପଦେଶ ---------- ୧୪୫
ପରିଶିଷ୍ଟ ---------- ୧୪୮
(କ) ଶ୍ରୀ ଶ୍ରୀମା' ସାରଦା ଦେବୀଙ୍କ ଜନ୍ମଜାତକ
(ଖ) ଶ୍ରୀ ଶ୍ରୀମା'ଙ୍କର ପିତୃକୁଳର ବଂଶ ପରିଚୟ
(ଗ) ଶ୍ରୀ ଶ୍ରୀମା' ସାରଦାଦେବୀଙ୍କର ଘଟଣାବହୁଳ ଜୀବନର ସମୟ
ସହାୟକ ଗ୍ରନ୍ଥ ସୂଚୀ ---------- ୧୫୧


□□

# ଶ୍ରୀ ଶ୍ରୀମା'ଙ୍କ ଧ୍ୟାନ

ଧ୍ୟାୟେତ୍ ହୃଦୟକମଳମଧ୍ୟେ ହେମବର୍ଣ୍ଣାଂ ସୁଖାସନାମ୍ ।
ଆଲୁଲାୟିତ -କେଶାଭି ବକ୍ଷସ୍ଥଳା ବିନାଣ୍ଡିତାମ୍ ॥

ଶ୍ୱେତବସ୍ତ୍ରାବୃତାର୍ଦ୍ଧାଙ୍ଗାଂ ହେମାଲଙ୍କାର-ଭୂଷିତାମ୍ ।
ସ୍ୱକ୍ରୋଡ଼ନ୍ୟସ୍ତ ହସ୍ତାଂଚ ଦ୍ୱିଭୁଜଂ ସ୍ଥିରଲୋଚନମ୍ ॥

ପ୍ରସନ୍ନବଦନାଂ ଜୀବ-ଦୁଃଖ ଗଳିତଃ ଚେତସାମ୍ ।
ଶୁଭ୍ର ଜ୍ୟୋର୍ତିମୟୀଂ ଦେବୀଂ ବରଦାଂ ସର୍ବମଙ୍ଗଳାମ୍ ॥

ରାମକୃଷ୍ଣ ଗତପ୍ରାଣାଂ ତନ୍ନାମ-ଶ୍ରବଣ ପ୍ରିୟାମ୍ ।
ତଦ୍‌ଭାବ ରଂଜିତାକାରାଂ ବିଶ୍ୱମାତୃ ସ୍ୱରୂପିଣୀମ୍ ॥

ସ୍ନେହମୟୀଂ ଶିବାଂ ଶାନ୍ତାଂ ଭକ୍ତି ମୁକ୍ତି ପ୍ରଦାୟିନୀମ୍ ।
ସର୍ବଜୀବ-ତ୍ରାଣକର୍ତ୍ତୀଂ ସାରଦାଂ ଜ୍ଞାନଦାୟିନୀମ୍ ॥

---

ଠାକୁର ଶ୍ରୀରାମକୃଷ୍ଣଙ୍କର ଶିଷ୍ୟ ସ୍ୱାମୀ ଅଭେଦାନନ୍ଦ ଜଗତ୍ ଜନନୀ ଶ୍ରୀମା'ଙ୍କ ଉଦ୍ଦେଶ୍ୟରେ ଏହା ରଚନା କରିଥିଲେ ।



ସ୍ୱାମୀ ଅଭେଦାନନ୍ଦ ଶ୍ରୀ ଶ୍ରୀମା'ଙ୍କ ଉଦ୍ଦେଶ୍ୟରେ ସ୍ତବ ରଚନା କରି ଶ୍ରୀ ମା'ଙ୍କ ନିକଟରେ ଉପବେଶନ ପୂର୍ବକ ହୃଦୟରେ ଭକ୍ତି ଓ ଆନ୍ତରିକତାର ସହିତ ଏହି ସ୍ତୋତ୍ରଟିକୁ ଆବୃତ୍ତି କରିଥିଲେ । ଶ୍ରୀମା' ଏହା ଶ୍ରବଣ କରି ଗଭୀର ଧ୍ୟାନରେ ନିମଗ୍ନ ହୋଇଥିଲେ ।

ପ୍ରକୃତି ପରମାମଭୟାଂ ବରଦାଂ,
ନରରୂପଧରାଂ ଜନତାପହରାମ୍
ଶରଣାଗତ-ସେବକ-ତୋଷ-କରାଂ
ପ୍ରଣମାମି ପରାଂ ଜନନୀଂ ଜଗତାମ୍ ।। ୧ ।

ଗୁଣହୀନ-ସୁତାନପରାଧଯୁତାନ୍
କୃପୟାଽଦ୍ୟ ସମୁଦ୍ଧର ମୋହଗତାନ୍ ।
ତରଣୀଂ ଭବସାଗରପାରକରୀଂ
ପ୍ରଣମାମି ପରାଂ ଜନନୀଂ ଜଗତାମ୍ । ୨ ।

ବିଷୟଂ କୁସୁମଂ ପରିହୃତ୍ୟ ସଦା,
ଚରଣାମ୍ବୁରୁହାମୃତ-ଶାନ୍ତି-ସୁଧାଂ ।
ପିବ ଭୃଙ୍ଗ-ମନୋ ଭବରୋଗହରାଂ
ପ୍ରଣମାମି ପରାଂ ଜନନୀଂ ଜଗତାମ୍ । ୩ ।

କୃପାଂ କୁରୁ ମହାଦେବି ସୁତେଷୁ ପ୍ରଣତେଷୁ ଚ,
ଚରଣାଶ୍ରୟଦାନେନ କୃପାମୟି ନମୋଽସ୍ତୁତେ । ୪ ।

ଲଜ୍ଜା-ପଟାବୃତେ ନିତ୍ୟଂ ସାରଦେ ଜ୍ଞାନଦାୟିକେ,
ପାପେଭ୍ୟୋ ନଃ ସଦା ରକ୍ଷ କୃପାମୟି ନମୋଽସ୍ତୁତେ । ୫ ।

ରାମକୃଷ୍ଣ ଗତପ୍ରାଣାଂ ତନ୍ନାମଶ୍ରବଣପ୍ରିୟାମ୍,
ତଦ୍ଭାବରଞ୍ଜିତାକାରାଂ ପ୍ରଣମାମି ମୁହୁର୍ମୁହୁଃ । ୬ ।

ପବିତ୍ରଂ ଚରିତ୍ରଂ ଯସ୍ୟାଃ ପବିତ୍ରଂ ଜୀବନଂ ତଥା
ପବିତ୍ରତାସ୍ୱରୂପିଣ୍ୟୈ ତସ୍ୟୈ ଦେବ୍ୟୈ ନମୋନମଃ । ୭ ।

ଦେବୀ ପ୍ରସନ୍ନାଂ ପ୍ରଣତାର୍ତ୍ତିହନ୍ତ୍ରୀଂ,
ଯୋଗୀନ୍ଦ୍ରପୂଜ୍ୟାଂ ଯୁଗଧର୍ମପାତ୍ରୀମ୍ ।
ତାଂ ସାରଦାଂ ଭକ୍ତିବିଜ୍ଞାନଦାତ୍ରୀଂ
ଦୟାସ୍ୱରୂପାଂ ପ୍ରଣମାମି ନିତ୍ୟମ୍ । ୮ ।

ସ୍ନେହେନ ବଧ୍ନାସି ମନୋଽସ୍ମଦୀୟଂ
ଦୋଷାନଶେଷାନ୍ ସଗୁଣିକରୋଷି ।
ଅହେତୁନା ନୋ ଦୟସେ ସଦୋଷାନ୍,
ସ୍ୱାଙ୍କେ ଗୃହୀତ୍ୱା ଯଦିଦଂ ବିଚିତ୍ରମ୍ । ୯ ।

ପ୍ରସୀଦ ମାତର୍ବିନୟେନ ଯାଚେ
ନିତ୍ୟଂ ଭବ ସ୍ନେହବତୀ ସୁତେଷୁ ।
ପ୍ରେମୈକବିନ୍ଦୁଂ ଚିରଦଗ୍ଧଚିତ୍ତେ,
ବିଷିଞ୍ଚ ଚିତ୍ତଂ କୁରୁ ନଃ ସୁଶାନ୍ତମ୍ । ୧୦ ।

ଜନନୀଂ ସାରଦାଂ ଦେବୀଂ ରାମକୃଷ୍ଣଂ ଜଗଦ୍‌ଗୁରୁମ୍
ପାଦପଦ୍ମେ ତୟୋଃ ଶ୍ରିତ୍ୱା ପ୍ରଣମାମି ମୁହୁର୍ମୁହୁଃ । ।୧୧ ।



# ଉପକ୍ରମଣିକା

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତ ଇତିହାସକୁ ଅଧ୍ୟୟନ ତଥା ଅନୁଶୀଳନ କଲେ ଦେଖାଯାଏ ଯେ, ଯେତେବେଳେ ଭାରତ ଅଧଃପତନ ସ୍ତରକୁ ଖସି ଆସିଛି, ସେତେବେଳେ ଏହି ଦେଶକୁ ନୂତନ ଭାବରେ ଉଠାଇବା ପାଇଁ ମହାନ୍ ବ୍ୟକ୍ତି ବିଶେଷଙ୍କର ଆବିର୍ଭାବ ହୋଇଛି । ଭାରତବର୍ଷରେ ଏହିପରି କେତେ ମହିୟସୀ ମହିଳା ମଧ୍ୟ ଜନ୍ମଲାଭ କରିଛନ୍ତି ଯେଉଁମାନଙ୍କର ତ୍ୟାଗ ଓ ପବିତ୍ରତା ଏ ମାଟିକୁ ଧନ୍ୟ କରିଛି । ଭାରତ ଭୂଇଁର ଶକ୍ତି ହେଉଛି ଆଧ୍ୟାତ୍ମିକ ଶକ୍ତି । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗର ଉର୍ଦ୍ଧ୍ୱରେ ଆଦର୍ଶ ଜୀବନ ହିଁ ଏ ଜାତିର ମୂଳଭିତ୍ତି । ପ୍ରକୃତିଗତ ବିଭିନ୍ନତା ଓ ବିବିଧତା ମଧ୍ୟରେ ମୌଳିକ ଏକତ୍ୱ ଭାରତୀୟ ସଭ୍ୟତାକୁ ଯୁଗ ଯୁଗଧରି ରଖି ପାରିଛି । ଏହି ପୃଷ୍ଠଭୂମିରେ ଶ୍ରୀରାମକୃଷ୍ଣ ପରମହଂସଙ୍କର ଆବିର୍ଭାବ ଏକ ନୂତନ ଦିଗ୍‌ବଳୟ ଉନ୍ମୋଚିତ କରିଛି । ଶ୍ରୀରାମକୃଷ୍ଣଙ୍କ ସହିତ ଯୋଗଦାନ କରିଛନ୍ତି ତାଙ୍କର ଲୀଳାସଙ୍ଗିନୀ ଶ୍ରୀ ଶ୍ରୀସାରଦା ଦେବୀ । ଯଦି ଶ୍ରୀରାମକୃଷ୍ଣ ଜୀବନର କିଛି ଅର୍ଥ ଅଛି, କିଛି ବାର୍ତ୍ତା ରହିଛି, ଶ୍ରୀସାରଦାଦେବୀଙ୍କ ଜୀବନ ତାହାର ପ୍ରବହମାନ ଧାରା । ଯଦି ଶ୍ରୀରାମକୃଷ୍ଣ ସତ୍ୟର ପରିପ୍ରକାଶ, ଶ୍ରୀସାରଦା ଦେବୀ ହେଉଛନ୍ତି ସେହି ସତ୍ୟକୁ ଅନୁଭବରେ ରୂପାନ୍ତରିତ କରିବାର ମାର୍ଗ । ଯଦି ଶ୍ରୀରାମକୃଷ୍ଣଙ୍କୁ ଚେତନା ଭାବରେ ଗ୍ରହଣ କରିବା, ଶ୍ରୀସାରଦାଦେବୀ ହେଉଛନ୍ତି କର୍ମ, ଯଦି ସେ ଆଦର୍ଶ, ଶ୍ରୀସାରଦାଦେବୀ ତାହାର ପୂର୍ଣ୍ଣତା ।

ଭଗିନୀ ନିବେଦିତାଙ୍କ ଭାଷାରେ, ତର୍ଜମା ହେଉଛି ବିଶ୍ଳେଷଣ କରିବାର ଆଉ ଗୋଟିଏ ଶବ୍ଦ । କୌଣସି ବିଦେଶୀବ୍ୟକ୍ତି ଦ୍ୱାରା ଅନ୍ୟ ଗୋଟିଏ ଭାଷାର କବିତା ଅନୁବାଦ ହେଲେ, ତାହା ଯେପରି ତା'ର ସ୍ୱକୀୟ ରୂପ ଓ ଗୁଣରେ ବୁଝାଯାଏ ନାହିଁ, ଠିକ୍ ସେହିପରି ଆମେ କେତେକ ଲୋକଙ୍କୁ ଅନୁଭବ କରୁ । କିନ୍ତୁ ଏହା ବାସ୍ତବିକ ଅନୁଭବ ନୁହେଁ । ବାସ୍ତବ ଅନୁଭବ କରିବା ପାଇଁ ଲୋଡ଼ା ଗଭୀର ଜ୍ଞାନ । ଏହି ଜ୍ଞାନ ସତ୍ୟଉପରେ ଆଧାରିତ ଜୀବନକୁ ସରଳ ଭାଷାରେ ପ୍ରକାଶ କରିପାରିଲେ, ତାହାର ସ୍ୱର ସମସ୍ତେ ଶୁଣି ପାରିବେ । ସତ୍ୟଉପରେ ଆଧାରିତ ଜୀବନକୁ ସହଜ, ସରଳ ଓ ସାବଲୀଳ ଭାବରେ ଉପସ୍ଥାପିତ ନ କଲେ, ତାହା ସଦାସର୍ବଦା ବୁଝାପଡ଼ିବ ନାହିଁ । ଲୋକମାନେ

ସେହି ଜୀବନକୁ ସହଜରେ ବୁଝିପାରିବେ ନାହିଁ ।"

ଭଗିନୀ ନିବେଦିତାତାଙ୍କର ଏହା କହିବାର ଅର୍ଥ ହେଉଛି, ଶ୍ରୀମା' ସାରଦାଦେବୀଙ୍କ ଜୀବନ ସତ୍ୟଉପରେ ଆଧାରିତ ଜୀବନ। ତାହାକୁ ବୁଝିବା ଅତ୍ୟନ୍ତ କଷ୍ଟସାଧ । ଯଦି ସାଂସାରିକ ଭାବ ଓ ଆଦର୍ଶ ଦୃଷ୍ଟିରୁ ବିଚାର କରିବା ତେବେ ଯେ କୌଣସି ନାରୀର ମହତ୍ତ୍ୱକୁ, ମହନୀୟତାକୁ ସହଜରେ ବୁଝି ପାରିବା, କିନ୍ତୁ ଶ୍ରୀମା' ସାରଦାଦେବୀଙ୍କ ଜୀବନ ଏହି ସାଂସାରିକ ଜୀବନ ଠାରୁ ବହୁ ଉର୍ଦ୍ଧ୍ୱରେ । ତେଣୁ ତାଙ୍କର ମହନୀୟତା ଓ ବ୍ୟାପକତାକୁ ବୁଝିବା ବଡ଼ କଷ୍ଟ ।

ଶ୍ରୀମା' ସାରଦାଦେବୀଙ୍କର ଜୀବନ ବିଶ୍ୱ ଓ ଦିବ୍ୟ ମାତୃତ୍ୱର ଜୀବନ, ତ୍ୟାଗ ଓ ସେବାର ଜୀବନ । ଏହାକୁ ବୁଝି ପାରିଲେ ହିଁ ଆଧାତ୍ମିକ ଦିଗରେ ଆଗେଇ ପାରିବା ।

ମୈତ୍ରେୟୀ ତାଙ୍କର ସ୍ୱାମୀ ଯାଜ୍ଞବଲ୍‌କ୍ୟଙ୍କୁ ପଚାରିଥିଲେ, "ଯେ ନାହଂ ନାମୃତା ସ୍ୱାଂ ବିମହଂ ତେନ୍ କୁର୍ଯ୍ୟାତ୍" ଅର୍ଥାତ୍, ଯାହା ମୋତେ ଅମୃତତ୍ୱ ଆଡ଼କୁ ନେଇପାରିବ ନାହିଁ, ତାହାକୁ ନେଇ ମୁଁ କ'ଣ କରିବି ?" ଶ୍ରୀମା' ସାରଦାଦେବୀଙ୍କ ଜୀବନ ଆଧୁନିକ ନାରୀମାନଙ୍କୁ ସେହି ଅମୃତତ୍ୱ ଆଡ଼କୁ ନେଇଯାଏ ।

ଶ୍ରୀମା' ସାରଦା ଅବତାର ପୁରୁଷ ଶ୍ରୀ ରାମକୃଷ୍ଣଙ୍କର ଲୀଳା ସଙ୍ଗିନୀ ଭାବରେ ତାଙ୍କର ଅପୂରଣୀୟ କାର୍ଯ୍ୟକୁ ପୂର୍ଣ୍ଣ କରିବାରେ ସକ୍ରିୟ ଭୂମିକା ସଂପାଦନ କରିଛନ୍ତି । ତାଙ୍କ ମାଧ୍ୟମରେ ଶ୍ରୀ ରାମକୃଷ୍ଣଙ୍କର ଆଧାତ୍ମିକ ଶକ୍ତିକାର୍ଯ୍ୟ କରିଛି ।

ଶ୍ରୀ ରାମକୃଷ୍ଣ ନିଜେ କହିଛନ୍ତି, ''ସେ ଅନ୍ୟ କେହି ନୁହଁନ୍ତି, ମୋର ଶକ୍ତି ।'' ସେହି ଶକ୍ତି ବିଦ୍ୟାଦାତ୍ରୀ ସରସ୍ୱତୀ ଭାବରେ ପ୍ରକାଶିତ ହୋଇଛନ୍ତି । ସ୍ୱାମୀ ବିବେକାନନ୍ଦ ତାଙ୍କୁ ଦୁର୍ଗା ଭାବରେ ଆରାଧନା କରିବାବେଳେ ସ୍ୱାମୀ ଅଭେଦାନନ୍ଦ ତାଙ୍କୁ 'ପରମା ପ୍ରକୃତି' କହି ପ୍ରାର୍ଥନା କରିଛନ୍ତି ।

ସ୍ୱାମୀ ବିବେକାନନ୍ଦ ଲେଖିଛନ୍ତି, "ତୁମ୍ଭମାନଙ୍କ ମଧ୍ୟରୁ କେହି ହେଲେ ମା'ଙ୍କର ଐଶ୍ୱର୍ଯ୍ୟମୟ ଜୀବନର ବିଶେଷତ୍ୱକୁ ବୁଝିପାରିନାହଁ । ଶକ୍ତି ବ୍ୟତୀତ ବିଶ୍ୱର ପୁନର୍ଜାଗରଣ ସମ୍ଭବ ହୋଇନାହିଁ । ଭାରତରେ ସେହି ଶକ୍ତିର ଉତ୍‌ଥାନ ପାଇଁ ମା'ଙ୍କର ଜନ୍ମ । ଭାଇ, ଆମେରିକା ଯିବା ପୂର୍ବରୁ ମୁଁ ମା'ଙ୍କୁ ପତ୍ରଲେଖି ଆଶୀର୍ବାଦ ଭିକ୍ଷା କରିଥିଲି । ତାଙ୍କର ଆଶୀର୍ବାଦ ମିଳିଲା ଏବଂ ଏକାଥରକେ ମୁଁ ମହାସମୁଦ୍ର ପାରହୋଇଗଲି ।'

ସ୍ୱାମୀ ବ୍ରହ୍ମାନନ୍ଦ କହିଛନ୍ତି, "ମା' ହେଉଛନ୍ତି ମହାମାୟା । କିନ୍ତୁ ତାଙ୍କର ମାୟା ଏପରି ଯେ ତାଙ୍କୁ କେହି ବୁଝିପାରିବେ ନାହିଁ । ଅନ୍ତରରେ ଅନୁଭୂତିର ମହାସମୁଦ୍ର ଓ ବାହାରେ ସମ୍ପୂର୍ଣ୍ଣ ନିରବତା ।"

ସ୍ୱାମୀ ଶିବାନନ୍ଦ ମା'ଙ୍କ ସ୍ମୃତି ଚାରଣରେ କହିଛନ୍ତି, "ଏହି ଯୁଗର ସମଗ୍ର

ନାରୀଜାତିର ଆଦର୍ଶ ହେଉଛନ୍ତି ସେ । ସେ ମଣିଷ ଶରୀର ଧାରଣ କରିଥିଲେ ଏବଂ ସାଧାରଣ ଘରର ନାରୀ ଭାବରେ ଜୀବନ କାଟିଛନ୍ତି ।"

ସ୍ୱାମୀ ପ୍ରେମାନନ୍ଦ ମା'ଙ୍କ ପ୍ରତି ଶ୍ରଦ୍ଧା ନିବେଦନ କରି ଉଲ୍ଲେଖ କରିଛନ୍ତି, "ସେ ଘର ଓଳାନ୍ତି, ବାସନ ମାଜନ୍ତି, ଧାନ କୁଟନ୍ତି ଏବଂ ଭକ୍ତମାନଙ୍କର ଅଇଁଠା ପତ୍ର ସଫା କରନ୍ତି । ସେ ଜୟରାମବାଟୀରେ ରହି ଅନେକ କଷ୍ଟ ବରଣ କରିଛନ୍ତି, କାରଣ ସେ ସଂସାରୀ ଲୋକମାନଙ୍କୁ ତାଙ୍କର କର୍ତ୍ତବ୍ୟ କ'ଣ ତାହା ଶିଖାଇ ଦେବାକୁ ଚାହିଁଛନ୍ତି ।''

ସ୍ୱାମୀ ସାରଦାନନ୍ଦ ଉଲ୍ଲେଖ କରିଛନ୍ତି, 'ଯାହାଙ୍କର ପବିତ୍ର ଦୃଷ୍ଟିପାତରେ ଏହି ଲେଖକ ପ୍ରତ୍ୟେକ ନାରୀ ରୂପ ମଧ୍ୟରେ ଦିବ୍ୟ ମାତୃତ୍ୱର ପରିପ୍ରକାଶର ଅପରୋକ୍ଷାନୁଭୂତିକୁ ପ୍ରାପ୍ତି ହୋଇଛନ୍ତି, ତାହାଙ୍କର ପବିତ୍ର ପଦ୍ମପାଦରେ, ଭକ୍ତି ଓ ବିନମ୍ରତାର ସହିତ ଏହି କାର୍ଯ୍ୟକୁ ସମର୍ପିତ କରୁଛି । ସ୍ୱାମୀ ଅଭେଦାନନ୍ଦ ଉଲ୍ଲେଖ କରିଛନ୍ତି, 'ଶ୍ରୀମା' ଏବଂ ଶ୍ରୀରାମକୃଷ୍ଣ ପ୍ରତ୍ୟେକ ପରସ୍ପରକୁ ମା' ପରି ଭାବନ୍ତି । କାଶୀପୁର ଉଦ୍ୟାନବାଟୀଠାରେ ଶ୍ରୀ ରାମକୃଷ୍ଣ ମହାସମାଧି ଲାଭ କରିବା ପରେ, ଏହି ହୃଦୟବିଦାରକ ସମ୍ବାଦକୁ ସେଦିନ ରାତିରେ ମା'ଙ୍କୁ କୁହାଯାଇନଥିଲା । ଯେହେତୁ ଠାକୁରଙ୍କ ଶିଷ୍ୟମାନଙ୍କ ମଧ୍ୟରେ ମୁଁ ସର୍ବକନିଷ୍ଠ ଥିଲି, ମା' ଅକୁଣ୍ଠିତ ଭାବରେ ମୋ ସହିତ ବାର୍ତ୍ତାଳାପ କରୁଥିଲେ । ତେଣୁ ସକାଳେ ଏହି ସମ୍ବାଦ ଦେବାର ଦାୟିତ୍ୱ ମୋ ଉପରେ ପଡ଼ିଲା । ଏହି ସମ୍ବାଦ ଶୁଣି ମା' କାନ୍ଦି ଉଠିଲେ, 'ହେ ମା', ତୁମେ କୁଆଡ଼େ ଚାଲିଗଲ ! ପୃଥିବୀରେ ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ଆଧିଭୌତିକ ଏବଂ ଅଲୌକିକ ସଂପର୍କର ଏପରି ଉଦାହରଣ କେଉଁଠି ମିଳିବାର ମୁଁ ଜାଣିନାହିଁ ।''

ସ୍ୱାମୀ ଅଖଣ୍ଡାନନ୍ଦ ଜଣେ ଭକ୍ତଙ୍କର ଶ୍ରୀମା'ଙ୍କର ଦର୍ଶନକୁ ଲକ୍ଷ୍ୟକରି କହିଛନ୍ତି, 'ତୁମର ଯେତେବେଳେ ଶ୍ରୀମା'ଙ୍କର ଦର୍ଶନ ହୋଇଛି, ତୁମକୁ ଶ୍ରୀରାମକୃଷ୍ଣଙ୍କର ଦର୍ଶନର ଅନୁରୂପ ଫଳ ପ୍ରାପ୍ତି ହେବ । ଶ୍ରୀମା' କିମ୍ବା ଶ୍ରୀ ଠାକୁରଙ୍କର ଦର୍ଶନ ଲାଭ କରିବା ଏକାକଥା ।' ସ୍ୱାମୀ ଅଦ୍ଭୁତାନନ୍ଦ କହିଛନ୍ତି, 'ତୁମର ମା'ଙ୍କ ପ୍ରତି ସମ୍ମାନ କ'ଣ କେବଳ କଥା । ତାଙ୍କୁ ବୁଝିବାକୁ ହେଲେ ପବିତ୍ରତା ପାଳନ କରିବା ଦରକାର । ତୁମେ ମା'ଙ୍କୁ ତୁମର ଆଦର୍ଶ କର ।'

ସ୍ୱାମୀ ତୁରିୟାନନ୍ଦ କହିଛନ୍ତି, 'ଜୀବନ ଆଶୀର୍ବାଦମୟ ହୋଇଯାଏ । ଯେତେବେଳେ ଜଣେ ନିଜର ସବୁ କିଛି- ସ୍ତ୍ରୀ, ସମ୍ପତ୍ତି, ପରିବାର ଓ ନିଜକୁ ସମ୍ପୂର୍ଣ୍ଣ ଭାବରେ ମା'ଙ୍କ ପାଦରେ ସମର୍ପି ଦିଏ ।'

ବାଙ୍ଗାଲୋରଠାରେ ଶ୍ରୀମା' ରହିବା ସମୟରେ ଆଶ୍ରମ ସନ୍ନିକଟ ଏକ କ୍ଷୁଦ୍ର ପାର୍ବତ୍ୟ ଶିଳାଖଣ୍ଡ ଉପରେ ଉପସ୍ଥିତ ରହି ଅସ୍ତଗାମୀ ସୂର୍ଯ୍ୟଙ୍କର ସୌନ୍ଦର୍ଯ୍ୟକୁ ଉପଭୋଗ

କରୁଥିଲେ । ଏହା ଶୁଣି ସ୍ୱାମୀ ରାମକୃଷ୍ଣାନନ୍ଦ ତତ୍‌କ୍ଷଣାତ୍ ଶ୍ରୀମା'ଙ୍କ ସମୀପକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଶ୍ରୀ ଶ୍ରୀ ଚଣ୍ଡୀର ସେହି ତିନିଗୋଟି ସ୍ତୋତ୍ର ପାଠ କରି ପ୍ରାର୍ଥନା କରିବାକୁ ଲାଗିଲେ ।

ସ୍ୱାମୀ ସୁବୋଧାନନ୍ଦ ଉଲ୍ଲେଖ କରିଛନ୍ତି, "ଯେବେଠାରୁ ଶ୍ରୀମା' ତୁମ୍ଭକୁ ଆଶୀର୍ବାଦ କରିଛନ୍ତି, ସେହି ମୁହୂର୍ତ୍ତରୁ ଜାଣିବ ଯେ ତୁମ୍ଭର ଭାଗ୍ୟ ବଦଳି ଯାଇଛି ।"

ସ୍ୱାମୀ ବିଜ୍ଞାନାନନ୍ଦଙ୍କ ମତରେ, "ମୁଁ ମା'ଙ୍କର ନାମକୁ ଉଚ୍ଚାରଣ କରେ 'ମା ଆନନ୍ଦମୟୀ' । ତାଙ୍କ ନାମର ଶକ୍ତି ମାଧ୍ୟମରେ ଯେ କେହି ସବୁ କିଛି ଲାଭ କରିପାରେ, ଭକ୍ତି, ବିଶ୍ୱାସ, ଜ୍ଞାନ, ଅର୍ଥ, ଯଶ ଇତ୍ୟାଦି... ମୁଁ ଠାକୁର ଶ୍ରୀରାମକୃଷ୍ଣଙ୍କ ନାମ ଅପେକ୍ଷା ଶ୍ରୀମା'ଙ୍କ ନାମ ଉଚ୍ଚାରଣ କରି ଅଧିକ ଶକ୍ତି ଲାଭ କରେ ।"

ସ୍ୱାମୀ ଯୋଗାନନ୍ଦ କହିଛନ୍ତି, "ଆମ୍ଭେମାନେ ଯେଉଁମାନଙ୍କର ବିଶ୍ୱାସ ଓ ବିଚାର ବହୁତ କମ୍ ଠାକୁରଙ୍କର ଆମ୍ଭମାନଙ୍କ ପ୍ରତି ଦୟା ଓ ଆଶୀର୍ବାଦ କେତେ ବର୍ଷିଛି, ତାହାର ପ୍ରଶଂସା କରିବାକୁ କ୍ଷମ ହୋଇପାରିବା ନାହିଁ ଯଦିଓ ଦୁଃଖର ସହିତ ତାଙ୍କଠାରୁ ବିଚ୍ଛେଦ ଘଟିଛି । ଆମ୍ଭେମାନେ ପୂଜ୍ୟ ମା'ଙ୍କୁ ଦେଖି କିପରି ସେ ଠାକୁରଙ୍କର ମହାସମାଧି ଦୁଃଖରେ ମଧ୍ୟ ଦିବ୍ୟସତ୍ତାଙ୍କର ଆଶୀର୍ବାଦ ଓ ଉପସ୍ଥିତିକୁ ହୃଦୟଙ୍ଗମ କରିଛନ୍ତି । ଆମ୍ଭେମାନେ ନିଜକୁ ଅସହାୟ ଅନାଥ ବୋଲି ଭାବୁଥିବା ବେଳେ ଶ୍ରୀ ମା'ଙ୍କର ସ୍ନେହ ଆମ୍ଭମାନଙ୍କର ଏକମାତ୍ର ଆଶ୍ରୟ ସ୍ଥଳ ହୋଇଥିଲା ।" "ବୃନ୍ଦାବନରେ ଥିବାବେଳେ, ମା'ଙ୍କର ଆଶୀର୍ବାଦରୁ ମୁଁ କୃଷ୍ଣଙ୍କର ଦିବ୍ୟଲୀଳା ବୁଝିପାରିଲି ଓ ପ୍ରଶଂସା କଲି ।"

ସ୍ୱାମୀ ବିରଜାନନ୍ଦ ତାଙ୍କର ସ୍ମୃତି ଚାରଣରେ ନିଜର ଦୀକ୍ଷା ସଂପର୍କରେ ବର୍ଣ୍ଣନା କରିଛନ୍ତି । ସେ ଦୀକ୍ଷା ନେବାପରେ ତାଙ୍କର ମନର ଶଙ୍କାକୁ ଦୂର କରିବାକୁ ଯାଇ ଶ୍ରୀମା' ତାଙ୍କୁ ଉପଦେଶ ଦେଇ କହିଛନ୍ତି, "ତୁମେ ମୋ'ଠାରୁ ଯାହା ପାଇଲ (ମନ୍ତ୍ର) ତାହା ତୁମ ପାଇଁ ଭଲ" ଏବଂ ଏହି ଶବ୍ଦ ଯେପରି ତାଙ୍କ ମୁଖରୁ ନିସୃତ ହୋଇଛି ତାହା ଅଦ୍ଭୁତଭାବରେ ଅଲୌକିକ କାର୍ଯ୍ୟ କଲା । ମୁଁ ମୋ ନିଜ ଭିତରେ ମୋର ସାଧନା ସଂପର୍କରେ ଥିବା ଦୃଷ୍ଟିଭଙ୍ଗୀରେ ତତ୍‌କ୍ଷଣାତ୍ ପରିବର୍ତ୍ତନ ଘଟୁଥିବାର ଅନୁଭବ କଲି ।'

ସ୍ୱାମୀ ମାଧବାନନ୍ଦ କହିଥିଲେ, 'ମୁଁ ଶ୍ରୀମା'ଙ୍କ ପାଦତଳେ ବସି ନିଜକୁ କୃତାର୍ଥ ଅନୁଭବ କରୁଥିଲି ।'

ସ୍ୱାମୀ ବୀରେଶ୍ୱରାନନ୍ଦ ତାଙ୍କର ଅନ୍ୟତମ ଦୀକ୍ଷିତ ଶିଷ୍ୟ ଓ ମଠ ମିସନର ସଭାପତି ଉଲ୍ଲେଖ କରି କହିଛନ୍ତି, "ଶ୍ରୀମା'ଙ୍କର ଶରୀର ତ୍ୟାଗ ପରେ ତାଙ୍କର ମରଶରୀରକୁ ବେଲୁଡ ମଠ ଅଣାଯାଇ, ଯେଉଁଠାରେ ବର୍ତ୍ତମାନ ଶ୍ରୀମା'ଙ୍କର ମନ୍ଦିର ଅଛି, ସେଠାରେ ଅଗ୍ନି ସଂଯୋଗ କରାଯାଇଥିଲା । ସେତେବେଳେ ସେଠାରେ ଘାଟ ନଥିଲା କିନ୍ତୁ

ନଇଆଡ଼କୁ ଭୂମି ନିମ୍ନଗାମୀ ଥିଲା । ତାଙ୍କୁ ସେଠାରେ ଦାହ କରାଗଲା । କାଷ୍ଠରେ ଅଗ୍ନି ସଂଯୋଗ କରାଯିବା ପରେ ନିଆଁ ପ୍ରଜ୍ୱଳିତ ହୋଇ ଜଳିବାକୁ ଲାଗିଲା । ନଦୀର ଅପର ପାର୍ଶ୍ୱରେ ସେତେବେଳକୁ ପ୍ରବଳ ବର୍ଷା । ଏପରି ବର୍ଷା ହେଉଥିଲା ଯେ ଆମ୍ଭେମାନେ ନଦୀର ଅପରପାର୍ଶ୍ୱକୁ ଦେଖିପାରୁ ନଥିଲୁ । ଏପରିକି ବଡ଼ ବଡ଼ କୋଠାଘରମାନେ ମଧ ଦେଖାଯାଉନଥିଲେ । ବର୍ଷା ନଦୀର ଅଧାପର୍ଯ୍ୟନ୍ତ ମାଡି ଆସିଥିଲା । ବେଲୁଡ ମଠ ପାର୍ଶ୍ୱକୁ ବର୍ଷା ଆଦୌ ନଥିଲା ବରଂ ସୁନ୍ଦର ସୂର୍ଯ୍ୟକିରଣରେ ନିଆଁ ହୁତୁ ହୁତୁ ହୋଇ ଜଳୁଥିଲା । କିଛି ସମୟ ପରେ ସମଗ୍ର ଶରୀର ପୋଡି ପାଉଁଶ ହୋଇଗଲା । ସମୟ ହେଲା ନିଆଁରେ ପାଣି ପକାଇ ଲିଭାଇବାକୁ ହେବ । ସେଠାରେ ଜଣେ ଭଦ୍ରଲୋକ ଥିଲେ । ସେ ହେଉଛନ୍ତି ତାନ୍ତ୍ରିକ । ସେ ତାନ୍ତ୍ରିକ ନୀତି ଅନୁସାରେ ନିଆଁ ଲିଭାଇବାକୁ ଚାହିଁଲେ କିନ୍ତୁ ଯାହା ଆବଶ୍ୟକୀୟ ଜିନିଷ ଦରକାର, ତାହା ମିଳିଲା ନାହିଁ । ସେ ବଜାରକୁ ଗଲେ ଜିନିଷ ଆଣିବାକୁ ମାତ୍ର ତାଙ୍କର ମଧ ଫେରିବାରେ ବିଳମ୍ବ ହେଲା । କ୍ରମଶଃ ବିଳମ୍ବ ହେବାକୁ ଲାଗିଲା । ନିର୍ମଳାନନ୍ଦ ବ୍ୟସ୍ତ ବିବ୍ରତ ହୋଇ ମାଠିଆ ନେଇ ପାଣି ଆଣିବାକୁ ନଦୀକୁ ଗଲେ । ସେ ସେଥିରେ ପାଣି ଭର୍ତ୍ତି କରି ଶରତ ମହାରାଜଙ୍କୁ ଦେଇ କହିଲେ, 'ବରଂ ତୁମେ ପାଣି ପକାଇ ନିଆଁକୁ ଲିଭାଅ ।' ଶରତ ମହାରାଜ ପାଣି ଢାଳିଲେ । ଅନ୍ୟମାନେ ମଧ ପାଣି ଢାଳିବାକୁ ଆଣିଥାନ୍ତି । କିନ୍ତୁ ଶରତ ମହାରାଜ ପାଣି ଢାଳିବା ପରେ ପରେ ବର୍ଷା ଅପର ପାର୍ଶ୍ୱରୁ ଆସି ଢ଼ୁ ଢ଼ୁ ବର୍ଷିଗଲା । ଏମିତି ବର୍ଷା ହେଲା ଯେ ନିଆଁ ତତ୍‌କ୍ଷଣାତ୍ ଲିଭିଗଲା । ଅନ୍ୟମାନେ ପାଣି ଢାଳି ପାରିଲେ ନାହିଁ । ଆମେ ସମସ୍ତେ ଫିରି ଗଲୁ ।"

ମା'ଙ୍କର ଦୀକ୍ଷିତ ଶିଷ୍ୟ ସ୍ୱାମୀ ଅଭୟାନନ୍ଦ ତାଙ୍କର ସ୍ମୃତି ଚାରଣ କରି ସେ କିପରି ମା'ଙ୍କୁ ସ୍ୱପ୍ନରେ ଦେଖିଛନ୍ତି ତାହା ଉଲ୍ଲେଖ କରିଛନ୍ତି । ସେ କହିଛନ୍ତି, "ମୁଁ ମାନସରୋବର ଯାତ୍ରା କରିବା ସମୟରେ ଏକ ଆଶ୍ଚର୍ଯ୍ୟଜନକ ସ୍ୱପ୍ନ ଦେଖିଲି । ମୁଁ ବୋଧହୁଏ ପ୍ରଥମ ବା ଦ୍ୱିତୀୟ ରାତ୍ରୀରେ ସ୍ୱପ୍ନ ଦେଖିଲି । ପରେ ମୁଁ ନିରୀକ୍ଷଣ କରି ଦେଖିଲି ଯେ ଏହା ପ୍ରତ୍ୟୁଷର ୨ଟା । ମୁଁ ସ୍ୱପ୍ନରେ ମା'ଙ୍କୁ ଦେଖିଲି । ମା'ଙ୍କୁ ଅତି ସୁନ୍ଦର ଭାବରେ ସଜାଇ ଦିଆଯାଇଛି, ତାଙ୍କ ପାଦରେ ଅଳତା, ସେ ଅତ୍ୟନ୍ତ ଉଜ୍ଜ୍ୱଳ ଦେଖାଯାଉଛନ୍ତି, ଏକ ପରିଷ୍କାର ଧଳା ଶାଢ଼ୀ ପିନ୍ଧିଛନ୍ତି ଏବଂ ତାଙ୍କ ବେକରେ ମଧ ଫୁଲ ମାଳା ପଡ଼ିଛି । ତାଙ୍କୁ କେଉଁ ସ୍ଥାନକୁ ଅଣାଗଲା, ତାହା ମଧ ମୁଁ ଲକ୍ଷ୍ୟ କରି ଦେଖିଲି । ବର୍ତ୍ତମାନ ଗଙ୍ଗାକୂଳରେ ଯେଉଁ ସ୍ଥାନରେ ତାଙ୍କର ମନ୍ଦିର ଛିଡ଼ା ହୋଇଛି, ଠିକ୍ ସେହି ସ୍ଥାନକୁ ତାଙ୍କୁ ଅଣାଗଲା । ମୁଁ ଦେଖିଲି ବହୁଲୋକ ସେଠାରେ ଏକାଠି ହୋଇଥିଲେ କିନ୍ତୁ ମୁଁ ଜାଣି ନଥିଲି ତାଙ୍କୁ କାନ୍ଧରେ ବୋହି କରି ଆଣିଛନ୍ତି କିମ୍ବା ଗାଡ଼ିରେ

ଆଣିଛନ୍ତି । ସେହି ଲୋକ ଭିଡ଼ ମଧ୍ୟରେ ମୁଁ ତିନିଜଣଙ୍କୁ ଦେଖିଲି, ମାଖନ ସେନ, ସୁରେଶ ମଜୁମଦାର ଏବଂ ସେହି ଗୋଷ୍ଠୀର ଆଉ ଜଣେ ଲୋକ ଯାହାଙ୍କର ନାଁ ମୁଁ ମନେ ରଖିନି । କିନ୍ତୁ ତାଙ୍କ ମୁହଁ ପରିଷ୍କାର ଜଣାପଡୁଥାଏ । ଆଶ୍ଚର୍ଯ୍ୟ ଜନକ ଭାବେ, ମୁଁ ଏପରି କିମ୍ବା ଅନ୍ୟ କିଛି ସ୍ୱପ୍ନ ଦ୍ୱିତୀୟ ଥର ଦେଖିନାହିଁ ।"

"ବହୁଲୋକ ବହୁ ପ୍ରକାର ମୂର୍ତ୍ତି ଦେଖନ୍ତି । ମୁଁ ମୋ ସ୍ୱପ୍ନରେ ମା'ଙ୍କୁ ଦେଖିଲି । ମୁଁ ଉଠି ପଡ଼ିଲି ଏବଂ ମୋର ଘଡ଼ିକୁ ଚାହିଁଲି । ସମୟ ଭୋର ଦୁଇଟା ।"

ସ୍ୱାମୀ ଈଶାନନ୍ଦ ମା'ଙ୍କ ନିକଟରେ ବସି 'କର୍ମ' ସଂପର୍କରେ କହିବାବେଳେ ମା'ତାଙ୍କୁ ଉପଦେଶ ଦେଇ କହିଛନ୍ତି, "କାମରେ ଯୁକ୍ତ ରହିଲେ ମନ ଭଲ ରହେ । ତଥାପି ଜପ, ଧ୍ୟାନ, ପ୍ରାର୍ଥନା ବିଶେଷ ଭାବରେ ପ୍ରୟୋଜନ । ତୁମେ ଅନ୍ତତଃ ପକ୍ଷେ ସକାଳେ ଏବଂ ସଂଧ୍ୟାବେଳେ ଥରେ ଲେଖାଏ ବସିବା ଉଚିତ୍ । ଏହା ନୌକାର ମାସ୍ତୁଲ ପରି କାର୍ଯ୍ୟକରେ । ଜଣେ ଯେତେବେଳେ ସଂଧ୍ୟାରେ ଧ୍ୟାନରେ ବସେ, ସେତେବେଳେ ସେ ଦିନତମାମ କ'ଣ କରିଛି ଭାବେ - ଭଲ ବା ମନ୍ଦ । ଦ୍ୱିତୀୟରେ ତାର ନିଜର ମନର ଅବସ୍ଥା ଗତକାଲି କ'ଣ ଥିଲା ଓ ଆଜି କ'ଣ ଅଛି ତାହା ବିଚାର କରେ । ତା'ପରେ ନିଜର ଇଷ୍ଟଙ୍କ ଉପରେ ମନକେନ୍ଦ୍ରିତ କରି ଧ୍ୟାନ ଓ ଜପ କରାଯାଏ । ଧ୍ୟାନରେ ନିର୍ଦ୍ଦିଷ୍ଟ ଇଷ୍ଟଙ୍କର ମୂର୍ତ୍ତିର ମୁହଁ ପ୍ରଥମେ ଆସେ କିନ୍ତୁ ଜଣେ ସଂପୂର୍ଣ୍ଣ ଶରୀର ଉପରେ ଧ୍ୟାନ କରିବା ଉଚିତ୍, ଶରୀରଠାରୁ ଉପର ଆଡ଼କୁ । ତୁମେ କାମ ସହିତ ଯଦି ସକାଳେ ଓ ସଂଧ୍ୟାବେଳେ ଧ୍ୟାନ ନ କରିବ, ତେବେ ତୁମେ କିପରି ଜାଣି ପାରିବ ଯେ ତୁମେ କି ପ୍ରକାର କାର୍ଯ୍ୟ କରୁଛ ?"

ସ୍ୱାମୀ ପରମେଶ୍ୱରାନନ୍ଦ ମା'ଙ୍କର ଶୁଆ (Parrot) ପାଳିବା କଥା ଉଲ୍ଲେଖ କରିଛନ୍ତି । "ତା'ର ନାଁ ଗଙ୍ଗାରାମ । ତା' ପ୍ରତି ମା'ଙ୍କର ଅନେକ ପ୍ରେମ ଓ ଯତ୍ନ । ଗଙ୍ଗାରାମ କୌଣସି ଶିକ୍ଷା ଗ୍ରହଣ କରେନି । କେବଳ କହେ, 'ମା', 'ମା' । ମୁଁ ଦିନେ ଦେଖିଲି ଠାକୁରଙ୍କୁ ସମର୍ପିତ ହେବାକୁ ଥିବା ନୈବେଦ୍ୟ ଡାଲୁଆକୁ ପ୍ଲେଟରୁ ମା' ତାକୁ ଖୁଆଉଛନ୍ତି । ମୁଁ ତାଙ୍କ ପାଖକୁ ଦୌଡ଼ିଯାଇ ତାଙ୍କୁ ଏହା କରିବାରୁ ବିରୋଧ କଲି । 'ପୂଜା ଏଯାବତ୍ ହୋଇନି । କିନ୍ତୁ ଆପଣ ଗଙ୍ଗାରାମକୁ ଏହି ଡାଲୁଆ ଖୁଆଉଛନ୍ତି ?' 'ହେ ପ୍ରିୟ ପୁତ୍ର ! ଶ୍ରୀରାମକୃଷ୍ଣ ମଧ୍ୟ ଏହା ଭିତରେ ଅଛନ୍ତି ।' ମା' ତାଙ୍କର ସ୍ୱଭାବସୁଲଭ ଢଙ୍ଗରେ କହିଲେ ।"

ଶ୍ରୀମା' କୌଣସି ଜିନିଷକୁ ଅଧିକା ପଇସା ଦେଇ ଆଣିବାକୁ ପସନ୍ଦ କରନ୍ତି ନାହିଁ । ସ୍ୱାମୀ ସାରଦେଶାନନ୍ଦ ତାଙ୍କର ସ୍ମୃତିଚାରଣରେ କହିଛନ୍ତି, "ମା' କ୍ଷୀର ମୂଲ୍ୟ ଯାହା ଅଛି, ଭଲ କ୍ଷୀର ପାଇବା ପାଇଁ ତାହାଠାରୁ ଅଧିକ ମୂଲ୍ୟ ଦେବାକୁ ସେ କେବେ

ଚାହାନ୍ତି ନାହିଁ । ସେ କହନ୍ତି ଯେ ଏଭଳି ହେଲେ ସେମାନେ କ୍ଷୀରରେ ବେଶୀ ପାଣି ମିଶାଇ ଦେବାକୁ ପ୍ରୋତ୍ସାହନ ପାଇବେ । ତେଣୁ କୌଣସି ଜିନିଷର ଦାମ ବଢ଼ାଇବା ଆଦୌ ଠିକ୍ ନୁହେଁ । ଏହା ଫଳରେ ଲୋକମାନେ ଅଧିକ ଅସୁବିଧା ଭୋଗିବେ । ତାଛଡ଼ା, ଯେହେତୁ ଜଣକର ଟଙ୍କା ଅଛି, ଜଣେ ଅଧିକ ମୂଲ୍ୟ ଦେଇ କୌଣସି ଜିନିଷ କିଣିବା ଠିକ୍ ନୁହେଁ । ଏହାଦ୍ୱାରା ଈର୍ଷା ଜାତ ହୁଏ । ସେ ସେଥିପାଇଁ ପିଲାମାନଙ୍କୁ ସାବଧାନ କରି ଦିଅନ୍ତି । ଏବଂ ଯଦି କେହି କେବେ ଅଧିକ ପଇସା ଦେଇ କିଣିଥାଏ, ତେବେ ତାକୁ ଅନ୍ୟମାନଙ୍କ ନିକଟରେ କହିବାକୁ ମନା କରନ୍ତି ।"

ସ୍ୱାମୀ ଅରୂପାନନ୍ଦଜୀ ଶ୍ରୀମା'ଙ୍କଠାରୁ ଦୀକ୍ଷା ନେଇଥାନ୍ତି । ଦୀକ୍ଷା ଦେବା ପରେ ମା' କହିଲେ, 'ଈଶ୍ୱରଙ୍କ ନାମ ଓ ତାଙ୍କ ପ୍ରତି ପ୍ରାର୍ଥନା ତୁମର ଶରୀର ଓ ମନକୁ ପବିତ୍ର କରୁ ।' ସ୍ୱାମୀ ଅରୂପାନନ୍ଦଜୀ ପଚାରିଲେ, 'ଜପ କରିବାବେଳେ କ'ଣ ଆଙ୍ଗୁଠି ସାହାଯ୍ୟରେ ଗଣିବା ନିହାତି ଆବଶ୍ୟକ ।' ସେ ଉତ୍ତର ଦେଲେ, 'ପ୍ରଭୁ ଆଙ୍ଗୁଠି ଦେଇଛନ୍ତି । ତାଙ୍କର ମନ୍ତ୍ର ଜପକରି ତାହାର ସଦୁପଯୋଗ କର ।'

'ମୁଁ ପଚାରିଲି, ଯଦି ଈଶ୍ୱର ଅଛନ୍ତି, ତେବେ ଏହି ସଂସାରରେ ଏତେ ଯନ୍ତ୍ରଣା କାହିଁକି ? ସେ କ'ଣ ଦେଖି ପାରୁ ନାହାନ୍ତି ? କିମ୍ବା ଏହି ସବୁ କଳୁଷକୁ ଦୂର କରିବାକୁ ତାଙ୍କର କ୍ଷମତା ନାହିଁ ?' ମା' କହିଲେ, 'ସୃଷ୍ଟିରେ ଅନେକ ଯନ୍ତ୍ରଣା ରହିଛି । ଯଦି ଦୁଃଖ ନଥାନ୍ତା, ତେବେ ଜଣେ କିପରି ଆନନ୍ଦକୁ ଅନୁଭବ କରି ପାରନ୍ତା ? ଏବଂ ଏକା ସମୟରେ ସମସ୍ତେ କିପରି ଆନନ୍ଦରେ ରହିବା ସମ୍ଭବ ହେବ ?'

ସ୍ୱାମୀ ଗୌରୀଶ୍ୱରାନନ୍ଦ ଶରତ ମହାରାଜ କିପରି ମା'ଙ୍କୁ ଯାଇ ପ୍ରଣାମ କରନ୍ତି ଓ କିପରି ପ୍ରଶ୍ନ ପଚାରନ୍ତି, ତାହାର ବର୍ଣ୍ଣନା କରି କହିଛନ୍ତି, "ମହାରାଜ ମା'ଙ୍କ ଆଗରେ ଆଣ୍ଠେଇ ପଡ଼ନ୍ତି, ମା'ଙ୍କ ପାଦ ଉପରେ ତାଙ୍କର ମୁଣ୍ଡକୁ ରଖି ଦିଅନ୍ତି । ମା' ତାଙ୍କର ଦୁଇହାତକୁ ତାଙ୍କ ମୁଣ୍ଡ ଉପରେ ରଖି ଆଶୀର୍ବାଦ କରନ୍ତି । ଏହା ପରେ ମହାରାଜ ପଚାରନ୍ତି, 'ମା' ଆପଣ ଭଲ ଅଛନ୍ତି ?' ମା' ଉତ୍ତର ଦିଅନ୍ତି, 'ହଁ, ପୁଅ ଭଲ ଅଛି । ତୁମେ ଭଲ ଅଛ ?' 'ହଁ ମା', ମୁଁ ଭଲ ଅଛି ।' ମହାରାଜ ଉତ୍ତର ଦିଅନ୍ତି । ମୁଁ ପ୍ରତ୍ୟେକ ଦିନ ଏହି ପ୍ରଶ୍ନ ଓ ଏହି ଉତ୍ତର ଶୁଣେ । ମହାରାଜ ପ୍ରଣାମ କରିସାରିବା ପରେ ଧୀରେ ଧୀରେ ଉଠନ୍ତି ଏବଂ ମା'ଙ୍କ ଆଡ଼କୁ ଆଦୌ ପଛ ନକରି, ପଛେଇ ପଛେଇ କୋଠରିରୁ ନିଷ୍କ୍ରାନ୍ତ ହୁଅନ୍ତି ।"

ସ୍ୱାମୀ ଅପୂର୍ବାନନ୍ଦ ତାଙ୍କର ସ୍ମୃତି ଚାରଣ କରି କିପରି ସେ ଶ୍ରୀ ଶ୍ରୀ ମା'ଙ୍କର ଦର୍ଶନଲାଭ କରିଛନ୍ତି ତାହା ଉଲ୍ଲେଖ କରିଛନ୍ତି । ସେ ମା'ଙ୍କ ଦର୍ଶନ ନ ପାଇ ବ୍ୟତିବ୍ୟସ୍ତ ହୋଇଛନ୍ତି । ଧ୍ୟାନରେ ବସିବା ସମୟରେ ମା'ଙ୍କର ଦର୍ଶନ ଲାଭ କରି ଅନିର୍ବଚନୀୟ

ଆନନ୍ଦ ଲାଭ କରିଛନ୍ତି । ଧ୍ୟାନରେ ଦର୍ଶନ ଲାଭ କଲାପରେ, ସେ ମା'ଙ୍କ ଘରକୁ ଯାଇଛନ୍ତି ଏବଂ ମନେ ମନେ ମା' ତାଙ୍କ ସହିତ ଦି'ପଦ କଥା କହିବାର ଆଶା ପୋଷଣ କରିଛନ୍ତି । ଯେତେବେଳେ ସେ ଯାଇ ମା'ଙ୍କୁ ପ୍ରଣାମ କରିଛନ୍ତି ତାଙ୍କର ଆନନ୍ଦକୁ ଦ୍ୱିଗୁଣିତ କରି ମା' ତାଙ୍କର ଅବଗୁଣ୍ଠନକୁ ଉପରକୁ ଉଠାଇ ଦେଇଛନ୍ତି, ତାଙ୍କୁ ସସ୍ନେହରେ ଆଉଁସି ଦେଇ ପଚାରିଛନ୍ତି, 'ପୁଅ ମୋର, ପ୍ରସାଦ ନେଇଛନ୍ତି ?' ମୁଁ ହଁ କଲି । ମୁଁ ସେହିପରି ଆଣ୍ଠେଇ ରହି ଏକାଗ୍ର ଚିତ୍ତରେ ତାଙ୍କୁ ଚାହିଁ ରହିଲି । ସେ ଅତି ଧୀରସ୍ୱରରେ କହିଲେ, 'ତୁମର ମନର ଆଶା ପୂରଣ ହେଲା ! ତୁମେ ବର୍ତ୍ତମାନ ସନ୍ତୁଷ୍ଟ ତ ? ବର୍ତ୍ତମାନ ତୁମେ ଯାଅ ତ ପରେ ଆସିବ ।' ମୁଁ ଏହାଠାରୁ ଅଧିକ କ'ଣ ଚାହିଁବି ? ମୁଁ ନିଜକୁ ନିଜେ କହିଲି ।"

ଶ୍ରୀମା' ସାରଦାଦେବୀଙ୍କ ସହିତ ଶ୍ରୀରାମକୃଷ୍ଣଙ୍କର ଶିଷ୍ୟ ଓ ସନ୍ନ୍ୟାସୀ ମାନଙ୍କର ଏହି ସଂପର୍କରେ ସ୍ମୃତିଚାରଣ ଆମ ସମ୍ମୁଖରେ ଶ୍ରୀ ଶ୍ରୀ ମା'ଙ୍କର ନାରୀତ୍ୱ, ମାତୃତ୍ୱ ଓ ଦେବୀତ୍ୱର ପୃଷ୍ଠା ଉନ୍ମୋଚନ କରେ । ଶ୍ରୀମା'ଙ୍କର ମହିୟସୀ ଜୀବନ ମାତୃଜାତିର ନବ ଉନ୍ମେଷର ସମୟ । ଶ୍ରୀରାମକୃଷ୍ଣ ଓ ଶ୍ରୀମା' ସାରଦା ଦେବୀଙ୍କର ଆଧ୍ୟାତ୍ମିକ ଏକତ୍ୱ ମଧ୍ୟ ଏକ ନୂତନ ଅନୁଭୂତିର ସୂଚନା ପ୍ରଦାନ କରେ ।

ଯେଉଁମାନେ ସେହି ଜୀବନୀ ଦ୍ୱାରା ପ୍ରଭାବିତ ଓ ସେମାନଙ୍କର ନରଲୀଳାକୁ ଗଭୀର ଭାବରେ ବୁଝିବାକୁ ସକ୍ଷମ, ସେମାନେ ନିମ୍ନ ପ୍ରବୃତ୍ତିରୁ ଉତ୍ତୀର୍ଣ୍ଣ ହୋଇ ବାସ୍ତବ ଭାବେ ପୁରୁଷତ୍ୱ ଓ ନାରୀତ୍ୱର ଗୌରବ ଲାଭ କରନ୍ତି ।

ଶ୍ରୀ ରାମକୃଷ୍ଣଙ୍କର ଗୁରୁ ତୋତାପୁରୀ ଶ୍ରୀରାମକୃଷ୍ଣ ବିବାହିତ ବୋଲି ଜାଣି କହିଥିଲେ, "ଏଥିରେ କ'ଣ ଯାଏ ଆସେ ?' ସେହି କେବଳ ବ୍ରହ୍ମ ଜ୍ଞାନରେ ପ୍ରତିଷ୍ଠିତ ହୋଇ ରହିପାରେ ଯେ ନିଜର ସ୍ତ୍ରୀ ସହିତ ବାସ କରି ମଧ୍ୟ ତାହାର ତ୍ୟାଗ ଓ ପୃଥକତ୍ୱକୁ ଦୃଢ଼ଭାବେ ଧରି ରଖିପାରେ । ସେହି କେବଳ ପୂର୍ଣ୍ଣ ଉଦ୍ଭାସିତ ହୋଇପାରେ ଯେ ପ୍ରତ୍ୟେକ ପୁରୁଷ ଓ ନାରୀକୁ ଆତ୍ମା ଭାବରେ ବିଚାର କରେ ଏବଂ ସେମାନଙ୍କ ସହିତ ସେହିପରି ବ୍ୟବହାର କରେ । କୌଣସି ମଣିଷର ଲିଙ୍ଗ ସଂପର୍କିତ ଧାରଣାରେ ବାଛ ବିଚାର ଥିଲେ ସେ ହୁଏତ ଭଲ ସାଧକ ହୋଇପାରେ, କିନ୍ତୁ ସେ ତା'ର ଲକ୍ଷ୍ୟସ୍ଥାନରୁ ବହୁ ଦୂରରେ ।"

ଶ୍ରୀମା' ସାରଦାଦେବୀଙ୍କୁ ବୁଝିବା କ'ଣ ସତରେ ଏତେ ସହଜ ? ସ୍ୱାମୀ ନିଖିଳାନନ୍ଦ ତାଙ୍କର ସ୍ମୃତି ଚାରଣରେ ଲେଖିଛନ୍ତି, "ଦୀକ୍ଷା ନେବା ପରେ ମୁଁ ଶ୍ରୀମା'ଙ୍କୁ ପ୍ରଥା ଅନୁଯାୟୀ ଦକ୍ଷିଣା ଦେବାରୁ ସେ କହିଲେ, 'ସେ ତାଙ୍କର ସନ୍ନ୍ୟାସୀ ସନ୍ତାନମାନଙ୍କଠାରୁ କୌଣସି ଅର୍ଥ ନିଅନ୍ତି ନାହିଁ । ମୁଁ ଭାବିଲି ବୋଧହୁଏ ସେ ମୋତେ ବେଲୁଡ଼ମଠର ଅନ୍ତେବାସୀ

ଭାବରେ ଗ୍ରହଣ କରିଛନ୍ତି । ତେଣୁ ତାଙ୍କୁ ସଂଶୋଧନ କରିଦେବାକୁ ମୁଁ କହିଲି, 'ମୁଁ ଜଣେ ଛାତ୍ର ଓ ଗୃହୀ । କିନ୍ତୁ ସେ ବାରମ୍ବାର କହିଲେ, 'ନା, ପୁଅ ! ତୁମେ ସାଧୁ । ତୁମକୁ ମୋତେ ଗୃହୀମାନଙ୍କ ପରି କିଛି ଦେବା ଦରକାର ନାହିଁ ଏବଂ ଟଙ୍କାକୁ ସେଇ ଭୂଇଁ ଉପରେ ରଖିଦେଇ ଚାଲିଗଲେ। ମୁଁ ଭାବିଲି ସେ ମୋତେ ଭୁଲ୍ ଭାବିଛନ୍ତି। ସେ ସମୟରେ ମୋର ଏହି ସଂସାର ତ୍ୟାଗ କରିବାର କୌଣସି ଧାରଣା ନଥିଲା ।"

ସ୍ୱାମୀ ପ୍ରଭାବାନନ୍ଦ ଉଲ୍ଲେଖ କରିଛନ୍ତି,"ମୋତେ କୁହାଯାଇଥିଲା ଯେ, ଯେତେବେଳେ କେହି ଶ୍ରୀମାଙ୍କ ଗାଁ କୁ ଯାଆନ୍ତି ସେଠାରେ ତାଙ୍କ ସହିତ ସ୍ୱଚ୍ଛନ୍ଦରେ କଥାହୋଇ ପାରନ୍ତି । ଦିନେ ମୁଁ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ଦ୍ୱାରା ଦୀକ୍ଷିତ ହୋଇ ସାରିବା ପରେ ମୋର ଜଣେ ସାଙ୍ଗ ସହିତ ଜୟରାମବାଟୀକୁ ଗଲି । ଅବଶ୍ୟ ସେହି ବଂଧୁ ପରେ ସନ୍ନ୍ୟାସୀ ହୋଇଥିଲା । ଆମେ ୧୯ ବା ୨୦ ବର୍ଷର ବାଳକ ଏବଂ ଆମେ ଚିନ୍ତା କରି ନଥିଲୁ ଯେ, ଆମ ଯିବା ଖବର ଆଗତୁରା ଶ୍ରୀମା' ଜାଣିବା ଦରକାର । ଆମେ ତାଙ୍କ ପାଖକୁ ଲେଖି ନଥିଲୁ । ଆମେ ସେଠାରେ ପହଞ୍ଚିବା ପରେ, ତାଙ୍କର ସେବକ ଆମ୍ଭଙ୍କୁ କହିଲେ ଯେ ମା' ତାଙ୍କୁ ରାଖାଲଙ୍କର ଦୁଇଜଣ ସନ୍ତାନ (ସ୍ୱାମୀ ବ୍ରହ୍ମାନନ୍ଦଙ୍କର ଶିଷ୍ୟ) ଆସିବେ ଏବଂ ସେଥିପାଇଁ ବ୍ୟବସ୍ଥା କରିବାକୁ କହିଛନ୍ତି । ଆମେ ମଧ୍ୟାହ୍ନ ଭୋଜନ ପରେ ସେଠାରେ ପହଞ୍ଚିଥିଲୁ । କିନ୍ତୁ ଆମ ପାଇଁ ଶ୍ରୀମା' ଖାଦ୍ୟ ରଖିଥିଲେ । ଆମକୁ ପତ୍ର ଥାଳିରେ ଭୋଜନ ଦିଆଗଲା । ସେ ଆମ ପାଖରେ ବସି ଆମ ସହିତ କଥା ହେଲେ । ତା'ପରେ, ଆମେ ସେହି ସ୍ଥାନ ସଫା କରିବାକୁ ଯିବାରୁ ଶ୍ରୀମା' ପଚାରିଲେ, "ତୁମେ ଏସବୁ କ'ଣ କରୁଛ ? ତାଙ୍କ ଆଗରେ ମୋ ସାଙ୍ଗକୁ ଲାଜ ମାଡୁଥିଲା । କିନ୍ତୁ ମୁଁ ତାଙ୍କୁ ସାହସର ସହିତ କହିଲି, 'ମା' ଆମେ ଏଇ ଅଇଣ୍ଠା ପତ୍ର ଛାଡ଼ି ଯିବା ଠିକ୍ ହେବନି ।" ସେ ଖାଲି କହିଲେ, 'ଯଦି ତୁମ ଘରେ ମା' ତୁମର ପାଖରେ ବସିଥାନ୍ତି ତେବେ ତୁମେ କ'ଣ କରିବ ?' ବାସ, ସେତିକିରେ କଥା ଶେଷ । ଆମେ ଉଠିଗଲା ପରେ ଶ୍ରୀମା' ଅଇଁଣ୍ଠା ସଫା କରିଦେଲେ ।"

ସ୍ୱାମୀ ଗମ୍ଭୀରାନନ୍ଦ ମହାରାଜ 'ଶ୍ରୀ ଶ୍ରୀ ମା' ସାରଦାଦେବୀ' ପୁସ୍ତକରେ ଲେଖିଛନ୍ତି, "ଏହି ସଂସାର ଯନ୍ତର ଗୋଟିଏ ନିଜସ୍ୱ ଧାରା ଅଛି, ଯାହା ଦେହଧାରୀ ସମସ୍ତଙ୍କୁ ମାନି ଚଳିବାକୁ ପଡ଼େ । ଶ୍ରୀ ରାମକୃଷ୍ଣ କହିଥିଲେ, 'ନରଲୀଳାରେ ଅବତାରଙ୍କୁ ଠିକ୍ ମଣିଷ ପରି ଆଚରଣ କରିବାକୁ ହୁଏ- ତେଣୁ ଚିହ୍ନିବା କଠିନ । ମଣିଷ ଯେତେବେଳେ ହୋଇଛନ୍ତି, ସବୁ ଠିକ୍ ମଣିଷଙ୍କ ପରି । କ୍ଷୁଧା, ପିପାସା, ରୋଗ, ଶୋକ, ଭୟ ଠିକ୍ ମଣିଷଙ୍କ ପରି ।' ଠାକୁର ଆହୁରି କହିଛନ୍ତି, 'ପଞ୍ଚଭୂତର ଫାନ୍ଦେ, ବ୍ରହ୍ମ ପଡି କାନ୍ଦେ ।' ଦେବୀତ୍ୱ ମାନବୀତ୍ୱର ଯୁଗ୍ମଭାବ ଶ୍ରୀମା'ଙ୍କ ନିଜ କଥାରୁ ଅନେକ ସମୟରେ ପ୍ରକାଶ ପାଉଥିଲା ।"

ସ୍ୱାମୀ ଭୂତେଶାନନ୍ଦ ଶ୍ରୀମା'ଙ୍କ ଜୀବନର ଗୋଟିଏ ଘଟଣା ଉଲ୍ଲେଖ କରି କହିଛନ୍ତି, "ଥରେ ଶ୍ରୀମା'ଙ୍କର ଜଣେ ସହଚରୀ (ତାଙ୍କ ସହିତ ସଦାସର୍ବଦା ଥିବା ଗୋଲାପମା ଏବଂ ଯୋଗୀନମା ଯାହାଙ୍କୁ ଜୟା ଓ ବିଜୟା କୁହାଯାଏ) ଶ୍ରୀମାଙ୍କୁ ଭାବାବସ୍ଥାରେ ଦର୍ଶନ କଲେ । ସେହି ଦୃଶ୍ୟ ଥିଲା ଅଭାବନୀୟ ଓ ଅବର୍ଣ୍ଣନୀୟ । ଶ୍ରୀମା ସେପରି ଅବସ୍ଥାରୁ ସାଧାରଣ ଅବସ୍ଥାକୁ ଫେରିବା ପରେ ଗୋଲାପମା କହିଲେ, 'ମା' ! ତୁମେ କହୁଛ ତୁମର ସମାଧି ହେଉ ନାହିଁ କିନ୍ତୁ ମୁଁ ତୁମକୁ ଆଜି ସେହି ଅବସ୍ଥାରେ ଦେଖିଲି ।'

ଶ୍ରୀମା' କହିଲେ, 'ନା, ନା, ତାହାକୁ ଉଲ୍ଲେଖ କର ନାହିଁ । ଏହା ସମାଧି ନୁହେଁ । ଏ ବିଷୟରେ କିଛି କୁହ ନାହିଁ । ଏ ବିଷୟରେ କିଛି ଗୋଳମାଳ କର ନାହିଁ । ଚୁପ୍ ରୁହ ।" ସର୍ବ ସାଧାରଣରେ ତାଙ୍କର ଆଧାତ୍ମିକ ଅନୁଭୂତି ସଂପର୍କରେ ଆଲୋଚନା ହେଉ, ଏହା ସେ ଚାହୁଁ ନଥିଲେ, ଏହାହିଁ ଆଶ୍ଚର୍ଯ୍ୟ । ଏପରି ନିଜକୁ ଲୁକ୍କାୟିତ କରିବାର ଉଦ୍ଦେଶ୍ୟ ହେଉଛି ଯଦି ଲୋକମାନେ ତାଙ୍କର ଉତ୍ତୁଙ୍ଗ ଆଧାତ୍ମିକତା ସଂପର୍କରେ ଜାଣନ୍ତି, ତେବେ ତାଙ୍କୁ ମା' ଭାବରେ ଗ୍ରହଣ କରନ୍ତେ ନାହିଁ ।" ସ୍ୱାମୀ ହିରଣ୍ମୟାନନ୍ଦ କହିଛନ୍ତି, 'ଯଦି ଶ୍ରୀରାମକୃଷ୍ଣଙ୍କର ଜୀବନକୁ ବିଶ୍ୱ ଦେଖୁଛି ଗୋଟିଏ ରାଷ୍ଟ୍ରର ପାଞ୍ଚ ହଜାର ବର୍ଷର ଆଧାତ୍ମିକ ଜୀବନର ପୂର୍ଣ୍ଣତା ରୂପେ, ତେବେ ଶ୍ରୀ ସାରଦା ଦେବୀଙ୍କ ଜୀବନରେ ମଧ୍ୟ ସେହି ପୂର୍ଣ୍ଣତା ପରିଲକ୍ଷିତ ହୁଏ, କେବଳ ଏତିକି ପାର୍ଥକ୍ୟ ଯେ ଧାର୍ମିକ ଜୀବନର ସମସ୍ତ ମୂଲ୍ୟବୋଧ, ଭାବ ଏବଂ ଆଦର୍ଶ ନାରୀ ମଧ୍ୟରେ ପ୍ରତିଫଳିତ । ଏହା ଫଳରେ କିପରି ଭାବରେ ନାରୀମାନେ ସେମାନଙ୍କର ଜୀବନକୁ ଆଧାତ୍ମିକ ଉତ୍ଥାନ ମାର୍ଗରେ ନେଇ ପାରିବେ, ତାହା ଶ୍ରୀରାମକୃଷ୍ଣଙ୍କ ଠାରୁ ଆରମ୍ଭ ହୋଇଛି ।'

ସ୍ୱାମୀ ରଙ୍ଗନାଥାନନ୍ଦ ଉଲ୍ଲେଖ କରି କହିଛନ୍ତି, "ଏହି ନାମ ଓ ବ୍ୟକ୍ତିତ୍ୱର ଯାଦୁକରୀର ମୂଳ କେଉଁଠି ? ଯଦି ଆମେ ତାଙ୍କ ଜୀବନର ସାମାନ୍ୟତମ ଅଂଶ ସହିତ ପରିଚିତ ହୁଅନ୍ତି, ତେବେ ଆମେ ଅନୁଭବ କରି ପାରିବା ଏହି ଯାଦୁକରୀ ତାଙ୍କ ବ୍ୟକ୍ତିତ୍ୱର କୌଣସି ଅଂଶରୁ ଆସିନାହିଁ ଯାହାକୁ ଏହି ସଂସାର ନାରୀର ମହତ୍ତ୍ୱ ପ୍ରଦାନ କରିଛି । ବାହ୍ୟ ଦୃଷ୍ଟିରୁ ଦେଖିଲେ ଶ୍ରୀମା' ସାରଦା ନିହାତି ସାଧାରଣ, ଏପରିକି ସାଧାରଣଠାରୁ ମଧ୍ୟ କମ୍ । ଅତି ଗାଉଁଲି, ସାଧାସିଧା, ଅକ୍ଷରବିବର୍ଜିତା, ଲଜ୍ଜାଶୀଳା ଏବଂ ବିନୀତା । ସେ ତଥାକଥିତ ଶିକ୍ଷିତ, ଆତ୍ମ-ସଚେତନ, ଆଧୁନିକ ମହିଳାଙ୍କ ଠାରୁ ବହୁ ଦୂରରେ । ତଥାପି ତାଙ୍କର ଜୀବନ ପୁରାତନ ଓ ଆଧୁନିକ ପୁରୁଷ ଓ ନାରୀମାନଙ୍କର ହୃଦୟର ସ୍ପନ୍ଦନକୁ ଶକ୍ତିଶାଳୀ ଭାବରେ ଗ୍ରହଣ କରିଛି ।'' ନିବେଦିତାଙ୍କ ପାଇଁ ସେ ହୋଇଛନ୍ତି ଶ୍ରୀ ରାମକୃଷ୍ଣଙ୍କର ଭାରତୀୟ ମାତୃ ଆଦର୍ଶର ଶେଷଶବ୍ଦ । ତାଙ୍କର ଜୀବନ ଏକ ଲମ୍ବା ନୀରବ ପ୍ରାର୍ଥନା ।

ପ୍ରଖ୍ୟାତ ଦାଶର୍ନିକ ଓ ଭାରତର ପୂର୍ବତନ ରାଷ୍ଟ୍ରପତି ସର୍ବପଲ୍ଲୀ ଡକ୍ଟର ରାଧାକ୍ରିଷନ କହିଛନ୍ତି, "ପୁନଶ୍ଚ, ଆମେ ଯେତେବେଳେ ଗଣତନ୍ତ୍ର କଥା କହୁଁ, ତୁମ୍ଭମାନଙ୍କର ଏହି ଧାରଣା ହୁଏ ଯେ ପ୍ରକୃତ ଗ୍ରଣତନ୍ତ୍ରରେ ସ୍ତ୍ରୀ ଓ ପୁରୁଷକୁ ସମାନ ମର୍ଯ୍ୟାଦା ଦେବା ଉଚିତ୍ । ନାରୀ ଜାତିର ମୁକ୍ତି ହେଉଛି ଏ ଯୁଗର ସର୍ବଶ୍ରେଷ୍ଠ ଅବଦାନ । ଆମ ଦେଶରେ ରାମକୃଷ୍ଣ ଓ ଗାନ୍ଧି ଏହି ମୁକ୍ତି ପାଇଁ ଚେଷ୍ଟା କରିଛନ୍ତି । ଆମ ଦେଶରେ ନାରୀମାନଙ୍କ ସଂପର୍କରେ ନିମ୍ନମାନର ମନ୍ତବ୍ୟ ଦିଆ ଯାଉଥିଲେ ହେଁ, ସମଗ୍ର ଦେଶ ନାରୀମାନଙ୍କୁ ସମ୍ମାନ ଦିଏ । ଆମେ ସର୍ବନିୟନ୍ତାଙ୍କୁ ଅର୍ଦ୍ଧନାରୀଶ୍ୱର ବୋଲି କହୁ ଅର୍ଥାତ୍ ଅର୍ଦ୍ଧାଂଶ ନାରୀ ଓ ଅର୍ଦ୍ଧାଂଶ ପୁରୁଷ । ଆମେ ସରସ୍ୱତୀଙ୍କୁ ବିଦ୍ୟାର ଦେବୀ ଭାବେ ପୂଜା କରୁ । ରାମକୃଷ୍ଣ ମା'ଙ୍କୁ ସର୍ବନିୟନ୍ତା ଭାବେ ପୂଜା କରିଛନ୍ତି । ମନୁ ସ୍ମୃତିରେ କୁହାଯାଇଛି, 'ଯେଉଁଠାରେ ନାରୀମାନଙ୍କୁ ସମ୍ମାନ ଦିଆଯାଏ, ସେଠାରେ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । ଯେଉଁଠି ନାରୀମାନଙ୍କୁ ସମ୍ମାନ ଦିଆ ନଯାଏ, ସେଠାରେ ସମସ୍ତ କାର୍ଯ୍ୟ ମୂଲ୍ୟହୀନ ଓ ଫଳହୀନ ହୁଏ' । ତୁମେ ଗୀତଗୋବିନ୍ଦକୁ ଖୋଲି ଦେଖ । ସେଥିରେ ତୁମେ ପାଇବ, 'ଯେତେବେଳେ ଆକାଶ ବାଦଲରେ ଢଙ୍କା ହୋଇଥିବ, ଯେତେବେଳେ ତୁମର ରାସ୍ତା ତମାଳ ବୃକ୍ଷ ଦ୍ୱାରା ଆଚ୍ଛାଦିତ ଥିବ, ଯେତେବେଳେ ରାତ୍ରି ହୋଇଥିବ, ଯେତେବେଳେ ତୁମେ କେଉଁବାଟ ଦେଇଯିବ ଜାଣି ପାରିବ ନାହିଁ, ତୁମେ ନିଜକୁ ଜଣେ ସ୍ନେହାସ୍ପଦ ନାରୀ ହାତରେ ସମର୍ପିତ କର । ସେହିପରି ପରିସ୍ଥିତିରେ, ଉପରେ ଅନ୍ଧକାର, ସମ୍ମୁଖରେ ଅନ୍ଧକାର, ସମ୍ମୁଖରେ ଅନ୍ଧକାର-ରାତ୍ରି ସମୟ- ମୁଁ ଜାଣେନି କେଉଁ ଦିଗକୁ ମୁହଁ କରିବି ।'

'ଶ୍ରୀ ସାରଦାଦେବୀ, ଯାହା ଆପଣମାନେ ଜାଣନ୍ତି, ଶ୍ରୀରାମକୃଷ୍ଣଙ୍କ ମହାସମାଧି ପରେ ବହୁବର୍ଷଧରି ଦେହଧାରଣ କରିଥିଲେ । ସେ ତାଙ୍କର ଅନୁଚର ମାନଙ୍କର ଥିଲେ ପଥ ପ୍ରଦର୍ଶକ । ଏପରି କେହି ବ୍ୟକ୍ତି ନାହିଁ ଯେ ତାଙ୍କ ନିକଟକୁ ଯାଇ ତାଙ୍କ ନିର୍ଦ୍ଦେଶରେ ନିଜକୁ ଉନ୍ନୀତ ନ କରିଛି । ପ୍ରତ୍ୟେକ ଯେଉଁମାନେ ତାଙ୍କୁ ଦେଖିବାର ସୁଯୋଗ ପାଇଛନ୍ତି ସେମାନଙ୍କର ମତ ହେଉଛି ସେ ପବିତ୍ରତା, ଜ୍ଞାନ, ମାଧୁର୍ଯ୍ୟ, ନମ୍ରତାର ମୂର୍ତ୍ତିମନ୍ତ ପ୍ରତୀକ ।'

'ଆମ୍ଭମାନଙ୍କ ପାଇଁ ଅତ୍ୟନ୍ତ ଆଶ୍ୱସନାର କଥା ଯେ ଶ୍ରୀରାମକୃଷ୍ଣ ଓ ଶ୍ରୀମା' ସାରଦାଦେବୀଙ୍କୁ କିଛି ସମୟ ଚିନ୍ତା କଲେ ଆମର ଚିନ୍ତା ସାଂସାରିକ ଜଞ୍ଜାଳ ଚିନ୍ତାରୁ ଦୂରେଇ ଯାଏ । ଆମକୁ କେବଳ ଏହି ସଂସାରରେ ରହି କାର୍ଯ୍ୟ କରିବାକୁ ହେବ ନାହିଁ ବରଂ ଆମକୁ ସଂସାର ଉପର କଥା ଭାବିବାକୁ ହେବ, ତାହା ଅନୁଭବ ହୁଏ ।''

ଡାକ୍ତର ମହେନ୍ଦ୍ର ନାଥ ସରକାର ତାଙ୍କର ସ୍ମୃତି ଚାରଣରେ ଲେଖିଛନ୍ତି, "ଆଧାତ୍ମିକ ଜୀବନରେ, ଆମେ ଦେଖୁ, ଯେତେବେଳେ ହୃଦୟ ଅତ୍ୟନ୍ତ ପବିତ୍ର ହୋଇଯାଏ, ସାମାନ୍ୟତମ ସ୍ପନ୍ଦନରେ ଏହା ମୁକ୍ତ ହୋଇଯାଏ ଏବଂ ସାଧାରଣ ସଂସାର ଦୂରେଇଯାଏ । ଏହିପରି

ଭାବରେ ସାରଦାଦେବୀ ତାଙ୍କର ସ୍ୱାମୀଙ୍କର ଆଧାତ୍ମିକ ସାନ୍ନିଧ ଲାଭ କରିଛନ୍ତି । ବର୍ତ୍ତମାନ ରାମକୃଷ୍ଣ ମିସନ୍ ଏତେ ବିରାଟ ହୋଇ ପାରିଛି କାରଣ ଏହି ଦମ୍ପତି ଦ୍ୱୟଙ୍କର କାର୍ଯ୍ୟ ଏବେବି ଚାଲୁ ରହିଛି । ଏହାଥିଲା ଶ୍ରୀରାମକୃଷ୍ଣ ଓ ଶ୍ରୀ ସାରଦାଦେବୀଙ୍କର ଜୀବନ ଯାହା ଭାରତରେ ଆଧାତ୍ମିକତାର ବାର୍ତ୍ତାକୁ ପ୍ରତିଷ୍ଠିତ କରିପାରିଛି ।"

ଦାର୍ଶନିକ ଶ୍ରୀ ଟି.ଏମ୍.ପି ମହାଦେବନ୍ ଉଲ୍ଲେଖ କରିଛନ୍ତି, "ମନ ଓ ହୃଦୟ ପବିତ୍ର କରିବା ପାଇଁ ମା'ଙ୍କ ଜୀବନର ବିଶେଷତ୍ୱ ଉପରେ ଧ୍ୟାନ କରିବା ଠାରୁ ଅନ୍ୟ କିଛି ବିଶେଷ ଶୋଧକ ନାହିଁ । ଶ୍ରୀ ରାମକୃଷ୍ଣ ଏବଂ ଶ୍ରୀମା' ମାନବ ଜାତିକୁ ଦୁଇଟି ମାର୍ଗ ଦେଖାଇଛନ୍ତି ଯାହା ପରସ୍ପରର ପରିପୂରକ ଏବଂ ପ୍ରତ୍ୟେକ ଆଧାତ୍ମିକ ପିପାସୁ ଏହି ମାର୍ଗକୁ ଅନୁସରଣ କରିବା ଉଚିତ୍ ଯାହା ଫଳରେ ମୋକ୍ଷ ପ୍ରାପ୍ତି ହେବ । ଏହି ଦୁଇଟି ମାର୍ଗ ହେଉଛି ସଂସାର ନିମିତ୍ତ ତ୍ୟାଗ ଏବଂ ସଂସାରରେ ରହି ତ୍ୟାଗ । ଯଦି ଶ୍ରୀରାମକୃଷ୍ଣଙ୍କୁ ସଂସାର ନିମିତ୍ତ ତ୍ୟାଗୀ ବୋଲି କୁହାଯିବ, ତେବେ ଶ୍ରୀମା' ସାରଦା ସଂସାରରେ ରହି ତ୍ୟାଗୀ । ଶ୍ରୀମା' ଏହି ସଂସାରକୁ ଦେଖାଇଦେଇ ଯାଇଛନ୍ତି ଏହି ସଂସାରରେ ରହିବା କେତେ କଷ୍ଟ ଏବଂ ତଥାପି ସଂସାରରେ ରହିବାକୁ ହେବ । ଶ୍ରୀରାମକୃଷ୍ଣ ଓ ଶ୍ରୀମା'ଙ୍କ ମଧ୍ୟଦେଇ ଈଶ୍ୱରଙ୍କର ମାତୃଭାବ ଏହି ଜଗତ ସମ୍ମୁଖରେ ଉପସ୍ଥାପିତ ହୋଇଛି ।"

ଭଗିନୀ ଦେବମାତା ମା'ଙ୍କ ସଂପର୍କରେ ଉଲ୍ଲେଖ କରିଛନ୍ତି, "ସାଧାରଣ ମାନବୀର ରୂପ ତାଙ୍କ ଭିତରର ଦିବ୍ୟଚେତନା ଲୁଚାଇ ରଖିବାରେ ଅସମର୍ଥ ଥିଲା । ସେ କେବେ କାହାକୁ କିଛି ଶିକ୍ଷା ବା ପ୍ରବଚନ ଦେଉ ନଥିଲେ । ସେ ସ୍ୱାଭାବିକ ଜୀବନଟିଏ ବଞ୍ଚୁଥିଲେ । ଆଉ ସେହି ପତିତପାବନୀ ଜୀବନ ଅନ୍ୟ କେତେ ଯେ ଜୀବନକୁ ପବିତ୍ର ଓ ଈଶ୍ୱରମୁଖୀ କରାଇ ଥିଲା, ତାହା କିଏ କହିପାରିବ ?"

ଏଲିଜାବେଥ ଡାଭିଡ୍‌ସନ ଲେଖିଛନ୍ତି, ''ଶ୍ରୀ ମା'ଙ୍କଠାରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମହିଳାମାନେ ନିର୍ଭୟ ହୋଇ ମୃତ୍ୟୁକୁ ସାମ୍ନା କରିବାକୁ ଶିଖି ପାରିବେ ଏବଂ ଈଶ୍ୱର କେନ୍ଦ୍ରିତ ଜୀବନରୁ ସମ୍ପୂର୍ଣ୍ଣ ଅନାସକ୍ତି ପାଇବେ । ମୃତ୍ୟୁ ଆସୁଥିବାର ଦେଖି, ଶ୍ରୀମା' ସାରଦା ଦେବୀ ସାମାନ୍ୟତମ ସାଂସାରିକ ଜୀବନ ଠାରୁ ତାଙ୍କ ମନକୁ ଦୂରେଇ ନେଲେ, ତାଙ୍କ ପରିବାରର ଦାୟିତ୍ୱକୁ ଓହ୍ଲାଇ ଦେଲେ, ଯାହାକୁ ସେ ବର୍ଷ ବର୍ଷ ଧରି ଧୈର୍ଯ୍ୟର ସହ ବହନ କରି ଚାଲିଥିଲେ । ସେ ଜାଣିଥିଲେ ଯେ ତାଙ୍କର ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇଛି ।''

''ଆମେ ଯେତେବେଳେ ମା'ଙ୍କ ଉପରେ ଧ୍ୟାନ କରିବା, ଇଚ୍ଛା ମାନଙ୍କର ସୀମାହୀନ ଢେଉ ଓ ଆସକ୍ତି କ୍ରମଶଃ ସ୍ଥିର ହୋଇଯିବ । ପବିତ୍ର ଭାବେ ତାଙ୍କର ଅନୁଭବ ଏବଂ ହୃଦୟ ମଧ୍ୟରେ ତାଙ୍କର ସ୍ଥାପନା, ଏକ ନୂତନ ପ୍ରଶାନ୍ତି ଜନ୍ମ ଦିଏ ଏବଂ ଆମ୍ଭେମାନେ

ଆଶ୍ୱସ୍ତ ହେଉ ଯେ ବାରମ୍ବାର ଚେଷ୍ଟା କରିବା ଫଳରେ, ମନୁଷ୍ୟର ଇଚ୍ଛା ଈଶ୍ୱରଙ୍କର ଇଚ୍ଛା ସହିତ ଯୁକ୍ତ ହୁଏ ।''

ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ, 'ମୋର ଯେତେଯେତେ ବୟସ ହେଉଛି, ମୁଁ କ୍ଷୁଦ୍ର କ୍ଷୁଦ୍ର ଜିନିଷରେ ମହନୀୟତା ଦେଖିବାକୁ ଚେଷ୍ଟା କରୁଛି । ମୁଁ ଜାଣିବାକୁ ଚାହୁଁଛି ମହାପୁରୁଷମାନେ କ'ଣ ଖାଆନ୍ତି, କ'ଣ ପିନ୍ଧନ୍ତି, ଏବଂ ସେମାନଙ୍କର ସେବକମାନଙ୍କ ସହିତ କିପରି କଥା ହୁଅନ୍ତି ...''

ଶ୍ରୀମା'ଙ୍କ ଜୀବନୀରୁ ଗୋଟିଏ ଉଦାହରଣ ଉଲ୍ଲେଖ କରି ଯୋଆନ ରାଇନ (ଦୟା) ଶ୍ରୀମାଙ୍କୁ କାହିଁକି ନିଜ ହୃଦୟରେ ଧରି ରଖିବାକୁ ଚେଷ୍ଟା କରିଛନ୍ତି, ତାହା ବର୍ଣ୍ଣନା କରିଛନ୍ତି । "ମା' କେତେ ତାଙ୍କର ଶିଷ୍ୟମାନଙ୍କୁ ଭଲ ପାଆନ୍ତି ! ଥରେ ସେ ଜଣକୁ ଆଶୀର୍ବାଦ କରି କହିଲେ, 'ପୋଲ ତଳେ ପାଣି ବହିଯିବା ପରି ଦୁଃଖ ଓ ସୁଖ ତୁମ ପାଦତଳେ ବହିଯାଉ ।' ଏହା କହିବା ସତ୍ତ୍ୱେ ମଧ୍ୟ ସେ ଦୁଃଖରେ ଦୁଃଖିତ ବା ବିଚଳିତ ହୋଇ ପଡୁଥିଲେ । ଜଣେ ଗୃହସ୍ଥ ତାଙ୍କ ନିକଟକୁ ଆସି କହିଲା ତାଙ୍କର ଯୁବତୀ ପତ୍ନୀଙ୍କର ଅକାଳ ବିୟୋଗ ଘଟିଛି । ମା' କାନ୍ଦି ପକାଇଲେ ଏବଂ ଯୋଗୀନ୍ ମା'ଙ୍କୁ ଚାହିଁ କହିଲେ, 'ହେ ଯୋଗୀନ୍ ! ମୋର ବୋହୂ ମରିଗଲା ।' ତା'ପରେ ଶ୍ରୀମା' ଠାକୁରଙ୍କର ଫଟୋ ନିକଟରେ ବସି ପ୍ରାର୍ଥନା କଲେ । ଆଖିରୁ ଲୁହ ଝର ଝର ବୋହି ପଡୁଥାଏ ।' ''ଠାକୁର, ମୋର ବୋହୂର ପୁଣି ଥରେ ଜନ୍ମ ନ ହେଉ । ଆପଣଙ୍କ ଚରଣ ତଳେ ସଦାସର୍ବଦା ପାଇଁ ତାକୁ ସ୍ଥାନ ଦିଅ । ସେ ପୁଣିଥରେ ଶରୀର ଧାରଣ ନ କରୁ ।"

ଆନ୍ନା ନାଇଲୁଣ୍ଡ ଶ୍ରୀମା'ଙ୍କ ସଂପର୍କିତ ଏକ ଆଲୋଚନା ଚକ୍ରରେ ଭାଗ ନେଇ ଉଲ୍ଲେଖ କରିଛନ୍ତି, "ଥରେ ଗୋଲାପ ମା ଜଣେ ଚାକରାଣୀକୁ ଗାଳି ଦେଉଛନ୍ତି । ଶ୍ରୀମା' ଏହାର କାରଣ ପଚାରିଲେ ଏବଂ ଗୋଲାପ ମା ବିରକ୍ତରେ କହିଲେ, "ମା', ଆପଣଙ୍କୁ କହି ଲାଭ କ'ଣ ? ଆପଣ ଅନ୍ୟର ତ୍ରୁଟି ଦେଖି ପାରନ୍ତି ନାହିଁ । ଶ୍ରୀମା' ଅତି ନମ୍ର ସ୍ୱରରେ ଉତ୍ସାହପ୍ରଦ ଓ ଉଦ୍ଦିପକ ବାକ୍ୟ କହିଲେ, 'ଠିକ୍ ଅଛି, ଗୋଲାପ, ଅନ୍ୟ ଲୋକର ଦୋଷ ଦେଖିବା ପାଇଁ ଲୋକଙ୍କର ଅଭାବ ନାହିଁ । ଏହି ସଂସାରଟା ଅଟକି ଯିବ ନାହିଁ ମୁଁ ଯଦି ଭିନ୍ନ ହୁଏ ।' ଯେଉଁମାନେ ଉଚ୍ଚତର ଜୀବନ ପାଇଁ ନିଷ୍ଠାର ସହ ଆଗ୍ରହ ରଖୁଛନ୍ତି, ଏହା ହେଉଛି ଉଦାହରଣ ।"

ରେଭେରେଣ୍ଡ ଆଣ୍ଡ୍ରୁ ବି. ଲେମକେ ଏକ ଅଭିନବ ଘଟଣାର ଅବତାରଣା କରିଛନ୍ତି । "ଶ୍ରୀମା' (ଭଗିନୀ ନିବେଦିତାଙ୍କୁ କହିଛନ୍ତି) ବହୁ ଦିନ ତଳେ, ଶ୍ରୀ ରାମକୃଷ୍ଣ ମୋତେ ଡକାଇ ପଠାଇଲେ । ମୋତେ କୋଡିଏ ବର୍ଷ । ବସନ୍ତ ସମୟ । ଜୀବନ ଢଳ ଢଳ ।

ମୋ ପ୍ରତି ଦୟା ପରବଶ ହୋଇ ସେ କହିଲେ, 'ବଗିଚା ଭିତରେ ଗୋଟିଏ କ୍ଷୁଦ୍ର କୁଟୀର ଅଛି । ତା' ଭିତରକୁ ଯାଅ । ଦୁଆର ବନ୍ଦ କରିଦେବ । ସେଠାରେ ତୁମେ ଯାଇ ନିଶ୍ଚେ ରହିବ । ଧ୍ୟାନ କରିବ ଓ ପ୍ରାର୍ଥନା କରିବ । ଦିନେ ଦୁଆର ଖୋଲିଯିବ, ଏବଂ ବହୁ ଲୋକ ତୁମ ଚାରିପାଖରେ ଘେରି ରହି ତୁମକୁ ମା' ଡାକିବେ ।"

'ଧର୍ମ ଜୀବନର ପ୍ରାଥମିକ ଶୃଙ୍ଖଳା ହେଉଛି ଆଜ୍ଞାପାଳନ କରିବାର ଶପଥ । ଏହାର ଅର୍ଥ ନୁହେଁ ଯେ ତୁମର ଇଚ୍ଛାକୁ ଅନ୍ୟ ଇଚ୍ଛା ନିକଟରେ ଜଳାଞ୍ଜଳି ଦେବ ।' ଶ୍ରୀମା' ତାଙ୍କ ଜୀବନ ତମାମ ଠାକୁରଙ୍କର ପ୍ରତ୍ୟେକ କଥାକୁ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ନ୍ୟାନ୍‌ସି ପୋପ ମୟୋରଗା ମତଦେଇ ଲେଖିଛନ୍ତି, ''ଯଦି କେହି ଆଧ୍ୟାତ୍ମିକ ଜୀବନ ପ୍ରତି ଆଗ୍ରହୀ, ସେ ନିଶ୍ଚିତ ଭାବରେ ଶ୍ରୀ ରାମକୃଷ୍ଣଙ୍କୁ ତା' ଆତ୍ମାର ନିଭୃତ କନ୍ଦରରେ ସାକ୍ଷାତ କରିପାରିବ ଏବଂ ତାଙ୍କ ସହିତ ଏକ ହୋଇପାରିବ । କିନ୍ତୁ ତାହା ହେବ ଅନ୍ତତଃ ପକ୍ଷେ ଯୋଦ୍ଧାର ସଂଗ୍ରାମ । କିନ୍ତୁ ଏହାଠାରୁ ସହଜ ନିଜ ହୃଦୟରେ ଶ୍ରୀ ସାରଦା ଦେବୀଙ୍କୁ ଗ୍ରହଣ କରି ଭଲ ପାଇବା ଏବଂ ମା'ପରି ଗଭୀର ଭାବେ ଭଲ ପାଇବା । ଏହି ବିଶ୍ୱାସରେ ଯେ ଯୁକ୍ତି ଦ୍ୱାରା ଏହା ସମ୍ଭବ ନୁହେଁ । ସେ କହିଥିଲେ, 'ହଁ, ମୁଁ ତୁମର ମା, ନିଜର ମା ।"

ରବର୍ଟ ପି. ଉଟର ଶ୍ରୀମା'ଙ୍କ ଜୀବନରେ କିପରି ଧର୍ମ ସମନ୍ୱୟ ଘଟିଛି, ତାହାର ଚମତ୍କାର ବର୍ଣ୍ଣନା କରି ଲେଖିଛନ୍ତି, "ବିଶ୍ୱ ଇତିହାସରେ ଶ୍ରୀରାମକୃଷ୍ଣ ହେଉଛନ୍ତି ସାର୍ବଜନୀନ ଈଶ୍ୱର-ପୁରୁଷ, କାରଣ ସେ ବିଭିନ୍ନ ଧର୍ମ ମାର୍ଗକୁ ଅଭ୍ୟାସ କରିଥିଲେ ଏବଂ ପ୍ରତ୍ୟେକ ମାର୍ଗର ଶେଷରେ ଈଶ୍ୱରଙ୍କୁ ଅନୁଭୂତ ହୋଇଥିଲେ । ତଥାପି ଶ୍ରୀମା' ମାଷ୍ଟରଙ୍କର ଥିଲେ ପ୍ରକୃତ ସହଚରୀ କାରଣ ସେ ଯେପରି ଥିଲେ ସାର୍ବଜନୀନ, ମା' ମଧ୍ୟ ସେପରି ଥିଲେ । ଅତି ନିରବ ଭାବେ, ସେ ଯୀଶୁଖ୍ରୀଷ୍ଟଙ୍କର ଉପଦେଶକୁ ସାକାର କରିଥିଲେ । ଯୀଶୁ କହିଥିଲେ, 'ଗୋଟିଏ କଥା ବେଶୀ ଆବଶ୍ୟକ ଏବଂ, ନିଜ ପଡ଼ୋଶୀଙ୍କୁ ନିଜ ପରି ପ୍ରେମ କର ଏବଂ 'ଈଶ୍ୱରଙ୍କୁ ତୁମେ ହୃଦୟ, ଆତ୍ମା ଓ ସବୁ କିଛି ସମର୍ପଣ କରି ଭଲ ପାଅ ।' ଶ୍ରୀମା' କୌଣସି ଯୁକ୍ତି ବା ଧାର୍ମିକ ତତ୍ତ୍ୱ ଶିକ୍ଷା ଦେଇ ନାହାନ୍ତି । ସେ ସବୁ ପ୍ରାଣୀଙ୍କ ନିମିତ୍ତ ମାତୃପ୍ରେମର ପରିପ୍ରକାଶ କରିଛନ୍ତି । ଦୁଇଗୋଟି ଉପଦେଶ ଯୀଶୁ ପୁରୁଣା ଟେଷ୍ଟମେଣ୍ଟରୁ ଉଦ୍ଧୃତ କରିଛନ୍ତି, ଆମେ କହି ପାରିବା ଯେ ସେ ଜୁଡ଼ାଇଜିମ୍ ଓ ଖ୍ରୀଷ୍ଟଧର୍ମର ଅନ୍ତଃସ୍ଥ ଚିନ୍ତାକୁ ପ୍ରକାଶ କରିଛନ୍ତି । ଠାକୁରଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି ଯୋଗୁଁ ତାଙ୍କଠାରେ ସୀତାଙ୍କର ପରିପ୍ରକାଶ ଘଟିଛି । ଗୀତାରେ ଶ୍ରୀକୃଷ୍ଣ ବର୍ଣ୍ଣନା କରିଥିବାର କର୍ମଯୋଗ ଭାବନା ତାଙ୍କଠାରେ ପ୍ରସ୍ଫୁଟିତ ହୋଇଛି କାରଣ ସେ ଶ୍ରୀରାମକୃଷ୍ଣ ଓ ତାଙ୍କର ଶିଷ୍ୟମାନଙ୍କର ସେବା ବର୍ଷ ବର୍ଷ ଧରି କରିଛନ୍ତି । ଉପନିଷଦ, ଗୀତା ଓ ଶଙ୍କରଙ୍କ

ବର୍ଣ୍ଣିତ ଅଦ୍ୱୈତବେଦାନ୍ତର ସମତ୍ୱ ଭାବ ଏବଂ ସବୁ ପ୍ରାଣୀମାନଙ୍କ ମଧ୍ୟରେ ଈଶ୍ୱର ଦର୍ଶନ ତାଙ୍କଠାରେ ଦେଖିବାକୁ ପାଉ । ତେଣୁ ସେ ବିଶ୍ୱର ସମସ୍ତ ଧର୍ମକୁ ନିଜ ଭିତରେ ଏବଂ ନିଜର ଆଡମ୍ବରଶୂନ୍ୟ ଜୀବନରେ ସମନ୍ୱିତ କରି ପାରିଥିଲେ । ସେ ସାର୍ବଜନୀନ ଧର୍ମର ମୌଳିକତାକୁ ପ୍ରକାଶ କରିଥିଲେ । ଏହାଠାରୁ ଅଧିକ କେହି ଉତ୍ସାହପ୍ରଦ ଭାବନା ସୃଷ୍ଟି କରିପାରେ ତାହା ମୋତେ ଜଣାନାହିଁ ।"

ସ୍ୱାମୀ ତତ୍ତ୍ୱପାନନ୍ଦ କହିଛନ୍ତି, "ଅତି ସାଧାରଣ ଓ ଅନପୌଚାରିକ ଭାବେ ଶ୍ରୀରାମକୃଷ୍ଣଙ୍କର ଭକ୍ତମାନଙ୍କ ଚେତନାଶୀଳ ହୃଦୟରେ ଶ୍ରୀମା' ପ୍ରବେଶ କରନ୍ତି । ସେ ଆମ ହୃଦୟରେ ପ୍ରତ୍ୟେକ ନାରୀଙ୍କ ପ୍ରତି ସମ୍ମାନ ବୋଧକୁ ଜାଗ୍ରତ କରାନ୍ତି । ଶ୍ରୀମା ସୀମାହୀନ ପ୍ରେମ ବର୍ଷଣ କରନ୍ତି ସମସ୍ତଙ୍କ ଉପରେ ।'

ଶ୍ରୀ ପ୍ରଣବ ରଂଜନ ଘୋଷ ଶ୍ରୀମା'ଙ୍କର ସ୍ନେହ ଓ ଶ୍ରଦ୍ଧା ସଂପର୍କରେ ଉଲ୍ଲେଖ କରିଛନ୍ତି, "ମୁଁ ଥରେ ଆମ ବିଶ୍ୱବିଦ୍ୟାଳୟର ମୋର ଜଣେ ଅଧ୍ୟାପକଙ୍କୁ ଶ୍ରୀମା'ଙ୍କର ବିଶେଷତ୍ୱ ସଂପର୍କରେ ପଚାରିଲି । ସେ ମା'ଙ୍କର ଶିଷ୍ୟ । ତାଙ୍କ ଆଖିରେ ଲୁହ ଆସିଗଲା । ସେ ଲୁହ ଛଳ ଛଳ ଆଖିରେ କହିଲେ, 'ମୁଁ ଯାହା ପାଇଛି ତାହା ହେଉଛି ଶ୍ରୀମା'ଙ୍କର ଭଲପାଇବା । ବଡ଼ ବା ସାନ, ସାଧୁ ବା ପାପୀ ସମସ୍ତଙ୍କ ପ୍ରତି ଏହା ଥିଲା ସମାନ । ତାଙ୍କ ଭଲ ପାଇବାର ସ୍ରୋତ କେବେ ହେଲେ ଶେଷ ହୁଏ ନାହିଁ ।"

ରତ୍ନା. ଆର. ନବରତ୍ନ ଲେଖିଛନ୍ତି, ତାଙ୍କ ଜୀବନୀ "ଈଶ ଉପନିଷଦ'ର ଜୀବନ୍ତ ଭାଷ୍ୟ, ଯେଉଁଠାରେ ମନୁଷ୍ୟର ଏକତ୍ୱ ଲାଭ ପାଇଁ ବ୍ୟାପକ ଅନୁଭୂତି ସଂପର୍କରେ ବର୍ଣ୍ଣନା କରାଯାଇଛି । ସତରଗୋଟି ଶ୍ଲୋକରେ ନିଃସ୍ୱାର୍ଥ ସେବାର ଆଦର୍ଶ ଏଥିରେ ବର୍ଣ୍ଣିତ ।

ଏହାର ପ୍ରଥମ ଶ୍ଲୋକରେ କୁହାଯାଇଛି,

ଈଶା ବାସ୍ୟମିଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜିଥା ମା ଗୃଧଃ କସ୍ୟ ସ୍ୱିଦ୍ ଧନମ୍ ॥

ଅର୍ଥାତ୍ ମନୁଷ୍ୟ ପ୍ରତି ବେଦ ଭଗବାନଙ୍କର ପବିତ୍ର ଆଦେଶ ଅଛି କି ଅଖିଳ ବିଶ୍ୱ ବ୍ରହ୍ମାଣ୍ଡରେ ଯାହାକିଛି ଚରଚରାତ୍ମକ ଜଗତ ଦୃଶ୍ୟ ଅଛି ସେ ସମସ୍ତ ସର୍ବାଧାର, ସର୍ବନିୟନ୍ତା, ସର୍ବାଧିପତି, ସର୍ବଶକ୍ତିମାନ, ସର୍ବଜ୍ଞ, ସର୍ବକଲ୍ୟାଣ ଗୁଣ ସ୍ୱରୂପ ପରମେଶ୍ୱରଙ୍କ ଦ୍ୱାରା ବ୍ୟାପ୍ତ ଅଛି, ସଦା ସର୍ବତ୍ର ତାଙ୍କ ଦ୍ୱାରା ପରିପୂର୍ଣ୍ଣ ଅଛି, କୌଣସି ଅଂଶ ତାଙ୍କଠାରୁ ରହିତ ହେଉନାହିଁ । ସେ ଆମ୍ଭମାନଙ୍କୁ ସଦା ସବୁଆଡ଼େ ଦେଖୁଛନ୍ତି । ଯେଉଁ ମନୁଷ୍ୟ ଏହିପରି ବ୍ୟାପକ ଅନ୍ତର୍ଯ୍ୟାମୀ ପରମାତ୍ମାଙ୍କୁ ସ୍ମରଣ କରି ଏହି ଜଗତରେ ମମତା ଓ ଆସକ୍ତି ତ୍ୟାଗ କରି କର୍ତ୍ତବ୍ୟ ପାଳନ ନିମନ୍ତେ ଅନାସକ୍ତ ଭାବରେ ବିଷୟରେ ଉପଭୋଗ

କରନ୍ତି ଏବଂ ଅନ୍ୟାୟାଚରଣ ଦ୍ୱାରା କାହାରି କୌଣସି ଦ୍ରବ୍ୟ ଗ୍ରହଣ କରିବାର ଇଚ୍ଛା କରନ୍ତି ନାହିଁ, ସେ ଧର୍ମାତ୍ମା ହୋଇ ଏହି ଲୋକରେ ସୁଖ ଏବଂ ପରଲୋକରେ ମୁକ୍ତି ସୁଖକୁ ପ୍ରାପ୍ତ ହୋଇ ସଦା ଆନନ୍ଦ ଉପଭୋଗ କରନ୍ତି ।'

ମେଖଲାଝା ବର୍ଣ୍ଣନା କରି ଲେଖିଛନ୍ତି, "ପ୍ରତ୍ୟେକ ମହାପୁରୁଷ ତାଙ୍କର ବାର୍ତ୍ତାର ଅର୍ଦ୍ଧେକ ନିଜ ଜୀବନ ମାଧ୍ୟମରେ ଓ ଅନ୍ୟ ଅର୍ଦ୍ଧେକ ବାର୍ତ୍ତା ମାଧ୍ୟମରେ ପ୍ରଦାନ କରିଛନ୍ତି । ଏହା ଦେଖାଯାଇଛି ଯେ ଶ୍ରୀମା' କୌଣସି ସଭାମଞ୍ଚରୁ ଉପଦେଶ ଦେଇ ନାହାନ୍ତି । ସେ ମାନବ ଜାତିକୁ ତାଙ୍କର ବାର୍ତ୍ତା ଘର କରଣା କାମ କରିବା ସମୟରେ ଦେଇଛନ୍ତି, କେବଳ କଥାରେ ନୁହେଁ । ନିଜ ଲୋକମାନଙ୍କ ପାଇଁ କାମ କରି ଦେଖାଇଛନ୍ତି । ସାଧାରଣ କଥାବାର୍ତ୍ତା ବେଳେ ସେ ପ୍ରାୟ ଘୋଷଣା କରି କହିଥାନ୍ତି, 'ଈଶ୍ୱରଙ୍କୁ ଅନୁଭବ କରି ଜଣେ କ'ଣ ପାଇବ ? ଜଣକର କ'ଣ ଦୁଇଟି ଶିଙ୍ଘ ଉଠିବ ? ନାଁ, ସେତେବେଳେ ସେ ପ୍ରକୃତ ଓ ଅପ୍ରକୃତ ମଧ୍ୟରେ ପାର୍ଥକ୍ୟ କ'ଣ ଜାଣେ, ଆଧ୍ୟାତ୍ମିକ ଚେତନାକୁ ଉପଲବ୍ଧି କରେ ଏବଂ ଜୀବନ ଓ ମୃତ୍ୟୁଠାରୁ ଆଗକୁ ଯାଏ ।"

ଲେଟା ଜେନ ଲୁଇସ୍ କହିଛନ୍ତି, "ଶ୍ରୀରାମକୃଷ୍ଣଙ୍କ ସହିତ ସାରଦାଙ୍କର ସଂପର୍କ ଏତେ ଗଭୀର ଯେ ସେ ନିଜ ଅନ୍ତରର ପବିତ୍ରତା ଏବଂ ଉତ୍ତମ ଭାବ ସଂପର୍କରେ ଆଗ୍ରହ ପ୍ରକାଶ କରି ଆକାଶରେ ଚନ୍ଦ୍ରକୁ ଚାହିଁ ପ୍ରାର୍ଥନା କରନ୍ତି, 'ତୁମର କିରଣ ପରି ମୋ ହୃଦୟକୁ ସ୍ୱଚ୍ଛ କର କିମ୍ବା ଚନ୍ଦ୍ରର ପ୍ରତିଫଳିତ କିରଣ ଗଙ୍ଗା ବକ୍ଷରେ ଦେଖି କହନ୍ତି, 'ଚନ୍ଦ୍ରରେ ମଧ୍ୟ ଚିହ୍ନ ରହିଛି, ମୋ ମନରେ ଆଦୌ ଚିହ୍ନ ନ ରହୁ ।"

ଶ୍ରୀମା' ସାରଦାଦେବୀଙ୍କ ସଂପର୍କରେ ଶ୍ରୀରାମକୃଷ୍ଣଙ୍କର ଶିଷ୍ୟମାନଙ୍କଠାରୁ ଆରମ୍ଭ କରି ମା'ଙ୍କର ଶିଷ୍ୟ, ଅନ୍ୟାନ୍ୟ ସାଧୁ ଓ ଗୃହୀ ଭକ୍ତ ଏବଂ ମହାମନୀଷୀଙ୍କର ବକ୍ତବ୍ୟ ଉପସ୍ଥାପିତ କରିବାର ମୂଳ ଉଦ୍ଦେଶ୍ୟ ହେଲା ଶ୍ରୀ ମା' ସାରଦା କିପରି ଭାବରେ ଜନମାନସକୁ ଆନ୍ଦୋଳିତ କରି ନିଜର ଅମାପ, ଅବର୍ଣ୍ଣନୀୟ, ଅପରୂପ ଆଧ୍ୟାତ୍ମିକ ଜୀବନଦ୍ୱାରା ପ୍ରଭାବିତ କରି ପାରିଛନ୍ତି ତାହା ଦେଖାଇବା। ଏହା ସାଧାରଣ ଘଟଣା ନୁହେଁ ବରଂ ଅଲୌକିକ । ରଘୁବଂଶରେ ମହାକବି କାଳିଦାସଙ୍କ ଅମରବାଣୀ;

"ବାଗର୍ଥାବିବ ସଂପୃକ୍ତୌ ବାଗର୍ଥପ୍ରତିପତ୍ତୟେ
ଜଗତ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।"

ଅର୍ଥାତ୍, ଶିବ ଓ ପାର୍ବତୀ ଉଭୟେ ବାକ୍ୟ ଏବଂ ତା'ର ଅର୍ଥ ସଦୃଶ ପରସ୍ପର ସହିତ ଅଚ୍ଛେଦ୍ୟ ଭାବରେ ସଂପୃକ୍ତ । ଠିକ୍ ସେହିପରି ଶ୍ରୀମା' ସାରଦା ଓ ଶ୍ରୀରାମକୃଷ୍ଣ ସେହିପରି ଅଚ୍ଛେଦ୍ୟ ।

ଶ୍ରୀମା' ସାରଦାଦେବୀଙ୍କ ମଧ୍ୟରେ ଶ୍ରୀରାମକୃଷ୍ଣଙ୍କ ପୂର୍ଣ୍ଣତା ଦେଖିବାକୁ ମିଳେ ।

ତାଙ୍କ ମାଧ୍ୟମରେ, ଅପହଞ୍ଚ ଶ୍ରୀ ରାମକୃଷ୍ଣ ପ୍ରତ୍ୟେକ ଗୃହ ଓ ଗୃହ ପରିବେଶର କେନ୍ଦ୍ରବିନ୍ଦୁ ହୋଇଛନ୍ତି । ତାଙ୍କ ବ୍ୟତୀତ ହୁଏତ ଶ୍ରୀରାମକୃଷ୍ଣ କେବଳ ଆଦର୍ଶର ମୂର୍ତ୍ତି ହିଁ ହୋଇ ରହି ଯାଇଥାନ୍ତେ ।'

ଶ୍ରୀମା' ଆମର ଏହି ସଂସାର ଭିତରେ ରହି ରୋଷେଇ କରିଛନ୍ତି, ସେବା କରିଛନ୍ତି, ଦୁଃଖ କଷ୍ଟ ସହିଛନ୍ତି ଏବଂ ସବୁରି ଘରର ଯାବତୀୟ ସମସ୍ୟା ସହିତ ଯୋଡ଼ି ହୋଇଯାଇଛନ୍ତି । ଯଦିଓ ସେ ଆମ ଘରର, ଆମ ସଂସାରର କେନ୍ଦ୍ରବିନ୍ଦୁ, କିନ୍ତୁ ବାସ୍ତବରେ ସେ ବ୍ରହ୍ମଜ୍ଞାନୀ । ଏହା ହିଁ ମାନବ ସମାଜର ଆଧ୍ୟାତ୍ମିକ ଇତିହାସରେ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ ।



# ବାଲ୍ୟ ଜୀବନ

ଶ୍ରୀମା' ସାରଦାଦେବୀଙ୍କର ଜନ୍ମମାଟି ଜୟରାମବାଟୀ । କଲିକତାର ଦକ୍ଷିଣ ପଶ୍ଚିମ ଦିଗରେ ୯୬କି.ମି. ଦୂରରେ ବାଙ୍କୁଡ଼ା ଜିଲ୍ଲା ଅବସ୍ଥିତ । ବର୍ତ୍ତମାନ ସେଠାକୁ ଗମନାଗମନର ଅତ୍ୟନ୍ତ ସୁବିଧା, କିନ୍ତୁ ସେ ସମୟରେ ସେଠାକୁ ଯିବା ସହଜ ସାଧ ନଥିଲା । ସବାରୀରେ, ଶଗଡ଼ରେ, ପାଦରେ ବିଲବଣ ମଧ ଦେଇ ଯିବାକୁ ପଡୁଥିଲା । ବାଟରେ ଡକାୟତଙ୍କ ହାବୁଡ଼ରେ ପଡ଼ିବାର ଆଶଙ୍କା ମଧ ଥିଲା । ଗାଁରେ ଥିଲା ଶହେ ପାଖାପାଖି ଝାଟିମାଟିର କୁଡିଆ । ଲୋକଙ୍କର ଚାଷ ବାସରେ ଗୁଜୁରାଣ ମେଣ୍ଟୁଥିଲା । ପାଖରେ ଦୋକାନ ବଜାର ନଥିବାରୁ ନିର୍ଭର କରିବାକୁ ପଡୁଥିଲା କୋଟାଲପୁର, କୋୟାପେଟ ଏବଂ କାମାରପୁକୁର- ପ୍ରାୟ ଛ'ମାଇଲ ଦୂର ଗାଁ ମାନଙ୍କର ଛୋଟ ବଜାର ଗୁଡ଼ିକ ଉପରେ । ସେହି ଅଞ୍ଚଳଟି ମଧ ମ୍ୟାଲେରିଆ ରୋଗ ସଂକ୍ରମଣର କେନ୍ଦ୍ର ପାଲଟି ଥିଲା । ଗାଁର ଲୋକମାନେ ଆନନ୍ଦ ଉତ୍ସବରେ ମାତୁଥିଲେ ଦୁର୍ଗାପୂଜା, କାଳୀପୂଜା, ଦୋଳ ପୂର୍ଣ୍ଣିମା ଓ ଅନ୍ୟାନ୍ୟ ପର୍ବପର୍ବାଣି ସମୟରେ । ଜୟରାମବାଟୀର ଅଧିଷ୍ଠାତ୍ରୀ ଦେବୀଥିଲେ ସିଂହବାହିନୀ । ଗାଁରେ ଦୁଇଟି ବ୍ରାହ୍ମଣ ପରିବାର ଥିଲେ । ବାନାର୍ଜୀ ଓ ମୁଖାର୍ଜୀ । ଶ୍ରୀମା' ଥିଲେ ମୁଖାର୍ଜୀ ପରିବାରର କନ୍ୟା । ପିତା ରାମଚନ୍ଦ୍ର ମୁଖୋପାଧ୍ୟାୟ (ମୁଖାର୍ଜୀ) ।

ଶ୍ରୀମା'ଙ୍କର ପିତା ରାମଚନ୍ଦ୍ର ଥିଲେ ଜଣେ ସଦାଚାରୀ ମଣିଷ । ଶ୍ରୀମା' ତାଙ୍କ ପିତାଙ୍କ ସଂପର୍କରେ କହିଛନ୍ତି, "ମୋର ପିତା ଜଣେ ଉତ୍ତମ ମଣିଷ ଥିଲେ । ସେ ରାମଙ୍କର ବଡ଼ ଭକ୍ତ ଥିଲେ । ବ୍ରାହ୍ମଣ ମାନଙ୍କର ଆଦର୍ଶ ଜୀବନ ପ୍ରତି ତାଙ୍କର ଅଗାଧ ଅନୁରକ୍ତି ଥିଲା । ସେ ବାଛବିଚାର କରି ଦାନ ଗ୍ରହଣ କରୁଥିଲେ । ସେ ହୁକା ପିଇବାକୁ ଭଲ ପାଉଥିଲେ । ହୁକା ପିଇବା ବେଳେ ସେ ତାଙ୍କ ଦୁଆରଦେଇ ଚାଲି ଯାଉଥିବା ଲୋକମାନଙ୍କୁ ଡାକି ନମ୍ର କଣ୍ଠରେ କହିବେ, 'ଭାଇ, ଭିତରକୁ ଆସ । ହୁକା ପିଅ ।"

ଶ୍ରୀମା' ତାଙ୍କ ପିତାଙ୍କର ଦୟାର୍ଦ୍ର ହୃଦୟର ପରିଚୟ ଦେବାକୁ ଯାଇ ପରବର୍ତ୍ତୀ ସମୟରେ ଶିଷ୍ୟମାନଙ୍କୁ କହିଛନ୍ତି, "ମୋତେ ଯେତେବେଳେ ପ୍ରାୟ ଦଶବର୍ଷ, ଏକ ଭୟଙ୍କର ଦୁର୍ଭିକ୍ଷ ଜୟରାମବାଟୀକୁ ଛିନ୍ନଛତ୍ର କରି ପକାଇଲା । ବହୁ ବହୁ ଲୋକ

ଆମ ଘରକୁ ଖାଇବା ପାଇଁ ଆସନ୍ତି । ଗତବର୍ଷ ଉତ୍ପାଦନରୁ ଆମ ଘରେ ଚାଉଳ ଥାଏ । ମୋ ବାପା ଚାଉଳ ଓ ଡାଲି ମିଶାଇ ଖେଚୁଡି ତିଆରି କରନ୍ତି । ଖେଚୁଡିକୁ ଅନେକ ଗୁଡ଼ିଏ ହାଣ୍ଡିରେ ରଖାଯାଏ । ପରିବାରର ଲୋକମାନେ ମଧ୍ୟ ସେହି ଖେଚୁଡ଼ିକୁ ଖାଆନ୍ତି । ଭୋକିଲା ଲୋକେ ମଧ୍ୟ ଖେଚୁଡ଼ି ଖାଆନ୍ତି । ବାପା କିନ୍ତୁ କହିବେ, 'ମୋ ଝିଅ (ସାରଦା) ଖାଇବା ପାଇଁ ଟିକିଏ ଭଲ ଚାଉଳରେ ଭାତ ରନ୍ଧା ହେବ । ସେ ତାହାକୁ ଖାଇବ ।' ଥରେ ଥରେ ଏତେ ଭୋକିଲା ଲୋକ ଆସନ୍ତି ଯେ, ସେମାନଙ୍କ ପାଇଁ ଖାଦ୍ୟ ଯଥେଷ୍ଟ ହୁଏ ନାହିଁ । ତେଣୁ ନୂଆ ଚାଉଳର ଖେଚୁଡ଼ି ରନ୍ଧାଯାଏ । ଗରମ ଗରମ ଖେଚୁଡ଼ିକୁ ବଡ଼ ବଡ଼ ମାଟି ହାଣ୍ଡିରେ ଢଳାଯାଏ । ମୁଁ ତାକୁ ପଙ୍ଖା କରି ଶୀତଳ କରେ । ଭୋକିଲା ଲୋକେ ଅପେକ୍ଷା କରିଥାନ୍ତି । ଥରେ ଜଣେ ଅଚ୍ଛବ ଜାତିର ଝିଅ ସେଠାକୁ ଆସିଲା । ତା' ମୁଣ୍ଡବାଳ କହରା ହୋଇ ଜଟା ପଡ଼ିଯାଇଥାଏ । ପାଗଳଙ୍କ ପରି ଆଖି ଲାଲ୍ । ସେ ଦେଖିଲା ଗାଈମାନଙ୍କ ପାଇଁ ବଡ଼ ହାଣ୍ଡିରେ କୁଣ୍ଡା ସିଝା ହୋଇ ଥୁଆ ହୋଇଛି । ତାକୁ ଖାଇବାକୁ ଆରମ୍ଭ କଲା । ଆମେ ତାକୁ କହିଲୁ, 'ଘର ଭିତରେ ଖେଚୁଡ଼ି ଅଛି, ଯାଇ କରି ଖାଆ ।' କିନ୍ତୁ ତାର ଭିତରକୁ ଯିବାକୁ ଧୈର୍ଯ୍ୟ ନଥିଲା । ଖାଲି ପେଟର ଜ୍ୱାଳା ସମ୍ଭାଳିବା କ'ଣ ସହଜ ହୋଇଛି ?"

ଶ୍ରୀମା' ସାରଦାଦେବୀଙ୍କର ଜନନୀ ଥିଲେ ଶ୍ୟାମାସୁନ୍ଦରୀ ଦେବୀ । ସେ ସିଓଡ ଗ୍ରାମର ହରି ପ୍ରସାଦ ମଜୁମଦାରଙ୍କ ଝିଅ । ସେ ଦେଖିବାକୁ ହୃଷ୍ଟପୁଷ୍ଟ ଏବଂ ଅତ୍ୟନ୍ତ ସାଧାସିଧା ଓ କରୁଣାର ମୂର୍ତ୍ତି ଥିଲେ ।

୨୨ ଡିସେମ୍ବର ୧୮୫୩ ମସିହାରେ ସାରଦାଦେବୀଙ୍କର ଜନ୍ମ । ତାଙ୍କର ପିଲାଦିନ ଗାଁ ପରିବେଶରେ ବଢ଼ିଥିବା ଝିଅମାନଙ୍କ ପରିଥିଲା । ସେ ପିଲାଦିନର ସ୍ମୃତି ଚାରଣ କରି କହିଛନ୍ତି, "ମୁଁ ରାନ୍ଧେ ଏବଂ ମୋ ବାପା ଚୁଲିରୁ ବଡ଼ ହାଣ୍ଡିକୁ ଓହ୍ଲାଇବାରେ ମୋତେ ସାହାଯ୍ୟ କରନ୍ତି । ପିଲାଦିନେ ମୁଁ କେବେକେବେ ବେକେ ପାଣିରେ ପଶି ଗାଈ ମାନଙ୍କ ପାଇଁ ଘାସ କାଟେ । ବିଲରେ କାମ କରୁଥିବା ମୁଲିଆମାନଙ୍କ ନିକଟକୁ ଖାଇବାକୁ ନିଏ । ଥରେ ବିଲର ସବୁ ଧାନରେ ପୋକ ଲାଗିଗଲା । ମୁଁ ଗୋଟିଏ ବିଲରୁ ଆଉ ଗୋଟିଏ ବିଲକୁ ଯାଇ ଧାନ ସଂଗ୍ରହ କଲି ।"

ପିଲାଦିନେ ସେ ଥିଲେ ଅତ୍ୟନ୍ତ ଶାନ୍ତଶିଷ୍ଟ । କାହା ସହିତ କଳିକରନ୍ତି ନାହିଁ ବରଂ କେହି କଳି ଲାଗିଲେ, ସେମାନଙ୍କ ମଧ୍ୟରେ ଆପୋଷ ବୁଝାମଣା କରିଦିଅନ୍ତି । ସେ କାଳୀ ଓ ଲକ୍ଷ୍ମୀ ମୂର୍ତ୍ତି ତିଆରି କରି ଫୁଲ ଓ ବେଲପତ୍ର ଦେଇ ପୂଜା କରନ୍ତି । ସେ ତାଙ୍କର ସାନଭାଇ ମାନଙ୍କର ଯତ୍ନ ନିଅନ୍ତି । ସେମାନଙ୍କୁ ବିଦ୍ୟାଳୟକୁ ନେଇଯାନ୍ତି । ସେ କିନ୍ତୁ ସ୍କୁଲର ମାଟି ମାଡି ନାହାନ୍ତି । ପରେ ନିଜ ଚେଷ୍ଟାରେ କିଛି ପଢ଼ିଲେଖି

ଶିଖିଥିଲେ । ନିଜ ନାଁ ଲେଖିବାର ଚେଷ୍ଟାରେ ଅସଫଳ ହୋଇ, ସେ ଚେଷ୍ଟା ଛାଡ଼ି ଦେଇଥିଲେ ।

ଭାରତରେ ସଂସ୍କୃତି ସହିତ ସାକ୍ଷରତାର କୌଣସି ସଂପର୍କ ନଥିଲା । ଝିଅମାନଙ୍କର ଜୀବନ, ପରିବାରରେ ଧାର୍ମିକ ଜୀବନର ପରିବେଶ, ମନ୍ଦିରରେ ଉତ୍ସବ, ପୁରାଣ ଶ୍ରବଣ, ଗାଁରେ ଅଭିନୀତ ହେଉଥିବା ଆଧ୍ୟାତ୍ମିକ ନାଟକ ପ୍ରଭୃତି ଦେଖି ଓ ଶୁଣି ପୂର୍ଣ୍ଣତା ଲାଭ କରୁଥିଲା ।

ସାରଦାଙ୍କ ଜୀବନରେ ଏହିପରି ବ୍ୟାପକ ପରିବେଶ ଥିଲା । କାରଣ ପରବର୍ତ୍ତୀ ସମୟରେ ଶିଷ୍ୟମାନଙ୍କୁ ସେ ଅନେକ ପୁରାଣର ଗଳ୍ପ କହିଥିବାର ଦେଖାଯାଏ । ଏବଂ ଅତି ବାଲ୍ୟକାଳରୁ ଉଚ୍ଚଙ୍ଗ ଆଧ୍ୟାତ୍ମିକ ସାଧନାରେ ବ୍ୟାପ୍ତ ରାମକୃଷ୍ଣଙ୍କ ସହିତ ସଂପର୍କ ତାଙ୍କର ଚିନ୍ତା ଓ ଆଦର୍ଶକୁ ମହନୀୟ କରି ଗଢ଼ି ତୋଳିଥିଲା ।

ବଂଗଳାରେ ପିଲାମାନଙ୍କର ଦୁଇଟି ନାମ ଦିଆଯାଏ । ଜାତକ ଅନୁସାରେ ତାଙ୍କର ନାମ ଥିଲା ଠାକୁରମଣି ଏବଂ ଡାକନାମ କ୍ଷେମଙ୍କରୀ । ତାଙ୍କ ଖୁଡ଼ୀର ଝିଅ ସାରଦାର ମୃତ୍ୟୁ ହେବା ଫଳରେ ତାଙ୍କର ଡାକନାମ ବଦଳାଇ ସାରଦା ହେଲା, ଫଳରେ ତାଙ୍କ ଖୁଡ଼ୀ ତାଙ୍କ ଭିତରେ ମୃତ ଝିଅକୁ ଅନୁଭବ କରିପାରିବେ ।

ସେ ପରିଚିତ ହେଲେ ସାରଦା ନାମରେ । ଠାକୁର ମଣି ଓ କ୍ଷେମଙ୍କରୀ କୁଆଡ଼େ ଉଭେଇ ଗଲା ।

କାଳିଦାସ ଶକୁନ୍ତଳା କାବ୍ୟରେ ଲେଖିଛନ୍ତି-

ଅର୍ଥୋହି କନ୍ୟା ପରକୀୟ ଏକ ତାମଦ୍ୟ ସପ୍ରେଷ୍ୟ ପରିଗ୍ରହିତୁଃ ।
ଜାତୋଽସ୍ମି ସଦ୍ୟୋ ବିଶଦାନ୍ତରାତ୍ମା ଚିରସ୍ୟ ନିକ୍ଷେପମିବାର୍ପୟିତ୍ୱା ॥

(ଶକୁନ୍ତଳା ୪.୫୦)

ଏହାର ଅର୍ଥ ହେଉଛି ପ୍ରାୟତଃ କନ୍ୟା ହେଉଛି ଅନ୍ୟ ଜଣେ ଲୋକର ସଂପତ୍ତି । ଆଜି ତାକୁ ତାର ସ୍ୱାମୀ ପାଖରେ ସମର୍ପଣ କରି, ମୋର ଚେତନା ସଂପୂର୍ଣ୍ଣ ଭାବେ ପରିଷ୍କାର ହୋଇଗଲା । କାରଣ ବହୁ ଦିନରୁ ଗଚ୍ଛିତ ସଂପତ୍ତିକୁ ମୁଁ ତାହାର ମାଲିକ ହାତରେ ସମର୍ପି ଦେଲି ।

ଏହି କାରଣରୁ ପିଲାଦିନରୁ ଝିଅମାନଙ୍କୁ ବିବାହ ଦିଆଯାଏ । ସେତେବେଳେ ବାଲ୍ୟବିବାହ ସାମାଜିକ ପ୍ରଥା ଭାବେ ଚଳୁଥିଲା । ବାଲ୍ୟ ବିବାହର ଉଦ୍ଦେଶ୍ୟ ଥିଲା କନ୍ୟା ତା ସ୍ୱାମୀର ପ୍ରଭାବ ଦ୍ୱାରା ପ୍ରଭାବିତ ହୋଇ ସ୍ୱାମୀର ଆଦର୍ଶ ଓ ଆକାଂକ୍ଷାକୁ ପୂରଣ କରିବ । କିନ୍ତୁ ସବୁ ସ୍ଥଳରେ ସ୍ୱାମୀମାନେ ଆଦର୍ଶ ସ୍ଥାନୀୟ ହୋଇ ନଥାନ୍ତି । ପ୍ରାଚୀନ କାଳର ବାଲ୍ୟ ବିବାହ ପ୍ରଥା ନାରୀମାନଙ୍କର ଶିକ୍ଷାର ବାଧକ ହେବା ସହିତ

ଝିଅମାନଙ୍କୁ ପରିଣତ ବୟସରେ ପହଞ୍ଚିବା ପୂର୍ବରୁ ବାର୍ଦ୍ଧକ୍ୟାବସ୍ଥାରେ ପହଞ୍ଚାଇଛି ।

ସାରଦାଦେବୀଙ୍କ ଜୀବନରେ ଏକ ଆଦର୍ଶ ବିବାହିତ ଜୀବନ ଦେଖିବାକୁ ମିଳିଛି । ଯେଉଁଠି ଶାରିରୀକ ସଂପର୍କର କୌଣସି ଚିହ୍ନବର୍ଣ୍ଣ ନାହିଁ ଏବଂ ସ୍ୱାମୀ ଆଧାତ୍ମିକ ଗୁରୁ ଭାବରେ ତାଙ୍କ ଜୀବନର ସମସ୍ତ ସାଧନା ଓ ସିଦ୍ଧିକୁ ସ୍ତ୍ରୀଙ୍କୁ ଅର୍ପଣ କରିଛନ୍ତି । ସ୍ତ୍ରୀ ଜୀବନ ବ୍ୟାପୀ ତାଙ୍କର ଶିଷ୍ୟା ହୋଇଛନ୍ତି ଓ ସ୍ୱାମୀଙ୍କର ସଯତ୍ନ ସେବା କରିବା ସହିତ ତାଙ୍କର ବାଣୀ ଓ ଉପଦେଶକୁ ଗ୍ରହଣ କରି ତାଙ୍କ ଅନ୍ତେ ତାଙ୍କର କାର୍ଯ୍ୟକୁ ଆଗକୁ ନେବାର ପ୍ରଯତ୍ନ କରିଛନ୍ତି ।

ଶ୍ରୀରାମକୃଷ୍ଣ ୧୮୩୬ ମସିହାରେ କାମାରପୁକୁରର କ୍ଷୁଦିରାମ ଚଟ୍ଟୋପାଧ୍ୟାୟଙ୍କର ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ । ପିଲାଦିନରୁ ସେ ଅତିମାତ୍ରାରେ ଭକ୍ତିପରାୟଣ ଓ ଆଧାତ୍ମିକ ରହସ୍ୟ ପ୍ରତି ଆଗ୍ରହ ରଖି ଭାବ ସମାଧିରେ ନିମଗ୍ନ ରହୁଥିଲେ । ଦକ୍ଷିଣେଶ୍ୱର କାଳୀ ମନ୍ଦିରର ପୂଜକ ଭାବରେ ଯୋଗଦାନ ତାଙ୍କର ଭକ୍ତିଭାବନାକୁ ଅଧିକ ଦୃଢ଼ୀଭୂତ କରିଥିଲା ଏବଂ ସେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ଅନୁଭୂତି କରିବା ପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ତାଙ୍କର ସାଂସାରିକ ଜୀବନ ପ୍ରତି ସଂପୂର୍ଣ୍ଣ ଆଗ୍ରହ ଚାଲି ଯାଇଥିଲା ଏବଂ ସବୁ ସମୟ ଭାବମଗ୍ନ ରହିବା ସହିତ ସମସ୍ତ ଆଧାତ୍ମିକ ସାଧନାରେ ନିମଗ୍ନ ରହୁଥିଲେ । ଏପରି ସମୟ ଆସିଲା ଯେତେବେଳେ ସେ ମନ୍ଦିରରେ ପୂଜା କାର୍ଯ୍ୟ ମଧ୍ୟ କରି ପାରିଲେ ନାହିଁ । ସାଧନାରେ ବ୍ରତୀ ରହିବା ପାଇଁ ତାଙ୍କୁ ସାମୟିକ ଭାବେ ପୂଜା କାର୍ଯ୍ୟରୁ ମଧ ଅବ୍ୟାହତି ଦିଆଗଲା । ସେ ତାଙ୍କର ସମସ୍ତ ସମୟ ନିରବଚ୍ଛିନ୍ନ ଭାବରେ ପ୍ରାର୍ଥନା ଓ ଧ୍ୟାନରେ କଟାଇବାକୁ ଲାଗିଲେ । ଭୁଲି ଗଲେ ଖାଇବା ଓ ଶୋଇବା । ଦିନ ଓ ରାତିଗୁଡ଼ିକ କିପରି ବିତିବାକୁ ଲାଗିଲା, ତାହା ସେ ଜାଣିପାରିଲେ ନାହିଁ ।

ଶ୍ରୀ ରାମକୃଷ୍ଣ ପାଗଳ ହୋଇଗଲେ ବୋଲି ବହୁଲୋକଙ୍କର ଧାରଣା ହେଲା । ଈଶ୍ୱରଙ୍କୁ ପାଇବା ର ଅର୍ଥ କ'ଣ ? ଏହାତ ସାଧାରଣ ଲୋକଙ୍କର ଧାରଣାର ବହୁ ଦୂରରେ । ଏକଥା କାନରୁ କାନ ହୋଇ ପହଞ୍ଚିଗଲା କାମାରପୁକୁର ଠାରେ ଥିବା ତାଙ୍କ ମା ଚନ୍ଦ୍ରଦେବୀ ଓ ଭାଇ ରାମେଶ୍ୱରଙ୍କ ନିକଟରେ । ୧୮୫୮ ମସିହାରେ ଶ୍ରୀରାମକୃଷ୍ଣଙ୍କୁ କାମାରପୁକୁର ଅଣାଗଲା । ତାଙ୍କର ବ୍ୟବହାରରେ ହତଚକିତ ହୋଇ ପଡ଼ିଲେ ଚନ୍ଦ୍ରାଦେବୀ । ସବୁବେଳେ 'ମା' ମା' ଡାକି ଶ୍ରୀରାମକୃଷ୍ଣ କୌଣସି ଅଜଣା ସତ୍ତାକୁ ଜାଣିବା ପାଇଁ ବ୍ୟଗ୍ର ହେଉଥିଲେ । ପଡୋଶୀମାନେ ଭାବିଲେ ବୋଧହୁଏ ତାଙ୍କ ଦେହରେ କୌଣସି ଭୂତପ୍ରେତ ବାସ କରିଛି । ଦେଶୀ ଚିକିତ୍ସାରେ ଅନେକ ପ୍ରକାର ଝଡ଼ାଫୁଙ୍କା କରାଗଲା କିନ୍ତୁ କୌଣସି ଫଳ ହେଲାନାହିଁ । ଶାରିରୀକ ଓ ମାନସିକ

ଭାବେ ସେ ଥିଲେ ସମ୍ପୂର୍ଣ୍ଣ ସୁସ୍ଥ । ତାଙ୍କର ବ୍ୟବହାର କ୍ରମଶଃ ଗତାନୁଗତିକ ହୋଇଥିଲେ ମଧ୍ୟ ସେ ସାଧନାରେ ନିମଗ୍ନ ରହୁଥିଲେ । ମଶାଣିରେ ଯାଇ ଧ୍ୟାନ କରୁଥିଲେ । ପିଲାଦିନରୁ ତାଙ୍କର ଏ ପ୍ରକାର ବ୍ୟବହାର ପ୍ରତି ସଚେତନ ଥିବା ତାଙ୍କର ମା' ଓ ଭାଇ ଏହା ଉପରେ ଅଧିକ ଗୁରୁତ୍ୱ ଆରୋପ କଲେ ନାହିଁ, ବରଂ ସେମାନେ ଆଶ୍ୱସ୍ତ ହେଲେ । ତାଙ୍କୁ ଏ ବାଟରୁ ଫେରାଇ ପାରିଲେ ଭଲ ହେବ ଭାବି ତାଙ୍କୁ ବିଭା ଦେଇ ସଂସାର ବନ୍ଧନରେ ବାନ୍ଧିଦେବାକୁ ସ୍ଥିର କରାଗଲା ।

ଶ୍ରୀରାମକୃଷ୍ଣଙ୍କର ମା' ଓ ଭାଇ କନ୍ୟା ଖୋଜିବାରେ ଲାଗି ପଡ଼ିଲେ । କିନ୍ତୁ ଏହା ଏଡ଼େ ସହଜ କାର୍ଯ୍ୟ ନଥିଲା । ତାଙ୍କର ପରିବାର ଗରିବ ଥିବା ହେତୁ ରାମେଶ୍ୱରଙ୍କ ଦ୍ୱାରା ପାତ୍ରୀ ପାଇଁ କନ୍ୟାସୁନା ଦେବା ଅସମ୍ଭବ ବ୍ୟାପାର ଥିଲା । ଶ୍ରୀରାମକୃଷ୍ଣଙ୍କ ଅଜାଣତରେ ସେମାନଙ୍କର ପାତ୍ରୀ ଅନୁସନ୍ଧାନ କାର୍ଯ୍ୟ ଚାଲିଥିଲା । ସେ ଜାଣିଲେ କାଳେ ଏ ପ୍ରସ୍ତାବକୁ ଗ୍ରହଣ କରିବେ ନାହିଁ, ତାହା ଥିଲା ସେମାନଙ୍କର ଚିନ୍ତା । କିନ୍ତୁ ଏହାର ଠିକ୍ ଓଲଟା ଘଟିଲା । ବିବାହ ସଂପର୍କରେ ଶୁଣି ସେ କେବଳ ସମ୍ମତି ଦେଲେ ନାହିଁ ବରଂ ମା' ଓ ଭାଇଙ୍କର କନ୍ୟା ଖୋଜିବାର ଚେଷ୍ଟା ବିଫଳ ହେଉଥିବାକୁ ଲକ୍ଷ୍ୟ କରି ଦିନେ ଭାବାବେଶ ଅବସ୍ଥାରେ କହିଲେ, ''ଏଠି ସେଠି କାହିଁକି ଖୋଜୁଛ ? ଜୟରାମବାଟୀକୁ ଯାଅ । ସେଠାରେ ରାମଚନ୍ଦ୍ର ମୁଖାର୍ଜୀଙ୍କର ଘରେ ତୁମେ ତାଙ୍କୁ ପାଇବ, ଯେକି ମୋ ପାଇଁ କୁଟାବନ୍ଧା (ବିଧି ନିର୍ଦ୍ଦିଷ୍ଟ) ହୋଇ ରହିଛନ୍ତି ।''

ତାଙ୍କ ବିବାହକୁ ନେଇ ଆଉ ଏକ ଘଟଣା କଥିତ ଅଛି । ଥରେ ଶ୍ରୀମା' ୨ବର୍ଷ ବୟସ ବେଳେ ତାଙ୍କ ମା' ଶ୍ୟାମାସୁନ୍ଦରୀ ଦେବୀଙ୍କ ସହିତ ସିଓଡ଼୍ ଗ୍ରାମକୁ ଏକ ମନ୍ଦିର ଉତ୍ସବକୁ ଯାଇଥିଲେ । ସେଠାରେ ଶ୍ରୀ ରାମକୃଷ୍ଣ ଉପସ୍ଥିତ ଥିଲେ । ସାମାଜିକ ଉତ୍ସବ ମାନଙ୍କରେ ଗାଁର ସ୍ତ୍ରୀଲୋକମାନେ ଛୋଟ ଛୋଟ ଝିଅମାନଙ୍କ ସହିତ ହସ କୌତୁକ କରନ୍ତି, ଏବଂ ଥଟ୍ଟାରେ ପଚାରନ୍ତି, ''ଏଠାରେ ବସିଥିବା କେଉଁ ପୁଅକୁ ବାହାହେବୁ ।'' ସେହିଦିନ ମଧ୍ୟ ପିଲା ସାରଦାଙ୍କୁ କୌତୁକରେ ପଚାରିବାରୁ, ସେ ଶ୍ରୀ ରାମକୃଷ୍ଣଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇଥିଲେ ।

ଶ୍ରୀରାମକୃଷ୍ଣଙ୍କ ଠାରୁ ତାଙ୍କ କନ୍ୟା ଜୟରାମ ବାଟୀରେ ଅଛି ଶୁଣି, ସେମାନେ ରାମଚନ୍ଦ୍ର ମୁଖାର୍ଜୀଙ୍କ ଘରେ ଅନୁସନ୍ଧାନ କଲେ । ଶ୍ରୀ ରାମକୃଷ୍ଣଙ୍କୁ ସେତେବେଳକୁ ତେଇଶି ବର୍ଷ ବୟସ ଏବଂ ସାରଦା ମାତ୍ର ପାଞ୍ଚବର୍ଷ । ପ୍ରଥମେ ପ୍ରଥମେ ରାମଚନ୍ଦ୍ର ମୁଖାର୍ଜୀ ଅମଙ୍ଗ ହେଉଥିଲେ ମଧ୍ୟ ହୁଏତ ଏହାଠାରୁ ଭଲ ପାତ୍ର ମିଳି ନ ପାରେ ଭାବି ସେମାନେ ରାଜି ହେଲେ ।

ଶ୍ରୀରାମକୃଷ୍ଣଙ୍କ ବିବାହ ୧୮୫୯ ମସିହା ମେ ମାସରେ ଅନୁଷ୍ଠିତ ହେଲା । ତାଙ୍କ ବିବାହ ସଂପର୍କରେ ଶ୍ରୀ ମା' କହିଛନ୍ତି, 'ମୁଁ ଯେତେବେଳେ ବାହା ହେଲି ସେତେବେଳେ ଖଜୁରି କୋଳି ପାଚୁଥାଏ । ମୋର କେଉଁ ମାସ ମନେ ନାହିଁ । ବିବାହର ଦଶଦିନ ମଧ୍ୟରେ, ମୁଁ ଯେତେବେଳେ କାମାର ପୁକୁର ଗଲି ପାଚିଲା ଖଜୁରି କୋଳି ତୋଳିଥିଲି । ଧର୍ମ ଦାସ ଲାହା (ପଡ଼ୋଶୀ ଏବଂ କାମାରପୁକୁରର ଜମିଦାର) ଆସିଥିଲେ ଏବଂ ମୋତେ ଦେଖି ପଚାରିଲେ, 'ଏହି ଝିଅଟି ନୂଆ ବାହା ହୋଇଥିବା ଝିଅତ ?'' ମୁଁ ଏତେ ଛୋଟ ହୋଇଥିଲି ଯେ ସୁରଜୁର ବାପା କାମାରପୁକୁରକୁ ମୋ ହାତ ଧରି ନେଇ ଯାଇଥିଲେ ।''

ରାମେଶ୍ୱର ଏହି ବାହାଘର ପାଇଁ ତିନିଶହ ଟଙ୍କା କନ୍ୟା ସୁନା ଦେଇଥିଲେ । ବିବାହ ଅତି ସାଧାରଣ ଥିଲା । ଚନ୍ଦ୍ରାଦେବୀ ତାଙ୍କ ପଡ଼ୋଶୀ ଲାହା ପରିବାର ଠାରୁ ବାହାବେଳେ ବୋହୂ ପାଇଁ କିଛି ଗହଣା ମାଗି ଆଣିଥିଲେ । ସେହି ଗହଣାଗୁଡ଼ିକ ଫେରାଇ ଦେବାକୁ ଥିଲା । ଚନ୍ଦ୍ରାଦେବୀ କେମିତି ମାଗିଥାନ୍ତେ ଏଇ ସାନବୋହୂଟିକୁ । ଶ୍ରୀରାମକୃଷ୍ଣ ମା'ଙ୍କର ଅସୁବିଧା କଥା ବୁଝି ପାରିଲେ । ସାରଦା ଶୋଇଥିବା ବେଳେ ଶ୍ରୀ ରାମକୃଷ୍ଣ ସବୁ ଗହଣାଗୁଡ଼ିକ ଅତି ସାବଧାନର ସହିତ କାଢ଼ି ଲାହା ପରିବାରକୁ ପଠାଇ ଦେଲେ । ସାରଦା ନିଦରୁ ଉଠିବାପରେ ଦେହରେ ଥିବା ଗହଣା ନ ଦେଖି କାନ୍ଦି କାନ୍ଦି ତାଙ୍କର ଗହଣା କୁଆଡ଼େ ଗଲା ବୋଲି ପଚାରିଲେ । ଚନ୍ଦ୍ରଦେବୀ କ'ଣ ବା କହନ୍ତେ ! ସେ ସାରଦାଙ୍କୁ ନିଜ ପଣତ କାନି ଆଡୁଆଳରେ କୁଣ୍ଢାଇ ପକାଇଲେ ଓ କହିଲେ, 'ଗଦାଇ ତୋତେ ଭଲ ଗହଣା ଗଢ଼ିଦେବ ।' ଏକଥା ସାରଦାଙ୍କର ଜନୈକ କକାଙ୍କର ଦୃଷ୍ଟିକୁ ଆସିବାରୁ ସେ ସେହିଦିନ ସାରଦାଙ୍କୁ ନେଇ ଜୟରାମବାଟୀ ଚାଲିଗଲେ । ଏ କଥାକୁ ହସି ହସି ଉଡାଇ ଦେଇଥିଲେ ଶ୍ରୀରାମକୃଷ୍ଣ ଏବଂ କହିଥିଲେ, ''ବିବାହ ତ ହୋଇ ସାରିଛି । ଏବେ କ'ଣ କରିବେ ?''

ଶ୍ରୀରାମକୃଷ୍ଣଙ୍କୁ ବିବାହ ପରେ ସେ କାମାରପୁକୁରରେ ପ୍ରାୟ ୧ ବର୍ଷ ୭ ମାସ ଥିଲେ । ଏହି ସମୟରେ ସାରଦା ଦେବୀଙ୍କୁ ୭ ବର୍ଷ ହେଲା ଏବଂ ପରଂପରା ଅନୁଯାୟୀ ଶ୍ରୀରାମକୃଷ୍ଣଙ୍କୁ ଯାଇ ଶ୍ୱଶୁରଘରେ କଟାଇବାକୁ ହୋଇଥିଲା । ଠାକୁରଙ୍କର ଶ୍ୱଶୁର ଘର ଯିବା ସଂପର୍କରେ ଶ୍ରୀମା' କହନ୍ତି, "ମୋତେ ଯେତେବେଳେ ସାତବର୍ଷ ସେତେବେଳେ ଠାକୁର ଜୟରାମବାଟୀ ଆସିଥିଲେ । ସେତେବେଳର ପ୍ରଥା ଥିଲା, ଶ୍ୱଶୁର ଘରକୁ ସସ୍ତ୍ରୀକ ଫେରିଯିବାକୁ ହୁଏ । ସେତେବେଳେ ସେ ମୋତେ କହିଲେ, 'ଯଦି ତୁମକୁ କେହି କେତେ ବର୍ଷରେ ବାହା ହୋଇଛ ବୋଲି ପଚାରେ, ତେବେ ପାଞ୍ଚବର୍ଷ କହିବ, ସାତବର୍ଷ କହିବ ନାହିଁ ।' ସେ ଏହା କହିବାର କାରଣ ହେଲା ଯେ, ପାଞ୍ଚବର୍ଷ

ବୟସରେ ବାହାଘର ହେତୁ ସେ ହୁଏତ ଏହାକୁ ଠିକ୍ ଭାବରେ ମନେ ରଖି ପାରିବେ ନାହିଁ ଏବଂ ଦ୍ୱିତୀୟ ଉତ୍ସବକୁ ବିବାହ ବୋଲି ଭାବିବେ ।"

ଶ୍ରୀରାମକୃଷ୍ଣଙ୍କର ଜୟରାମବାଟୀ ଯିବାର ଘଟଣା ତାଙ୍କର ଝାପ୍‌ସା ମନେ ପଡ଼େ । ସେ କିପରି ନିଜ ଇଚ୍ଛାରେ ତାଙ୍କର ପାଦ ସ୍ପର୍ଶ କରି ପ୍ରଣାମ କରି ଥିଲେ ଏବଂ ତାଙ୍କୁ  ପଙ୍ଖା କରିଥିଲେ ଏବଂ ତାହା ଦେଖି ଅନ୍ୟମାନେ ହସିଥିଲେ, ତାହା ସେ କହିଥାନ୍ତି ।

ଶ୍ରୀରାମକୃଷ୍ଣ ଫେରିଗଲେ ନିଜର ସାଧନାର କ୍ଷେତ୍ର କଲିକତାକୁ ଏବଂ ସାରଦା ଦେବୀ ତାଙ୍କର ବାପଘର ଜୟରାମବାଟୀକୁ ।



# ଶ୍ରୀରାମକୃଷ୍ଣଙ୍କ ସେବାରେ

ସମୟ ଗଡ଼ି ଚାଲିଲା । ବିତିଗଲା ମାସ ପରେ ମାସ । ବର୍ଷପରେ ବର୍ଷ । ଶ୍ରୀରାମକୃଷ୍ଣ ଈଶ୍ୱର ଚେତନାରେ ନିମଜ୍ଜିତ ହୋଇ ବୋଧହୁଏ ଭୁଲିଗଲେ ପାଞ୍ଚବର୍ଷର ଝିଅ ସାରଦାଙ୍କୁ ବିବାହ କରିଛନ୍ତି ବୋଲି । ଯେ ନିଜ ଦେହ ସଂପର୍କରେ ସଚେତନ ନ ଥିଲେ, ସେ କିପରି ବା ମନେ ରଖନ୍ତେ ଏହି ସାଂସାରିକ ସଂପର୍କ ।

ସେତେବେଳେ ସାରଦାଙ୍କୁ ୧୮ ବର୍ଷ । ସୁନ୍ଦରୀ, ଅପରୂପ ଯୌବନା । ଶରୀର ଓ ମନରେ ସଂପୂର୍ଣ୍ଣ ପରିପକ୍ୱ । ଅବଶ୍ୟ ତାଙ୍କୁ ୧୩ବର୍ଷ ବେଳେ ସେ କାମାରପୁକୁର ଠାରେ ରାମକୃଷ୍ଣଙ୍କ ସହିତ ଦେଢ଼ମାସ ଓ ୧୪ ବର୍ଷ ବେଳେ ପ୍ରାୟ ୭ ମାସ କଟାଇ ଥାନ୍ତି । ଏହି ସମୟରେ ସେ ଈଶ୍ୱର ଓ ଭକ୍ତିପୂତ ଜୀବନ ବିତାଇବା ସଂପର୍କରେ ତାଙ୍କଠାରୁ ପାଇଥାନ୍ତି ନିର୍ଦ୍ଦେଶ । ସାଧାରଣତଃ ହିନ୍ଦୁ ସ୍ତ୍ରୀ ସ୍ୱାମୀଙ୍କୁ ଦେବତା ଜ୍ଞାନ କରି ସମ୍ମାନ ଓ ପୂଜା କରିଥାନ୍ତି । ଶ୍ରୀରାମକୃଷ୍ଣଙ୍କର ଅତ୍ୟନ୍ତ ନମ୍ର, ଶାନ୍ତ ଓ ଦୟାର୍ଦ୍ର ଭାବ ସାରଦାଙ୍କ ହୃଦୟରେ ଅପୂର୍ବ ଅନୁଭବ ଦେଇଥାଏ । ସେ ତାଙ୍କର ଏହି ଅନୁଭବକୁ ଉଲ୍ଲେଖ କରି କହିଛନ୍ତି, 'ମୋ ହୃଦୟରେ ଯେପରି ପରମ ଆନନ୍ଦର ମାଠିଆ ଥୁଆ ହୋଇଛି । ପ୍ରାୟ ସବୁବେଳେ ମୁଁ ଏହିପରି ଅନୁଭବ କରୁଥାଏ । ଏହି ଅନୁଭବ ସଂପର୍କରେ ଅନ୍ୟକୁ ଧାରଣା ଦେବା ମଧ୍ୟ ଅସମ୍ଭବ ।' କାମାରପୁକୁରରେ ଥିବା ବେଳେ ଶ୍ରୀ ରାମକୃଷ୍ଣଙ୍କର ହସକୌତୁକ ବ୍ୟବହାରର ଉଦାହରଣ ଦେଇ ଶ୍ରୀମା' ସାରଦା କହିଛନ୍ତି, "ଥରେ ଠାକୁର ପେଟ ଗଣ୍ଡଗୋଳ ଥାଇ କାମାରପୁକୁର ଆସିଥାନ୍ତି । ମୁଁ ତ ସେତେବେଳେ ବହୁତ ଛୋଟ । ଅତି ବଡ଼ି ଭୋରୁ ସେ ବିଛଣାରୁ ଉଠି ପଡ଼ନ୍ତି ଏବଂ ତାଙ୍କର ମଧ୍ୟାହ୍ନ ଖାଇବା ପାଇଁ ମୋତେ କ'ଣ ରାନ୍ଧିବାକୁ ହେବ, କୁହନ୍ତି । ଦିନେ ମୁଁ ଦେଖିଲି ଯେ ସେ ଚାହୁଁଥିବା ପରିବାକୁ ନିର୍ଦ୍ଦିଷ୍ଟ ମସଲା ଦେଇ ରାନ୍ଧିବାକୁ ମସଲା ନାହିଁ । ମୋର ବଡ଼ଯା(ଶ୍ରୀରାମକୃଷ୍ଣଙ୍କର ବଡ଼ଭାଇଙ୍କ ସ୍ତ୍ରୀ) ମୋତେ ସେହି ମସଲା ଛାଡ଼ି ରାନ୍ଧିବାକୁ କହିଲେ । ଠାକୁର ଏ କଥା ଶୁଣି କହିଲେ, 'ଏହା କିପରି ହେବ ? ଯଦି ତୁମ ପାଖରେ ସେହି ମସଲା ନାହିଁ, ତେବେ ବଜାରରୁ ତାକୁ ଆଣ । ତରକାରି ରାନ୍ଧିବାକୁ ହେଲେ ସେହି ମସଲାକୁ ଛାଡ଼ି ରାନ୍ଧି ହେବ ନାହିଁ । ମୁଁ

ଦକ୍ଷିଣେଶ୍ୱର ମନ୍ଦିରରେ ସ୍ୱାଦିଷ୍ଟ ବ୍ୟଞ୍ଜନ ତ୍ୟାଗ କରି ଏଠାକୁ ଆସିଲି ଏବଂ ତୁମେ ସେଥିରୁ ମୋତେ ବଂଚିତ କରିବାକୁ ଚାହୁଁଛ । ତାହା ହେବ ନାହିଁ ।' ମୋର ବଡ଼ ଯାଆ ଏହା ଶୁଣି ଲଜ୍ଜିତ ହେଲେ ଏବଂ ମସଲା ଆଣିବାକୁ ପଠାଇଲେ ।"

"ବ୍ରାହ୍ମଣୀ (ଯୋଗେଶ୍ୱରୀ, ଯେ କି ଶ୍ରୀରାମକୃଷ୍ଣଙ୍କୁ ତନ୍ତ୍ର ଶିକ୍ଷାଦେଇଥିଲେ) ସେତେବେଳେ ଆମ୍ଭମାନଙ୍କ ସହିତ ଥିଲେ । ଠାକୁର ତାଙ୍କୁ ମା' ବୋଲି ଡାକନ୍ତି । ତେଣୁ ମୁଁ ତାଙ୍କୁ ଶାଶୁ ପରି ମାନ୍ୟ କରେ । ମୁଁ ତାଙ୍କୁ ଅବଶ୍ୟ ଭୟ କରେ । ସେ ନାଲି ଲଙ୍କା ଭଲ ପାନ୍ତି । ସେ ନିଜ ଖାଦ୍ୟ ନିଜେ ରାନ୍ଧନ୍ତି- ଏକବାର ରାଗ ରାଗ । ଥରେ ଥରେ ତାଙ୍କ ରନ୍ଧା ମୋତେ ଦିଅନ୍ତି । ମୁଁ ଚୁପ୍ ଚାପ୍ ତାକୁ ଖାଇଦିଏ । ଆଖିରୁ ଲୁହକୁ ପୋଛି ପକାଏ । କେମିତି ଲାଗିଲା ବୋଲି ସେ ମୋତେ ପଚାରିଲେ ମୁଁ ଡରି କରି କହେ, ଭାରି ବଢ଼ିଆ ।' ମୋର ବଡ଼ ଯା' କିନ୍ତୁ କହିବେ 'ଭାରି ରାଗ !' ମୁଁ ଲକ୍ଷ୍ୟ କରିଛି, ଏହା ଶୁଣି ବ୍ରାହ୍ମଣୀ ଭାରି ରାଗି ଯାନ୍ତି । ସେ କହନ୍ତି, 'ତୁମେ ସେପରି କାହିଁକି କହୁଛ ? ମୋ ଝିଅ ତ ଏହି ଖାଦ୍ୟକୁ ପସନ୍ଦ କରୁଛନ୍ତି । ତୁମେ କେଉଁଥିରେ ସନ୍ତୁଷ୍ଟ ନୁହଁ । ମୁଁ ତୁମକୁ ଆଉ ମୋ ତରକାରି ଦେବିନାହିଁ ।"

ଏହି ଘଟଣା କହି ଶ୍ରୀମା' ସାରଦା ହସି ପକାନ୍ତି ।

କାମାରପୁକୁର ଯିବାର ସେହି ଦିନ ପରଠାରୁ ବହୁଦିନ ବିତିଗଲାଣି । ସାରଦାଙ୍କର ତାଙ୍କର ଦିବ୍ୟଚେତନାରେ ମଗ୍ନ ସ୍ୱାମୀଙ୍କ ସହିତ କୌଣସି ସଂପର୍କ ସ୍ଥାପିତ ହୋଇନାହିଁ । ସାରଦା ମନେ ମନେ ଭାବୁଛନ୍ତି, "ସତରେ ଏତେ ସ୍ନେହ, କରୁଣା ଓ ଦୟାର୍ଦ୍ର ଚିତ୍ତର ମଣିଷ କ'ଣ ତାଙ୍କୁ ଭୁଲି ଗଲେ ? ପ୍ରଥମ ସାକ୍ଷାତ୍ ବେଳେ କେତେ ଆପଣାପଣ, କେତେ ସହୃଦୟତା । ସେହି ଆନନ୍ଦମୟ ଦିନଗୁଡ଼ିକ ଆସିବା ପାଇଁ ତାଙ୍କୁ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ହେବ ।"

ଜୟରାମବାଟୀରେ ଅପେକ୍ଷାରେ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟି ନଥିଲା । କିନ୍ତୁ ଲୋକେ କୁହାକୁହି ହେଲେ ତାଙ୍କ ସ୍ୱାମୀ ପାଗଳ ହୋଇ ଯାଇଛନ୍ତି । ସେ ଲଙ୍ଗଳା ହୋଇ ହରିନାମ ନେଇ ବୁଲୁଛନ୍ତି । ପ୍ରଥମେ ପ୍ରଥମେ ସେ ଏହି ଗୁଜବକୁ କାନ ଦେଉ ନ ଥିଲେ, କିନ୍ତୁ ମନରେ ଅନେକ ପ୍ରଶ୍ନ । ଯଦି ସତରେ ଏହି ଗୁଜବ ସତ୍ୟ ହୋଇଥାଏ, ତେବେ ତାଙ୍କର କର୍ତ୍ତବ୍ୟ କ'ଣ ? ଏପରି ଶାନ୍ତ, ପବିତ୍ର, ସାଧୁ ହୃଦୟଙ୍କର କ'ଣ ଏମିତି ପରିବର୍ତ୍ତନ ଘଟିଛି ? ସେ ଯାଇ ତାଙ୍କ ପାଖରେ ରହି ତାଙ୍କର ସେବା କରିବା, ତାଙ୍କ ଦୁଃଖ ସୁଖରେ ଭାଗି ହେବା କ'ଣ ତାଙ୍କର କର୍ତ୍ତବ୍ୟ ନୁହେଁ ?

ଦିନ ପରେ ଦିନ ଏପରି ଭାବନା ଓ ବିଚାରରେ କଟିଯିବାକୁ ଲାଗିଲା । ସେ ସ୍ଥିର କଲେ ନିଜେ ଦକ୍ଷିଣେଶ୍ୱର ଯିବେ, ନିଜ ଆଖିରେ ଦେଖିବେ । ନିଜେ ସ୍ଥିର

କରିବେ କ'ଣ ତାଙ୍କର କର୍ତ୍ତବ୍ୟ ।

ତାଙ୍କ ମନୋଭାବକୁ ଜାଣିଲେ ତାଙ୍କ ପିତା ରାମଚନ୍ଦ୍ର । ଦିନ ସ୍ଥିର ହେଲା । ୧୮୭୨ ମାର୍ଚ୍ଚ ମାସ ୨୫ ତାରିଖ ଦୋଳ ପୂର୍ଣ୍ଣିମା ଦିନ ଯାତ୍ରା ଆରମ୍ଭ ହେଲା । କେହି କେହି କହନ୍ତି ଚୈତ୍ର ସଂକ୍ରାନ୍ତି ଅର୍ଥାତ୍ ମାସକ ପରେ ସେ ଯାତ୍ରା କରିଥିଲେ । ୯୬କି:ମି: ମାଇଲ ଖାଲି ପାଦରେ ଯିବାକୁ ଥିଲା କାରଣ ସବାରୀରେ ଏତେଟା ବାଟ ଯିବାକୁ ତାଙ୍କ ପାଖରେ ସମ୍ବଳର ଅଭାବ । ସେତେବେଳେ ତ ଗାଡ଼ି, ମଟର, ରେଳ ବା ଷ୍ଟିମର ନାହିଁ ।

ପ୍ରଥମ ଦୁଇଦିନ ବେଶ୍ ଆନନ୍ଦରେ ବିତିଗଲା । ପ୍ରକୃତି କୋଳରେ ହସୁଥିବା ଶସ୍ୟ କ୍ଷେତ୍ର, ପୋଖରୀ ମାନଙ୍କରେ ଫୁଟିଥିବା କଇଁଫୁଲ ଇତ୍ୟାଦି ଦେଖି ଦେଖି ସିନା ଚାଲୁଥିଲେ, କିନ୍ତୁ ଅନଭ୍ୟସ୍ତ ସାରଦା ତୃତୀୟ ଦିନକୁ ଆଉ ଚାଲି ପାରିଲେ ନାହିଁ । ଦେହରେ ପ୍ରଚଣ୍ଡ ତାତି । ରାମଚନ୍ଦ୍ର ଯାତ୍ରା ସ୍ଥଗିତ କରି ରାସ୍ତାକଡ଼ରେ ଥିବା ପାନ୍ଥଶାଳାରେ ଆଶ୍ରୟ ନେଲେ ।

ଶ୍ରୀମା' ସାରଦା ଯଦିଓ ଯାତ୍ରାର ଏହି ବ୍ୟତିକ୍ରମ ଓ ଦେହ ଖରାପ ଯୋଗୁଁ ବ୍ୟତିବ୍ୟସ୍ତ ହୋଇପଡ଼ିଲେ, ସେହି ରାତ୍ରିରେ ତାଙ୍କୁ ଏକ ଅଦ୍ଭୁତ ଦୃଶ୍ୟ ଦେଖାଗଲା । ଏ ବିଷୟରେ ସେ ତାଙ୍କର ଶିଷ୍ୟମାନଙ୍କୁ କହିଥିଲେ, "ମୁଁ ପୂରାପୂରି ଚେତାଶୂନ୍ୟ ହୋଇ ଶୋଇ ପଡ଼ିଥିଲି । ଠିକ୍ ସେହି ସମୟରେ ସ୍ତ୍ରୀ ଲୋକଟିଏ ଦେଖିଲି, ପୂରା ତ୍ରିପଣ୍ଡ କଳା । ମୋ କଡ଼ରେ ଆସି ବସିଲେ । ଯଦିଓ ସେ ପୂରାପୂରି କଳା, କିନ୍ତୁ ତାଙ୍କ ପରି ସୁନ୍ଦର ମୁଁ ଆଉ କାହାକୁ ଦେଖିନାହିଁ । ସେ ମୋର ବିନ୍ଧୁଥିବା ମୁଣ୍ଡକୁ ତାଙ୍କର ନରମ ହାତରେ ଆଉଁଷି ଦେଲେ ଏବଂ ମୁଁ ଅନୁଭବ କଲି ମୋ ଦେହରୁ ତାତି ଓହ୍ଲାଇ ଯାଉଛି । 'ତୁମେ କେଉଁଠୁ ଆସିଛ ?' ମୁଁ ତାଙ୍କୁ ପଚାରିଲି । ସେ ଉତ୍ତର ଦେଲେ, 'ଦକ୍ଷିଣେଶ୍ୱରରୁ ।' ଏହା ଶୁଣି ମୁଁ ଅତି ଆଶ୍ଚର୍ଯ୍ୟ ଓ ବାକ୍‌ଶୂନ୍ୟ ହୋଇ କହିଲି, 'ଦକ୍ଷିଣେଶ୍ୱର ଠାରୁ ! ମୁଁ ମଧ୍ୟ ମୋର ସ୍ୱାମୀଙ୍କୁ ଦେଖିବା ପାଇଁ ଦକ୍ଷିଣେଶ୍ୱର ଯାଉଛି । କିନ୍ତୁ ଏହି ଜ୍ୱର ମୋତେ ଅଧଥାରେ ବାଟରେ ଅଟକାଇ ଦେଇଛି ।' ଏହା ଶୁଣି ସେ ଉତ୍ତର ଦେଲେ, 'ଆଦୌ ବ୍ୟସ୍ତ ହୁଅନା । ତୁମେ ଠିକ୍ ହୋଇଯିବ ଏବଂ ତୁମର ସ୍ୱାମୀଙ୍କୁ ଯାଇ ଦକ୍ଷିଣେଶ୍ୱରରେ ଦେଖା କରିବ । ମୁଁ ତୁମ ପାଇଁ ତାଙ୍କୁ ସେଠାରେ ରଖିଛି । 'ସତରେ ! ଏହା ସତ ? କିନ୍ତୁ ତୁମେ କିଏ ?'

'ମୁଁ ତୁମର ଭଉଣୀ', ସେ ଉତ୍ତର ଦେଲେ । ଏହି କଥୋପକଥନ ପରେ ମୁଁ ଶୋଇ ପଡ଼ିଲି ।" ଶ୍ରୀ ସାରଦା ଦେବୀଙ୍କ ଜୀବନରେ ଏହି ଘଟଣା ପ୍ରଥମ ରହସ୍ୟାତ୍ମକ ଅନୁଭବ (Mystical phenomenon) ଭାବେ ଦେଖିବାକୁ ମିଳେ ।

କିନ୍ତୁ ତାଙ୍କ ଜୀବନରେ ଆହୁରି ଅନେକ ଗୁଡ଼ିଏ ଅଲୌକିକ ଘଟଣା ଘଟିଥିବାର ମଧ୍ୟ କୁହାଯାଇଛି ।

ତାଙ୍କର ଜନ୍ମ ସମୟର ଘଟଣା । ତାଙ୍କର ମା' ଶ୍ୟାମାସୁନ୍ଦରୀ ଦେବୀ କୌଣସି ଧାର୍ମିକ ଉତ୍ସବରେ ଯୋଗ ଦେବା ପାଇଁ ସିଓଡ ଯାଇଥିଲେ । ମନ୍ଦିର ନିକଟରେ ଥିବା ଗଛତଳେ ବସିଥିବା ବେଳେ, ସେ ଅନୁଭବ କଲେ ଯେ ତାଙ୍କ ଶରୀର ଭିତରକୁ ଅପର୍ଯ୍ୟାପ୍ତ ପରିମାଣର ବାୟୁ ପ୍ରବେଶ କଲା ଓ ତାଙ୍କୁ ଭାରି ଓଜନିଆ ଲାଗିଲା । ହଠାତ୍ ପାଞ୍ଚଛଅ ବର୍ଷର ଝିଅଟିଏ ନାଲି ଫ୍ରକ୍ ପିନ୍ଧି ସେଇ ଗଛତଳେ ଆସି ପହଞ୍ଚିଲା । ସେ ତାଙ୍କ ଗଳାରେ ନିଜ ହାତକୁ ଛନ୍ଦି କହିଲା, 'ମା', ମୁଁ ତୁମ ଘରକୁ ଆସୁଛି ।' ସେହି ଝିଅଟି ଶ୍ୟାମାସୁନ୍ଦରୀ ଦେବୀଙ୍କ ଦେହରେ ପ୍ରବେଶ କଲା ଏବଂ ଶ୍ୟାମାସୁନ୍ଦରୀ ଦେବୀ ଅଚେତ ହୋଇଗଲେ ।

ଅନ୍ୟ ଏକ ଘଟଣା ନିଜେ ଶ୍ରୀମା' ସାରଦାଦେବୀ ତାଙ୍କର ଶିଷ୍ୟଙ୍କୁ କହିଛନ୍ତି । "ମୁଁ ପିଲାଦିନରୁ ଲକ୍ଷ୍ୟ କରି ଦେଖିଛି ଯେ ଗୋଟିଏ ଝିଅ, ଠିକ୍ ମୋ ପରି, ମୋ ସହିତ ସବୁବେଳେ ବୁଲେ ଏବଂ ମୋତେ ମୋ କାମରେ ସାହାଯ୍ୟ କରେ । ସେ ମଧ୍ୟ ମୋ ସହିତ ହସେ ଓ ଗପ କରେ । ପ୍ରାୟ ମୋତେ ୧୦/୧୧ ବର୍ଷ ହେବା ପର୍ଯ୍ୟନ୍ତ ଏହିପରି ଲାଗି ରହିଥିଲା ।"

ତାଙ୍କୁ ଯେତେବେଳେ ତେର ବର୍ଷ ସେ କାମାରପୁକୁର ଯାଇଥିଲେ । ସେ ଘରକୁ ନୂଆ ଏବଂ ତରୁଣୀ ହେତୁ ତାଙ୍କୁ ବାହାରେ ଥିବା ପୋଖରୀ କୂଳକୁ ଯାଇ ଗାଧୋଇବାକୁ ଡର ଲାଗୁଥିଲା । ଦିନେ ସେ ଘରର ପଛ ଦୁଆର ଦେଇ ବାହାରକୁ ଆସିବା ବେଳେ ନିଜର ଅସୁବିଧା ସଂପର୍କରେ ଭାବୁଥିଲେ । ହଠାତ୍ ଦେଖିଲେ ଆଠଜଣ ସ୍ତ୍ରୀଲୋକ ତାଙ୍କ ନିକଟକୁ ଆସିଲେ । ସେ ଯେମିତି ପୋଖରୀ କୂଳକୁ ଆଗେଇଲେ, ସେମାନେ ତାଙ୍କୁ ବାଟ କଢ଼ାଇନେଲେ । ଚାରିଜଣ ସ୍ତ୍ରୀଲୋକ ତାଙ୍କ ଆଗରେ ଏବଂ ଅନ୍ୟ ଚାରିଜଣ ତାଙ୍କ ପଛରେ ଚାଲୁଥାନ୍ତି । ହାଲଦାର ପୋଖରୀରେ ସେମାନେ ତାଙ୍କ ସହିତ ଗାଧୋଇଲେ ଏବଂ ତାଙ୍କ ସହିତ ଘରକୁ ଫେରି ଆସିଲେ । ଏଇମିତି କେତେଦିନ ଘଟିଥିଲା । ସେ ଏହି ସ୍ତ୍ରୀଲୋକମାନେ କିଏ ତାହା ଜାଣି ପାରି ନଥିଲେ ।

ସାରଦାଙ୍କ ଦେହରୁ ଜର କ୍ରମଶଃ କମିଯାଇଥିଲା । ରାମଚନ୍ଦ୍ର ଯାତ୍ରା ପୁଣି ଆରମ୍ଭ କଲେ । ବାଟରେ ତାଙ୍କୁ ଗୋଟେ ପାଲିଙ୍କି ମିଳିଗଲା । ସେଥିରେ ସେ ଦକ୍ଷିଣେଶ୍ୱର ଯାତ୍ରା କଲେ । ପ୍ରାୟ ରାତି ୯ଟା ବେଳେ ପହଞ୍ଚିଲେ ଦକ୍ଷିଣେଶ୍ୱରରେ ।

ତାଙ୍କର ଦକ୍ଷିଣେଶ୍ୱରର ପହଞ୍ଚିବା ପରେ ଶ୍ରୀ ରାମକୃଷ୍ଣ କିପରି ତାଙ୍କୁ ସ୍ୱାଗତ

କଲେ, ତାହାକୁ ମନେ ପକାଇ କରି ଶ୍ରୀମା' କହିଛନ୍ତି, "ମୁଁ ସିଧା ଠାକୁରଙ୍କ ଘର ଭିତରକୁ ଗଲି । ଅନ୍ୟମାନେ ନହବତକୁ ଗଲେ ଯେଉଁଠାରେ ମୋର ଶାଶୁ ରହୁଥିଲେ । ଠାକୁର ମୋତେ କହିଲେ, 'ଆହେ, ତୁମେ ଆସିଲ । ଠିକ୍ ଅଛି ।' ସେ କାହାକୁ ଚଟାଣରେ ସପ ପକାଇ ଦେବାକୁ କହିଲେ । ପୁଣି କହିଲେ, 'ଏ କ୍ଷଣି ଯଦି ମୋର ମଥୁର ଏଠାରେ ଥାଆନ୍ତା । ତା'ର ମୃତ୍ୟୁରେ ମୋର ଡାହାଣ ହାତ ଭାଙ୍ଗି ଯାଇଛି ।' କିଛି ଦିନ ପୂର୍ବରୁ ମଥୁର ନାଥଙ୍କର ମୃତ୍ୟୁ ହୋଇଥିଲା ଏବଂ ଠାକୁରଙ୍କର ବଡ଼ଭାଇର ପୁଅ ଅକ୍ଷୟର ମଧ୍ୟ। ମଥୁର ବଞ୍ଚିଥିଲେ ବୋଧହୁଏ ମୋତେ ସେହି କ୍ଷୁଦ୍ର କୁଟୀର ନହବତ ମଧ୍ୟରେ ରହିବାକୁ ହୋଇ ନଥାନ୍ତା । ମୋ ପାଇଁ ବଡ଼କୋଠାଟିଏ ନିର୍ମାଣ କରି ଥାନ୍ତା । ମୁଁ ଠାକୁରଙ୍କୁ ଦେଖିସାରି ନହବତକୁ ଯିବାକୁ ଚାହିଁଲି, କିନ୍ତୁ ଠାକୁର କହିଲେ, 'ନାଁ, ନାଁ, ତୁମେ ଏଇଠି ରୁହ । ନହବତରେ ଯାଇ ଡାକ୍ତର ତୁମକୁ ଦେଖିବା ଅସୁବିଧା ହେବ ।' ମୁଁ ସେଦିନ ରାତି ସେହି କୋଠରିରେ କଟାଇଲି । ହୃଦୟ ଆମକୁ ମୁଢ଼ି ଖାଇବାକୁ ଦେଲେ, କାରଣ ସେତେବେଳକୁ ସମସ୍ତେ ରାତି ଖାଇବା ଖାଇ ସାରିଥିଲେ । ତାପର ଦିନ ଜଣେ ଡାକ୍ତର ଆସି ମୋତେ ଦେଖିଲେ । କିଛିଦିନ ଭିତରେ ମୁଁ ଭଲ ହୋଇଗଲି ଏବଂ ନହବତରେ ରହିବାକୁ ଚାଲିଗଲି । ସେତେବେଳେ ମୋ ଶାଶୁ ନହବତରେ ରହୁଥିଲେ । ତା ପୂର୍ବରୁ ମନ୍ଦିରର ମାଲିକମାନେ ବ୍ୟବହାର କରୁଥିବା ଗୋଟିଏ କୋଠାର ଗୋଟିଏ ଘରେ ସେ ଥିଲେ । ଅକ୍ଷୟର ସେହି ଘରେ ମୃତ୍ୟୁ ହୋଇଥିଲା । ତେଣୁ ସେ ସେହି ଘର ଛାଡ଼ି ଦେଲେ । ସେ କହିଲେ, ମୁଁ ସେ ଘରେ ଆଦୌ ରହିବି ନାହିଁ । ମୁଁ ନହବତରେ ରହିବି ଏବଂ ଗଙ୍ଗା ଆଡ଼କୁ ମୁହଁ କରିବି । ମୋର କୋଠାଘରେ ରହିବାର ଦରକାର ନାହିଁ ।"

ସାରଦା ଦେବୀ କେବଳ ଶାରିରୀକ ଭାବରେ ସୁସ୍ଥ ହେଲେ ନାହିଁ, ସେ ଦକ୍ଷିଣେଶ୍ୱର ଆସି ମାନସିକ ଭାବରେ ମଧ୍ୟ ସୁସ୍ଥତା ଲାଭ କଲେ । ସଂସାରୀ ଲୋକମାନେ ମିଛରେ କୁତ୍ସାରଟନା କରୁଥିଲେ । ସେମାନେ ଶ୍ରୀରାମକୃଷ୍ଣଙ୍କର ଉନ୍ନତ ଆଧ୍ୟାତ୍ମିକ ଚେତନାକୁ ବୁଝି ପାରୁ ନଥିଲେ ବୋଲି ତାଙ୍କର ସ୍ପଷ୍ଟ ଧାରଣା ହେଲା । ସାରଦାଙ୍କୁ ଅତି ଆଦରରେ ଶ୍ରୀ ରାମକୃଷ୍ଣ କେବଳ ସ୍ୱାଗତ କଲେ ନାହିଁ ବରଂ ତାଙ୍କ ମଧ୍ୟରେ ପାଗଳାମିର କୌଣସି ଲକ୍ଷଣ ନଥିବାର ସେ ଦେଖିଲେ। ବର୍ତ୍ତମାନ ତାଙ୍କ ମନରେ ଆଉ ଗୋଟିଏ ଚିନ୍ତା ଦେଖାଗଲା । ସେ କିପରି ତାଙ୍କର ସେବା କରିପାରିବେ, କିପରି ତାଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱକୁ ତୁଲାଇବେ ।

ସେ ଦକ୍ଷିଣେଶ୍ୱରଠାରେ ରହିଯିବାକୁ ସ୍ଥିର କଲେ । ଶ୍ରୀରାମକୃଷ୍ଣ ଓ ତାଙ୍କ ମା'ଙ୍କର ସେବାରେ ନିଜକୁ ସମର୍ପିତ କରିବାର ସିଦ୍ଧାନ୍ତ ନେଲେ ।

ରାମଚନ୍ଦ୍ର ମୁଖାର୍ଜୀ ନିଜ ଝିଅର ସୁଖମୟ ଭବିଷ୍ୟତ ସ୍ଥିରନିଶ୍ଚିତ ଭାବି ଜୟରାମବାଟୀ ଅଭିମୁଖେ କିଛିଦିନ ପରେ ପ୍ରତ୍ୟାବର୍ତ୍ତନ କଲେ ।

କଠିନ ପରିସ୍ଥିତି ମଧ୍ୟରେ ମହାନ୍ ବ୍ୟକ୍ତି ବିଶେଷଙ୍କର ଚରିତ୍ରର ମହନୀୟତା ଜଣାପଡ଼େ । ଶ୍ରୀ ସାରଦାଦେବୀଙ୍କର ଆଗମନରେ ଶ୍ରୀ ରାମକୃଷ୍ଣ ତାଙ୍କୁ ତାଙ୍କଠାରୁ ସମ୍ପୂର୍ଣ୍ଣ ଦୂରେଇ ଦେବାକୁ କହିନାହାନ୍ତି କିମ୍ବା ତାଙ୍କର ପ୍ରଭାବ ଦ୍ୱାରା ବଶୀଭୂତ ହୋଇନାହାନ୍ତି । ବରଂ ତାଙ୍କୁ ସେ ଅତ୍ୟନ୍ତ ଆଦରର ସହିତ ସ୍ୱାଗତ କରିଛନ୍ତି । ତାଙ୍କୁ ଦକ୍ଷିଣେଶ୍ୱରରେ ତାଙ୍କ ନିକଟରେ ରହିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ନିର୍ଦ୍ଦେଶ ଦେବା ମୂଳରେ ଦୁଇଟି କାରଣ ରହିଛି । ପ୍ରଥମଟି ସ୍ୱାମୀ ଭାବରେ ସେ ଆଦର୍ଶ ଜୀବନର ସଂପର୍କରେ ତାଙ୍କୁ ଶିକ୍ଷାଦେବା ଏବଂ ନିଜ ଭିତରେ ଥିବା ନିମ୍ନ ପ୍ରବୃତ୍ତିକୁ ଦୂର କରିବା ପାଇଁ ନିଜକୁ ପରୀକ୍ଷା କରିବା । କାରଣ ଶ୍ରୀରାମକୃଷ୍ଣଙ୍କର ଗୁରୁ ତୋତାପୁରୀ ତାଙ୍କୁ ଉପଦେଶ ଦେଇ କହିଥିଲେ, ''ସ୍ତ୍ରୀ ନିକଟରେ ଥିଲେ ସୁଦ୍ଧା ଯାହାର ତ୍ୟାଗ, ବୈରାଗ୍ୟ, ବିବେକ, ବିଜ୍ଞାନ ସର୍ବୋତ ଭାବେ ଅକ୍ଷୁଣ୍ଣ ରହେ ସେ ବ୍ୟକ୍ତି ଯଥାର୍ଥରେ ବ୍ରହ୍ମରେ ପ୍ରତିଷ୍ଠିତ । ସ୍ତ୍ରୀ ଓ ପୁରୁଷ ଉଭୟଙ୍କୁ ଯେ ସମଭାବରେ ଆତ୍ମା ଭାବି ସେହିପରି ଦୃଷ୍ଟି ଓ ତଦନୁରୂପ ବ୍ୟବହାର କରିପାରନ୍ତି ତାଙ୍କର ଯଥାର୍ଥ ବ୍ରହ୍ମବିଜ୍ଞାନ ଲାଭ ହୋଇଛି । ସ୍ତ୍ରୀ ପୁରୁଷ ମଧ୍ୟରେ ଭେଦବୁଦ୍ଧି ସମ୍ପନ୍ନ ଅନ୍ୟାନ୍ୟ ସାଧକ ମାନେ ବ୍ରହ୍ମବିଜ୍ଞାନଠାରୁ ବହୁତ ଦୂରରେ ।''

ଶ୍ରୀମା' ସାରଦାଙ୍କର ଦକ୍ଷିଣେଶ୍ୱର ଠାରେ ଉପସ୍ଥିତିକୁ ଶ୍ରୀରାମକୃଷ୍ଣ ନିଜ ସାଧନାକୁ ପରୀକ୍ଷା କରିବାର ଏକ ସୁଯୋଗ ଭାବେ ବିଚାର କଲେ । ସେ ତାଙ୍କୁ ତାଙ୍କର ସେବା କରିବାକୁ କହିଲେ ଏବଂ ଏପରିକି ନିଜ କୋଠରିରେ ତାଙ୍କୁ ଶୋଇବାକୁ ମଧ୍ୟ ଅନୁମତି ଦେଲେ । ହୁଏତ ଜଣେ ସାଧାରଣ ସନ୍ନ୍ୟାସୀଙ୍କ ନିମନ୍ତେ ଏହା ଅସମ୍ଭବ ହୋଇଥାନ୍ତା । କିନ୍ତୁ ଶ୍ରୀ ରାମକୃଷ୍ଣ ସାଧାରଣ ସନ୍ନ୍ୟାସୀ ନଥିଲେ । ଏହାକୁ ଲକ୍ଷ୍ୟ କରି ସ୍ୱାମୀ ସାରଦାନନ୍ଦ ଉଲ୍ଲେଖ କରିଛନ୍ତି, ''ଦିନେ ଶ୍ରୀମା' ଶ୍ରୀରାମକୃଷ୍ଣଙ୍କ ନିକଟରେ ଶୋଇଥିବା ବେଳେ ଶ୍ରୀରାମକୃଷ୍ଣ ନିଜ ଭିତରେ ବିଚାର କରି କହିଲେ, 'ମନ, ସଂସାରରେ ଏହାକୁ ନାରୀର ଶରୀର ବୋଲି କହନ୍ତି । ମଣିଷ ଏହା ପଛରେ ଧାଏଁ । କିନ୍ତୁ ଯେ ଏହା ପଛରେ ଧାଏଁ, ସେ ଶରୀର ସହିତ ହିଁ ରହିଯାଏ, ଈଶ୍ୱରଙ୍କୁ ପାଇ ପାରେ ନାହିଁ । ବର୍ତ୍ତମାନ ହେ ମନ; କପଟ କରି ଗୋଟିଏ ବିଚାର ବାହାରେ ଏବଂ ଅନ୍ୟ ବିଚାର ଭିତରେ ରଖ ନାହିଁ । ମୋତେ କୁହ, ତୁମେ ଏହି ସ୍ତ୍ରୀ ଲୋକଟିର ଶରୀରକୁ ଭୋଗ କରିବାକୁ ଚାହୁଁଛ ନା ଈଶ୍ୱରଙ୍କୁ ଚାହୁଁଛ ? ଯଦି ତୁମେ ପ୍ରଥମଟିକୁ ଚାହୁଁଛ, ଏହା ତୁମ ସମ୍ମୁଖରେ ରହିଛି, ତୁମେ ଏହାକୁ ଭୋଗ କରିପାର ।' ଏହା

ବିଚାର କରି ସେ ଶ୍ରୀମା' ସାରଦାଙ୍କୁ ସ୍ପର୍ଶ କରିବାକୁ ଯିବା ମାତ୍ରେ ତାଙ୍କର ମାନସିକ ଉଦ୍‌ବେଳନ ହେଲା ଓ ସେ ତତ୍‌କ୍ଷଣାତ୍ ଭାବ ସମାଧିରେ ରାତିସାରା ନିମଗ୍ନ ରହିଲେ । ତା'ପର ଦିନ ସକାଳେ ତାଙ୍କ କାନରେ ବହୁ ସମୟ ପର୍ଯ୍ୟନ୍ତ ପ୍ରଭୁ ନାମ କୁହାଯିବା ପରେ ସେ ସାଧାରଣ ଅବସ୍ଥାକୁ ଆସିଥିଲେ ।"

ଆଉ ଅନ୍ୟ ଏକ ଘଟଣାରୁ ଅବସ୍ଥାର ଶ୍ରୀରାମକୃଷ୍ଣଙ୍କର ମାନସିକ ଅବସ୍ଥାର ସୂଚନା ମିଳେ । ଦିନେ ଶ୍ରୀମା' ସାରଦା ଶ୍ରୀ ଶ୍ରୀ ଠାକୁରଙ୍କର ପଦସେବା କରୁଥିଲେ । ଶ୍ରୀମା ତାଙ୍କୁ ସିଧା ପଚାରିଲେ, "ତୁମେ ମୋତେ କେଉଁ ଦୃଷ୍ଟିରେ ଦେଖ ?" "ଯେଉଁ ମା' ମନ୍ଦିରରେ ଅଛନ୍ତି । ସେହି ମା' ଏହି ଶରୀରକୁ ଜନ୍ମ ଦେଇଛନ୍ତି ଓ ବର୍ତ୍ତମାନ ନହବତରେ ବାସ କରୁଛନ୍ତି ଏବଂ ସେ ହିଁ ଏବେ ମୋର ପଦସେବା କରୁଛନ୍ତି । ତୁମକୁ ସର୍ବଦା ସାକ୍ଷାତ୍ ଆନନ୍ଦମୟୀ ବୋଲି ପ୍ରକୃତରେ ମୁଁ ଦେଖିଥାଏ ।"

ଏହା ହୁଏତ ସାଧାରଣ ଦେହାତ୍ମବାଦୀ ମନୁଷ୍ୟମାନଙ୍କୁ ଗୋଳମାଳିଆ ଲାଗିପାରେ, କିନ୍ତୁ ଶ୍ରୀରାମକୃଷ୍ଣଙ୍କ ନିମିତ୍ତ ଏହା ଅତି ସାଧାରଣ କଥା, କାରଣ ସେ ଥିଲେ ସାର୍ବଜନୀନ ମାତୃଶକ୍ତିର ବାସ୍ତବ ଉପାସକ । କେତେକ ଲୋକ ଶ୍ରୀମା' ସାରଦାଙ୍କର ବିବାହିତ ଜୀବନରେ ସନ୍ତାନ ନଥିବା ହେତୁ ତାଙ୍କ ପ୍ରତି ସମବେଦନା ପ୍ରକାଶ କରିଛନ୍ତି । ଏପରିକି ତାଙ୍କ ମାତା ଶ୍ୟାମାସୁନ୍ଦରୀ ଦେବୀ ମନରେ ଦୁଃଖ ପ୍ରକାଶ କରି କହିଛନ୍ତି, 'ମୋ ସାରଦା ଗୋଟେ ପାଗଳକୁ ବାହା ହୋଇଛି । ସେ କେବେ ହେଲେ ମା' ଡାକର ଆନନ୍ଦ ପାଇ ପାରିବ ନାହିଁ ।'

ଏହାଶୁଣି ଶ୍ରୀରାମକୃଷ୍ଣ କୁହନ୍ତି, "ହଁ ମା', ତୁମେ ସେଥିପାଇଁ ଆଦୌ ବ୍ୟସ୍ତ ହୁଅନା । ତୁମ ଝିଅର ଏତେ ସନ୍ତାନ ହେବେ ଯେ ସେ ଦିନରାତି 'ମା', ମା' ଡାକ ଶୁଣି ଅସ୍ତବ୍ୟସ୍ତ ହୋଇଯିବେ ।" ଯଦିଓ ଅନ୍ୟମାନେ ଶ୍ରୀମା'ଙ୍କ ପ୍ରତି ସମବେଦନା ଜଣାଉଥିଲେ, ସେ କିନ୍ତୁ ଏଥିନେଇ କେବେ ବ୍ୟସ୍ତ ବିବ୍ରତ ହୋଇ ନାହାଁନ୍ତି । ବରଂ ଶ୍ରୀରାମକୃଷ୍ଣଙ୍କ ସହିତ ତାଙ୍କର ଦିନଗୁଡ଼ିକ କଟିଛି, ତାଙ୍କର ସେବା କରିବାର ସୌଭାଗ୍ୟ ସେ ପାଇଛନ୍ତି ଏକଥାକୁ ଉଲ୍ଲେଖ କରି ସେ କହନ୍ତି, ''ଯେଉଁ ଦିବ୍ୟଭାବରେ ଠାକୁର ନିମଗ୍ନ ରହନ୍ତି, ତାହା ବର୍ଣ୍ଣନା ସାପେକ୍ଷ । ସମାଧି ଅବସ୍ଥାରେ ସେ ହସନ୍ତି, କାନ୍ଦନ୍ତି କିମ୍ବା କେବେକେବେ ସମ୍ପୂର୍ଣ୍ଣ ଗଭୀର ସମାଧିରେ ବୁଡ଼ି ରହନ୍ତି । ଏହା କେବେକେବେ ସମ୍ପୂର୍ଣ୍ଣ ରାତିସାରା ରହେ । ତାଙ୍କର ଏହି ଦିବ୍ୟଭାବାବସ୍ଥାରେ ମୋର ସର୍ବାଙ୍ଗ ଶିହରଣ ହୁଏ ଏବଂ ମୁଁ ସକାଳ ହେବାକୁ ଅପେକ୍ଷା କରେ । ମୁଁ ସେତେବେଳେ ସମାଧି କ'ଣ ଜାଣି ନଥାଏ । ଦିନେ ରାତିରେ ତାଙ୍କର ସମାଧି ବହୁ ସମୟ ଯାଏ ରହିଲା । ମୁଁ ଭୟଭୀତ ହୋଇ ହୃଦୟକୁ ଡକାଇ ପଠାଇଲି । ସେ ଆସିଲା ଏବଂ ଠାକୁରଙ୍କ କାନରେ

ବହୁ ସମୟ ଯାଏ ଈଶ୍ୱରଙ୍କ ନାମ କହିଲା । ସେ କିଛି ସମୟ ଏପରି କହିବାରୁ, ତାଙ୍କର ବାହ୍ୟ ଚେତନା କ୍ରମଶଃ ଫେରିବାକୁ ଲାଗିଲା । ଏହି ଘଟଣା ପରେ ଠାକୁର ମୋ ଅବସ୍ଥା ବୁଝି ପାରିଲେ ଏବଂ ମୋତେ ପ୍ରଭୁଙ୍କର କେଉଁ ନାମକୁ ସମାଧିର କେଉଁ ଅବସ୍ଥାରେ କହିବାକୁ ହେବ, ତାହା ବୁଝାଇ ଦେଲେ । ତାହା ପରଠାରୁ ମୋର ଭୟ ବହୁ ପରିମାଣରେ କମିଗଲା, କାରଣ ନିର୍ଦ୍ଦିଷ୍ଟ ଦିବ୍ୟନାମ ଉଚ୍ଚାରଣ ମାତ୍ରେ ସେ ଜାଗତିକ ଚେତନାକୁ ଆସିଯାନ୍ତି । କିନ୍ତୁ ଏହା ପରେ ମଧ୍ୟ ମୁଁ ରାତି ସାରା ଚାହିଁ ରହେ କାରଣ କେତେବେଳେ ସେ ସମାଧିସ୍ଥ ହେବେ ସେଥିର ଜ୍ଞାନ ମୋର ନଥାଏ । ମୋର ଏ ଅସୁବିଧା ସଂପର୍କରେ ମଧ ସେ ଜ୍ଞାତ ହେଲେ । ସେ ଜାଣିଲେ ଯେ ଅନେକ ଦିନ ବିତିଥିଲେ ମଧ୍ୟ ମୁଁ ତାଙ୍କର ସମାଧି ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ପାରୁନାହିଁ । ତେଣୁ ମୋତେ ନହବତରେ ଅଲଗା ଶୋଇବା ପାଇଁ କହିଲେ ।''

ତେଣୁ ତାଙ୍କର ବିବାହିତ ଜୀବନ ସଂପର୍କରେ ଯେଉଁମାନେ ଭାବନ୍ତି ଯେ ତାଙ୍କ ଉପରେ ଜବରଦସ୍ତ ବ୍ରହ୍ମଚର୍ଯ୍ୟକୁ ଲଦି ଦିଆଯାଇଛି, ସେମାନେ ନିଜର ଅଜ୍ଞାତବଶତଃ ଏପରି ମତ ପୋଷଣ କରିଥାନ୍ତି । ଯଦି ସେ ଚାହିଁଥାନ୍ତେ ତେବେ ଶ୍ରୀରାମକୃଷ୍ଣଙ୍କୁ ଯାବତୀୟ ସାଂସାରିକ କାର୍ଯ୍ୟପ୍ରତି ଆକୃଷ୍ଟ କରିପାରିଥାନ୍ତେ, କିନ୍ତୁ ସେ ତ ଭିନ୍ନ ଧାତୁରେ ଗଢ଼ା । ସେ ମଧ ଉତ୍ତୁଙ୍ଗ ଆଧାତ୍ମିକ ଚେତନାରେ ଜଡ଼ସଡ । ଦିନେ ଶ୍ରୀରାମକୃଷ୍ଣ, ଶ୍ରୀମା'ଙ୍କର ମନ ଜାଣିବାକୁ ପଚାରିଲେ, ''ତୁମେ କ'ଣ ମୋତେ ସଂସାର ଆଡ଼କୁ ଟାଣିନେବାକୁ ଆସିଛ ? ଶ୍ରୀମା' ଉତ୍ତର ଦେଲେ, 'ନା' ମୁଁ କାହିଁକି ବା ସେପରି କରିବି ? ତୁମକୁ ବରଂ ତୁମର ଇଷ୍ଟ ପଥରେ ସାହାଯ୍ୟ କରିବାକୁ ଆସିଛି ।'' କି ଚମତ୍କାର ଉତ୍ତର ! କେବଳ ପବିତ୍ର ମନ ଥିବା ନାରୀଟିଏ ହିଁ ଏପରି ଉତ୍ତର ଦେଇପାରେ । ଏହି ଉତ୍ତରରେ କୌଣସି ଛଳନା ମଧ ନାହିଁ କିମ୍ବା କାହାକୁ ସନ୍ତୁଷ୍ଟ କରିବାର ମନୋଭାବ ମଧ ନାହିଁ । ଏହା ବାସ୍ତବତାର ପ୍ରକାଶ କରିଛି । ତାଙ୍କ ଜୀବନର ଆଦର୍ଶ ଫୁଟି ଉଠିଛି । ଶ୍ରୀରାମକୃଷ୍ଣଙ୍କ ସାଧନାରେ ସିଦ୍ଧି ପାଇଁ ଶ୍ରୀମା' ସାରଦାଙ୍କର ତ୍ୟାଗ, ତପସ୍ୟାର ଯୋଗଦାନ ରହିଛି, ଏହା ଅନସ୍ୱୀକାର୍ଯ୍ୟ । ଏପରି ଆଦର୍ଶକୁ ସାକାର ରୂପ ଦେବା ସମ୍ଭବ ହୋଇଛି, ଯେହେତୁ ଶ୍ରୀମା' ଶ୍ରୀରାମକୃଷ୍ଣଙ୍କ ପରି ପବିତ୍ର ଏବଂ ତାଙ୍କର ଆଦର୍ଶକୁ ସମ୍ପୂର୍ଣ୍ଣ ରୂପାୟନ କରିବା ପାଇଁ ପୂର୍ଣ୍ଣ ସହଯୋଗ କରିଛନ୍ତି ।

ଏକଥାକୁ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଶ୍ରୀରାମକୃଷ୍ଣ । ସେ ତାଙ୍କର ଶିଷ୍ୟମାନଙ୍କୁ କହିଛନ୍ତି, "ଯଦି ସେ ସମ୍ପୂର୍ଣ୍ଣ ଭାବେ ପବିତ୍ର ହୋଇ ନଥାନ୍ତେ, କିଏ ଜାଣେ ତାଙ୍କର ପ୍ରରୋଚନାରେ ମୋ ନିଜର ଆତ୍ମସଂଯମ ଭାଙ୍ଗି ଯାଇନଥାନ୍ତା ?

ବିବାହ ପରେ ମୁଁ ଦିବ୍ୟଜନନୀଙ୍କୁ ପ୍ରାର୍ଥନା କରିଥିଲି, 'ହେ ମାତଃ ! ମୋ ସ୍ତ୍ରୀ ମନରୁ ସାମାନ୍ୟମାତ୍ର ଯୌନ ଇଚ୍ଛାକୁ ମଧ୍ୟ ଦୂର କରିଦିଅ । ମୁଁ ଯେତେବେଳେ ତାଙ୍କ ସହିତ ରହିଲି, ମୁଁ ହୃଦୟଙ୍ଗମ କଲିଯେ ଜଗତ୍‌ଜନନୀ ମୋର ପ୍ରାର୍ଥନା ଶୁଣିଛନ୍ତି ।" ଶ୍ରୀମା'ଙ୍କର ଦକ୍ଷିଣେଶ୍ୱର ଆଗମନ ଏବଂ ଶ୍ରୀରାମକୃଷ୍ଣଙ୍କ ସହିତ ରହିବା ବେଳଠାରୁ ଠାକୁର ଶ୍ରୀ ସାରଦା ଦେବୀ ଆଧାତ୍ମିକ ଭାବରେ ଉପଯୁକ୍ତ ବୋଲି ହୃଦୟଙ୍ଗମ କରିଛନ୍ତି । ଏହା ବ୍ୟତୀତ ଶ୍ରୀରାମକୃଷ୍ଣ ଓ ଶ୍ରୀ ସାରଦାଦେବୀଙ୍କ ମଧ୍ୟରେ ଯେଉଁ ସୂକ୍ଷ୍ମ ଅଦୃଶ୍ୟ ସଂପର୍କ ତାହା ମଧ୍ୟ ଠାକୁରଙ୍କର ବକ୍ତବ୍ୟରୁ ବୁଝାପଡ଼େ । ପୁନଶ୍ଚ ଆଧାତ୍ମିକ ସାଧନାର ଶେଷ ଶୃଙ୍ଖଳାରେ ସେ ଶ୍ରୀମାଙ୍କୁ ଦେବୀ ଷୋଡଶୀ ଭାବରେ ପୂଜା କରିଛନ୍ତି ।



# ଷୋଡ଼ଶୀ ପୂଜା

୧୮୭୨ ମସିହା ଜୁନ ୫ ତାରିଖ । ଏହି ଦିନଟି ଫଳାହାରିଣୀ କାଳୀ ପୂଜା । ଶ୍ରୀଶ୍ରୀ ମା' କାଳୀଙ୍କର ବିଶେଷ ପୂଜା ଉପଲକ୍ଷେ ଦକ୍ଷିଣେଶ୍ୱର କାଳୀମନ୍ଦିର ସୁସଜ୍ଜିତ ହୋଇଥାଏ । ରାତିରେ ପୂଜାହେବ । ଲୋକଗହଳି ଲାଗିଥାଏ ।

କିନ୍ତୁ ବନ୍ଦ ଥାଏ ଠାକୁରଙ୍କର ଘରର ଦୁଆର । ଗୃହ ମଧ୍ୟରେ ଠାକୁର ଦେବୀଙ୍କର ପୂଜା ପାଇଁ ବିଶେଷ ଯୋଗାଡ଼ ମଧ୍ୟ କରୁଥାନ୍ତି । ଶ୍ରୀରାମକୃଷ୍ଣଙ୍କର ଦୂର ସଂପର୍କୀୟ ପୁତୁରା ଦିନୁ ପୂଜା ପାଇଁ ବେଲପତ୍ର ଆଣିଥାଏ ଏବଂ ହୃଦୟ ଅନ୍ୟାନ୍ୟ ପୂଜା ସାମଗ୍ରୀ ଯୋଗାଡ଼ କରିଥାଏ । ଶ୍ରୀରାମକୃଷ୍ଣ ଶ୍ରୀମା' ସାରଦାଙ୍କୁ ଘର ଭିତରକୁ ଆସିବାକୁ ଆଗରୁ କହିରଖିଥାନ୍ତି । ରାତି ୯ଟା ବେଳକୁ ଶ୍ରୀ ସାରଦା ଦେବୀ ସେଠାରେ ଆସି ଉପସ୍ଥିତ ହେଲେ । ଦିନୁ ଓ ହୃଦୟ ପୂଜାର ପ୍ରସ୍ତୁତି କାର୍ଯ୍ୟ ସମାପ୍ତ କରି ଚାଲି ଯାଇଥିଲେ ।

ପୂଜା ଆରମ୍ଭ ହେଲା । ଠାକୁର ପୂର୍ବଦିଗକୁ ମୁହଁ କରି ପଶ୍ଚିମ ଦ୍ୱାର ନିକଟରେ ବସିଲେ । ପ୍ରାଥମିକ ଶୁଦ୍ଧି ଇତ୍ୟାଦି କର୍ମ ସରିବା ପରେ ଶ୍ରୀରାମକୃଷ୍ଣ ଶ୍ରୀମା' ସାରଦାଙ୍କୁ ଦେବୀଙ୍କ ପାଇଁ ଉଦ୍ଦିଷ୍ଟ ଆସନରେ ବସିବାକୁ କହିଲେ । ଛୋଟିଆ ଖଟୁଲି ଉପରେ ଚିତା ପଡ଼ିଥାଏ । ଶ୍ରୀମା ତା' ଉପରେ ପଶ୍ଚିମକୁ ମୁହଁ କରି ବସିଲେ । ଶ୍ରୀମା ସାରଦା କୌଣସି ସମ୍ମୋହନ ଶକ୍ତିଦ୍ୱାରା ବଶୀଭୂତ ହେବା ପରି ଠାକୁରଙ୍କର ନିର୍ଦ୍ଦେଶକୁ ପାଳନ କରି ଚାଲିଥାନ୍ତି । ମନ୍ତ୍ରପୂତ ପବିତ୍ର ଜଳ ଶ୍ରୀମା'ଙ୍କ ଉପରେ ସିଞ୍ଚନ କରି ପ୍ରାର୍ଥନା ମନ୍ତ୍ର ଉଚ୍ଚାରଣ କଲେ ଠାକୁର ଶ୍ରୀ ରାମକୃଷ୍ଣ ।

"ହେ ବାଳେ, ହେ ସର୍ବଶକ୍ତିର ଅଧିଶ୍ୱରୀ ମାତଃ ତ୍ରିପୁର ସୁନ୍ଦରୀ, ସିଦ୍ଧିଦ୍ୱାର ଉନ୍ମୁକ୍ତ କର । ଏହି (ଶ୍ରୀମା'ଙ୍କର) ଦେହ ଓ ମନ ପବିତ୍ର କରି ଏଥିରେ ଆବିର୍ଭୂତ ହୁଅ ଓ ସର୍ବକଲ୍ୟାଣ ସାଧନ କର ।" ତା'ପରେ ସେ ଶ୍ରୀମା'ଙ୍କ ଅଙ୍ଗରେ ଯଥାବିଧି ମନ୍ତ୍ର ବିନ୍ୟାସ କରି ସାକ୍ଷାତ୍ ଦେବୀଜ୍ଞାନରେ ଶ୍ରୀମା'ଙ୍କୁ ଷୋଡଶ ଉପଚାରରେ ପୂଜା କଲେ । ଶ୍ରୀମା' ଏହାକୁ ଲକ୍ଷ୍ୟ କରି ଜଣେ ଭକ୍ତକୁ କହିଥିଲେ, "ମୋର କୌଣସି କୁଣ୍ଠା ବା ଲଜ୍ଜା ନଥିଲା । ମୁଁ ଅବଶ୍ୟ ତାଙ୍କୁ ଦେଖୁଥିଲି ସେ ଏସବୁ କରୁଛନ୍ତି କିନ୍ତୁ

ମୁଁ କୌଣସି ଶବ୍ଦ ମଧ୍ୟ ଉଚ୍ଚାରଣ କରିବାକୁ ଆଗ୍ରହ ପ୍ରକାଶ କରୁନଥିଲି ।"

ପୂଜା ଶେଷ ହେବା ବେଳକୁ ଶ୍ରୀମା' ସମ୍ପୂର୍ଣ୍ଣ ସମାଧି ଅବସ୍ଥାରେ ଥିବାବେଳେ ଶ୍ରୀରାମକୃଷ୍ଣ ମଧ୍ୟ ହୋଇଥିଲେ ସମାଧିସ୍ଥ । ପୂଜ୍ୟ ଓ ପୂଜକ ସତ୍-ଚିତ୍-ଆନନ୍ଦ ମଧ୍ୟରେ ଲୀନ । ବହୁ ସମୟ ପରେ ଶ୍ରୀରାମକୃଷ୍ଣ ଚେତନା ସ୍ତରକୁ ଆସି ପୁନଶ୍ଚ ଦେବୀଙ୍କ ପାଦତଳେ ସମ୍ପୂର୍ଣ୍ଣ ସମର୍ପଣ କରି ପ୍ରଣାମ କଲେ, "ହେ ସର୍ବମଙ୍ଗଳର ମଙ୍ଗଳ ସ୍ୱରୂପା, ହେ ସର୍ବକର୍ମ ନିଷ୍ପନ୍ନ କାରିଣୀ, ହେ ଶରଣ ଦାୟିନୀ, ତ୍ରିନୟନୀ, ଶିବ ମୋହିନୀଗୌରୀ, ହେ ନାରାୟଣୀ ! ତୁମକୁ ପ୍ରଣାମ ।"

ପୂଜା ସମ୍ପୂର୍ଣ୍ଣ ସମାପ୍ତ ହେଲା । ଶ୍ରୀମା' ସାରଦାଦେବୀଙ୍କର ଏହା ଥିଲା ଦେବୀତ୍ୱର ପୂର୍ଣ୍ଣ ବିକାଶ । ପୂଜା ଶେଷପରେ ହୃଦୟ ଗୃହ ମଧ୍ୟକୁ ଆସିଥିଲା । ଶ୍ରୀମା ସାରଦା ନିଜର ସାଧାରଣ ଚେତନ ଅବସ୍ଥାକୁ ଆସି ମନେ ମନେ ଠାକୁରଙ୍କୁ ପ୍ରଣାମ କରି ନହବତକୁ ପ୍ରସ୍ଥାନ କରିଥିଲେ ।

ଷୋଡଶୀ ପୂଜାର ତାରିଖ ସଂପର୍କରେ ଦୁଇଟି ମତ ଦେଖିବାକୁ ମିଳେ । ୧୮୭୨ ମସିହାରେ ଶ୍ରୀମା'ସାରଦାଦେବୀ ଦକ୍ଷିଣେଶ୍ୱରକୁ ଆସନ୍ତି । ସ୍ୱାମୀ ସାରଦାନନ୍ଦଙ୍କ ମତ ଅନୁସାରେ ଏହାର ବର୍ଷକ ପରେ ଷୋଡଶୀ ପୂଜା ହୋଇଥିଲା ଅର୍ଥାତ୍ ୧୮୭୩ ମସିହା ମେ ୨୫ ତାରିଖ ।

'ମାୟେର କଥା' ୨ୟ ଖଣ୍ଡରେ ଶ୍ରୀମା' କହିଥିବାର ଉଲ୍ଲେଖ ଅଛି ଯେ, ସେ ଦକ୍ଷିଣେଶ୍ୱର ଆସିବାର ଦେଢ଼ମାସ ପରେ ଏହି ପୂଜା ହୋଇଥିଲା ।

ଶ୍ରୀ ରାମଚନ୍ଦ୍ର ଦତ୍ତ ଶ୍ରୀ ରାମକୃଷ୍ଣଙ୍କ ଉପରେ ଲେଖିଥିବା ବହିରେ ଏହି ପୂଜା ଜୟରାମବାଟୀ ଠାରେ ହୋଇଥିବାର ଉଲ୍ଲେଖ କରିଛନ୍ତି, ଯାହାକୁ ଶ୍ରୀମା' ନିଜେ ଖଣ୍ଡନ କରିଛନ୍ତି ।

ଷୋଡଶୀ ପୂଜା କ'ଣ ? ଏ ସଂପର୍କରେ କିଞ୍ଚିତ୍ ଧାରଣା ହେବା ଆବଶ୍ୟକ । ଏହାର ଅର୍ଥ ହେଉଛି ଗୋଟିଏ ଷୋହଳବର୍ଷର ଝିଅକୁ ପୂଜା କରିବା । କିନ୍ତୁ ଶ୍ରୀମା'ଙ୍କର ବୟସ ସେତେବେଳକୁ ଅଠର ବର୍ଷ ବା ତା'ଠାରୁ ଅଧିକ ହୋଇଥାଏ । ଏହାର ବାସ୍ତବ ଅର୍ଥ ହେଉଛି ଦେବୀ ମାତାଙ୍କୁ ଷୋଡଶୀ ଭାବରେ ପୂଜା କରିବା । ଦଶ ମହାମାୟାଙ୍କ ମଧ୍ୟରୁ ଷୋଡଶୀ ହେଉଛନ୍ତି ତୃତୀୟ । ଦଶମହାମୟା ହେଉଛନ୍ତି କାଳୀ, ତାରା, ଷୋଡଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଏବଂ କମଳା ।

ଶ୍ରୀରାମକୃଷ୍ଣ ଏପରି ପୂଜା କରିବାର ବିଶେଷତ୍ୱ କ'ଣ ? ଶ୍ରୀରାମକୃଷ୍ଣଙ୍କ ନିମିତ୍ତ ଏହା ଶରୀର ଉପରେ ଆତ୍ମାର ସମ୍ପୂର୍ଣ୍ଣ ବିଜୟ, ନିଜ ଭିତରେ ଥିବା ଯତ୍‌କିଞ୍ଚିତ୍

ପଶୁ ପ୍ରବୃତ୍ତିର ବିନାଶ, ଏବଂ ସାଧାରଣ ମନୁଷ୍ୟ ତାଙ୍କର ଦେବତ୍ୱ ଭାବକୁ ଚିହ୍ନି ପାରିବାର ସୁଯୋଗ ପାଇବେ । ଏହା ତାଙ୍କର ଆଧ୍ୟାତ୍ମିକ ମାର୍ଗ ଅନ୍ୱେଷଣକୁ ଶେଷ କରି ତାଙ୍କୁ ତାଙ୍କର ଲକ୍ଷ୍ୟ ନିକଟରେ ପହଞ୍ଚାଇଲା ।

ଶ୍ରୀମା' ସାରଦାଦେବୀଙ୍କ ଜୀବନରେ ଏହିପୂଜା ମଧ୍ୟ ସମାନ ଭାବରେ ଗୁରୁତ୍ୱ ପୂର୍ଣ୍ଣ । ବିବାହ ପରେ ଶ୍ରୀରାମକୃଷ୍ଣ ଜଗତ୍ ଜନନୀ ଭବତାରିଣୀ ମା'ଙ୍କୁ ଶ୍ରୀସାରଦାଙ୍କୁ ସମ୍ପୂର୍ଣ୍ଣ ଭାବେ କାମନାବାସନା ମୁକ୍ତ କରିବାର ପ୍ରାର୍ଥନା କରିଥିଲେ ଏବଂ ଶ୍ରୀମା' ସାରଦା ଏହି ଆଦର୍ଶର ମୂର୍ତ୍ତି ହୋଇଛନ୍ତି । ଷୋଡଶୀ ପୂଜା ମାଧ୍ୟମରେ ଶ୍ରୀରାମକୃଷ୍ଣ ତାଙ୍କର ସମସ୍ତ ସାଧନା, ତପସ୍ୟା ଓ ସିଦ୍ଧିର ସମଭାଗିନୀ କରିଛନ୍ତି ଶ୍ରୀମା' ସାରଦାଙ୍କୁ ଏବଂ ନିଜର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପୂରଣ ହେବାର ମାର୍ଗ ପ୍ରସ୍ତୁତ କରିଛନ୍ତି । ଶ୍ରୀମା'ସାରଦା ଶ୍ରୀରାମକୃଷ୍ଣଙ୍କର ସେବାଯତ୍ନ କରି ତାଙ୍କର ମହାସମାଧି ପରେ ତାଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟର ପୂରଣକୁ ନିଜର ଦାୟିତ୍ୱ ଭାବେ ଗ୍ରହଣ କରି ସୂଚାରୁ ଭାବରେ ସଂପାଦନ କରିଛନ୍ତି ।



# ଆଧ୍ୟାତ୍ମିକ ପ୍ରଶିକ୍ଷଣ

ଦକ୍ଷିଣେଶ୍ୱର ଶ୍ରୀମା' ସାରଦା ଦେବୀଙ୍କର ଆଧ୍ୟାତ୍ମିକ ତାଲିମ ପାଇବାର ପ୍ରକୃଷ୍ଟ କ୍ଷେତ୍ର ହୋଇଥିଲା । ସେଠାରେ ରହି ସେ ଠାକୁରଙ୍କର ସେବାଯତ୍ନ କରୁଥିଲେ । ପ୍ରତ୍ୟେକ ହିନ୍ଦୁ ସ୍ତ୍ରୀ ନିମିତ୍ତ ତାଙ୍କର ସ୍ୱାମୀ ହେଉଛନ୍ତି ଦେବତା ଏବଂ ତାଙ୍କ ପ୍ରତି ତାଙ୍କର ସେବା ସମ୍ପୂର୍ଣ୍ଣ ନିଃସ୍ୱାର୍ଥ । ଏହି ନିଃସ୍ୱାର୍ଥ ସେବା ହିଁ ଆଧ୍ୟାତ୍ମିକ ପ୍ରଗତିର ମୂଳ ।

ଶ୍ରୀମା' ସାରଦାଦେବୀଙ୍କର ଶ୍ରୀରାମକୃଷ୍ଣଙ୍କ ପ୍ରତି ସେବା ଅତି ଉଚ୍ଚ ଆଧ୍ୟାତ୍ମିକ ସ୍ତରଦେଇ ଅତିକ୍ରମ କରିଛି । ଶ୍ରୀରାମକୃଷ୍ଣଙ୍କର ସେବା ଅର୍ଥ ତାଙ୍କ ପ୍ରତି ଆକର୍ଷିତ ହେବା, ତାଙ୍କ ଆଦର୍ଶକୁ ନିଜ ଭିତରେ ସମ୍ପୂର୍ଣ୍ଣ ଭାବେ ସମାହିତ କରିବା ଏବଂ ଭବିଷ୍ୟତ ବଂଶଧରମାନଙ୍କୁ ସେହି ଆଦର୍ଶର ବାଟ ଦେଖାଇବା । ସେବା ଦରକାର କରେ ଭକ୍ତି ଓ ଧ୍ୟାନ । ଶ୍ରୀରାମକୃଷ୍ଣ ଶ୍ରୀମା'ଙ୍କୁ ଯେଉଁ ତାଲିମ ଦେଲେ ସେଥିରେ ଭକ୍ତି ଓ ଧ୍ୟାନ ସବୁଠାରୁ ଗୁରୁତ୍ୱ ପୂର୍ଣ୍ଣ ଅଂଶ ଥିଲା ।

ଶ୍ରୀରାମକୃଷ୍ଣ ଦିନେ ଶ୍ରୀମା' ସାରଦାଙ୍କୁ ଡାକି କହିଥିଲେ, ''ଜହ୍ନକୁ ସବୁ ପିଲାମାନେ ମାମୁଁ ବୋଲି ଡାକନ୍ତି । ଠିକ୍ ସେହିପରି ଭଗବାନ । ଏହା ସମସ୍ତଙ୍କର କୋଠ ସମ୍ପତ୍ତି । ସମସ୍ତଙ୍କର ତାଙ୍କୁ ଡାକିବାର ଅଧିକାର ରହିଛି । ତେଣୁ ତୁମେ ଯଦି ତୁମର ଧ୍ୟାନ ତାଙ୍କ ଆଡ଼କୁ ଆକର୍ଷିତ କରିବ, ତେବେ ତାଙ୍କୁ ପାଇପାରିବ ।'' ଶ୍ରୀରାମକୃଷ୍ଣ ଶ୍ରୀମା' ସାରଦାଦେବୀଙ୍କୁ ଷୋଡଶୀ ପୂଜାର କିଛିଦିନ ପୂର୍ବରୁ ଏହି ନିର୍ଦ୍ଦେଶ ଦେଇଥିଲେ ।

ଅନ୍ୟ ଦିନକର ଘଟଣା । ଶ୍ରୀମା' ସାରଦା ଜଣେ ଭକ୍ତ ମହିଳାଙ୍କୁ ସାଙ୍ଗରେ ଧରି ଠାକୁରଙ୍କୁ ରାତ୍ରଭୋଜନ ପରଶିବାକୁ ଗଲେ । ତାଙ୍କ ମୁଣ୍ଡରେ ଲମ୍ବା ଓଢଣି । ସେ କେବେହେଲେ ଓଢଣି ଛାଡ଼ି ଠାକୁରଙ୍କ ସାମନାକୁ ଯାଇନାହାନ୍ତି । ସେଦିନ ଠାକୁର ଅତ୍ୟନ୍ତ ଉତ୍ସାହର ସହିତ ତାଙ୍କୁ ଈଶ୍ୱରଙ୍କ ବିଷୟରେ କହିବାକୁ ଲାଗିଲେ । ଈଶ୍ୱରଙ୍କ କଥା କହି ଚାଲିଛନ୍ତି; କେତେ ସମୟ ହେଲାଣି ସେଥିକୁ ନିଘା ନାହିଁ । ରାତିସାରା କହିଚାଲିଛନ୍ତି । ଶ୍ରୀମା' ମଧ୍ୟ ସେଥିରେ ତଲ୍ଲୀନ । ଠିଆ ହୋଇ ଶୁଣି ଯାଉଛନ୍ତି, ସକାଳ ହେବାକୁ ଲାଗିଲା, ଶ୍ରୀମା' ଦେଖିଲେ ତାଙ୍କ ମୁଣ୍ଡରେ ଆଦୌ ଓଢ଼ଣି ନାହିଁ । ସେ

ତାଙ୍କ କଥାରେ ପୁରାପୁରି ଭାସି ଯାଇଛନ୍ତି । ସକାଳର ଆଲୁଅରେ ସେ ସଚେତନ ହୋଇ ମୁଣ୍ଡରେ ଓଢଣା ଟାଣି ଫେରି ଆସିଲେ ନହବତକୁ । ଠାକୁର ଏପରି ଉପଦେଶ ଦେବା ବ୍ୟତୀତ ଜପ ଓ ଧ୍ୟାନ ଆଧ୍ୟାତ୍ମିକ ଜାଗରଣ ପାଇଁ କିପରି ଦିଆଯାଏ, ସେଥିରେ ତାଙ୍କୁ ଦୀକ୍ଷିତ କରାଇଥିଲେ । କାମାରପୁକୁରରେ ଥିବା ବେଳେ ଶ୍ରୀମା' ସାରଦାଦେବୀଙ୍କୁ ପୂର୍ଣ୍ଣାନନ୍ଦ ସ୍ୱାମୀ ଦେବୀମନ୍ତ୍ର ପ୍ରଦାନ କରିଥିଲେ । ସେ ପୁନର୍ବାର ଠାକୁରଙ୍କ ଦ୍ୱାରା ଦୀକ୍ଷିତ ହେଲେ । ଠାକୁର ତାଙ୍କ ଜିଭରେ ବୀଜମନ୍ତ୍ର ଲେଖିଦେଲେ । ଶ୍ରୀମା' ସାରଦା ଠାକୁର ଓ ଭକ୍ତମାନଙ୍କର ସେବା କରିବା ମଧ୍ୟରେ ମଧ୍ୟ ବହୁ ସମୟ ଧରି ଜପ ଓ ଧ୍ୟାନ କରୁଥିଲେ । ସେ ତାଙ୍କର ଝିଆରୀ ନଳିନୀକୁ କହିଥିଲେ, 'ମୁଁ ଯେତେବେଳେ ଛୋଟ ମୋତେ ଅନେକ କାମ କରିବାକୁ ହେଉଥିଲା ! ତଥାପି ସମୟ କରି ମୁଁ ମନ୍ତ୍ର ଜପ କରୁଥିଲି ଏବଂ ପ୍ରତ୍ୟେକ ଦିନ ଶହେ ହଜାର ଥର ମନ୍ତ୍ର ଜପୁଥିଲି ।'

ଠାକୁର କିପରି ଭାବରେ ତାଙ୍କୁ ଆଧ୍ୟାତ୍ମିକ ନିର୍ଦ୍ଦେଶ ଦେଉଥିଲେ, ତା'ର ଯଦିଓ ସବିଶେଷ ବିବରଣୀ ନାହିଁ ତଥାପି ଶ୍ରୀ ମା'ସାରଦା ଦେବୀଙ୍କ ଭାଷାରେ, 'ଦକ୍ଷିଣେଶ୍ୱରରେ ଥିବାବେଳେ ମୁଁ ଭୋର ୩ଟାବେଳୁ ଉଠିପଡ଼ି ଧ୍ୟାନରେ ବସେ । ସମୟ ସମୟରେ ମୁଁ ସେଥିରେ ସମ୍ପୂର୍ଣ୍ଣ ମଗ୍ନ ହୋଇଯାଏ । ଦିନେ ଜହ୍ନ ରାତିରେ ନହବତର ପାହାଚ ଉପରେ ବସି ମୁଁ ଜପ କରୁଥାଏ । ସବୁ କିଛି ଶାନ୍ତ । ମୁଁ ଜାଣି ପାରିନି କେତେବେଳେ ଠାକୁର ସେଇବାଟ ଦେଇଗଲେ । ଅନ୍ୟ ଦିନମାନଙ୍କରେ ମୁଁ ତାଙ୍କ ପାଦଶବ୍ଦ ଶୁଣିପାରେ କିନ୍ତୁ ସେ ଦିନ ଶୁଣି ପାରିଲି ନାହିଁ । ମୁଁ ସମ୍ପୂର୍ଣ୍ଣ ଧ୍ୟାନରେ ମଗ୍ନ ଥିଲି । ସେହି ଦିନମାନଙ୍କରେ ମୁଁ ପୂରାପୂରି ଅଲଗା ଦେଖାଯାଉଥିଲି । ମୁଁ ଅଳଙ୍କାର ପିନ୍ଧୁଥିଲି ଏବଂ ନାଲି ଧଡ଼ିର ଲୁଗା ପିନ୍ଧୁଥିଲି । ସେଦିନ ମୋ ପିଠି ପାଖର ଲୁଗା ପବନରେ ଉଡି ଯାଇଥିଲା । ମୋର ସେଥିପ୍ରତି ଆଦୌ ଚେତା ନଥିଲା । ସେ ବାଟଦେଇ ପୁତ୍ର ଯୋଗେନ୍ (ସ୍ୱାମୀ ଯୋଗାନନ୍ଦ) ଠାକୁରଙ୍କୁ ପାଣିଢ଼ାଳ ଦେବାକୁ ଯାଉଥିଲା ଏବଂ ମୋତେ ସେହି ଅବସ୍ଥାରେ ଦେଖିଥିଲା । ଆହା ! ସେଦିନର ସେହି ଭାବାବସ୍ଥା । ପୂର୍ଣ୍ଣିମା ଦିନ ମୁଁ ଚନ୍ଦ୍ରଙ୍କୁ ଚାହିଁ ରହେ ଏବଂ ପ୍ରାର୍ଥନା କରେ, 'ଚନ୍ଦ୍ରଙ୍କର ସୁଶୀତଳ କିରଣ ପରି ମୋର ହୃଦୟ ପବିତ୍ର ହେଉ । କିମ୍ବା ହେ ପ୍ରଭୁ ! ଚନ୍ଦ୍ରରେ କଳଙ୍କ ଅଛି, ମୋର ମନରେ ଯେପରି ଆଦୌ କଳଙ୍କ ନ ରହେ ।' ଯଦି ଜଣେ ଧ୍ୟାନରେ ସ୍ଥିର ରହେ, ତେବେ ନିଶ୍ଚିତ ଭାବେ ସେ ହୃଦୟରେ ଈଶ୍ୱରଙ୍କୁ ଦେଖିପାରିବ ଏବଂ ତାଙ୍କର ସ୍ୱର ଶୁଣିପାରିବ । ସେହି ମୁହୂର୍ତ୍ତରେ ମନରେ ଯେଉଁ ଭାବ ଉଦ୍ରେକ ହେବ, ତାହା ତତ୍‌କ୍ଷଣାତ୍ ପୂର୍ଣ୍ଣ ହେବ । ତୁମେ ସମ୍ପୂର୍ଣ୍ଣ ଶାନ୍ତିରେ ଅବଗାହନ କରିବ । ଆହା; ସେତେବେଳେ ମୋର କି ମନ । ପରିଚାରିକା ବିନ୍ଦେ ଦିନେ ତମ୍ବାମୁଦ୍ରା ମୋ ଆଗରେ

ପକାଇ ଦେଲେ । ତାହାର ଶବ୍ଦ ମୋ ହୃଦୟକୁ ଭେଦିଗଲା । ଆଧ୍ୟାତ୍ମିକ ଅପରୋକ୍ଷାନୁଭୂତି ହେଲେ ଉପଲବ୍ଧି ହେବଯେ ଯେଉଁ ଈଶ୍ୱର ଜଣକର ହୃଦୟରେ ବାସ କରନ୍ତି, ସେ ମଧ୍ୟ ଅନ୍ୟ ହୃଦୟରେ ବାସ କରନ୍ତି ଏପରିକି ଅଛୁଆଁ, ଅଜାତି, ଦରିଦ୍ର ଓ ନିଷ୍ପେସିତଙ୍କ ମଧ୍ୟରେ । ଏହି ଅନୁଭୂତି ଜଣକୁ ନମ୍ର କରିଥାଏ ।" ଶ୍ରୀମା'ଙ୍କ ଜୀବନରେ ଅନେକ ଏପରି ଘଟଣା ମାନ ଘଟିଛି କିନ୍ତୁ କେବେହେଲେ ସେ ତାହାକୁ ପ୍ରକାଶ କରିବାକୁ ଦେଇ ନାହାନ୍ତି ।

ଯୋଗୀନ୍‌ମା ଶ୍ରୀମା'ସାରଦାଦେବୀଙ୍କର ଆଧ୍ୟାତ୍ମିକ ଭାବର ଏକ ଚିତ୍ର ଦେଇଛନ୍ତି । ଯୋଗୀନ୍‌ମା'ଙ୍କ ଭାଷାରେ, "ଶ୍ରୀମା' ଯେତେବେଳେ ଦକ୍ଷିଣେଶ୍ୱର ଆସିଲେ, ସେ ସମାଧି କ'ଣ ଜାଣି ନଥିଲେ । ଯଦିଓ ସେ ଅତ୍ୟନ୍ତ ନିଷ୍ଠାର ସହିତ ଜପ ଓ ଧ୍ୟାନ ପ୍ରତ୍ୟେକ ଦିନ କରୁଥିଲେ କିନ୍ତୁ କେବେ ସମାଧି ଅବସ୍ଥା ପାଇଥିବାର ଆମେ ଜାଣି ନାହୁଁ । ଅପରପକ୍ଷରେ ଠାକୁରଙ୍କ କୋଠରିରେ ଶୋଇବା ବେଳେ ସେ ଠାକୁରଙ୍କ ସମାଧି ଯିବାରେ ଭୟ ପାଇ ଯାଇଥିଲେ । ମୋର ତାଙ୍କ ସହିତ ଘନିଷ୍ଠତା ହେବା ପରେ ସେ ମୋତେ ଦିନେ କହିଲେ, 'ଦୟା କରି ତୁମେ ଠାକୁରଙ୍କୁ କୁହ । ସେ ମୋତେ କୃପା କଲେ ମୁଁ ସମାଧି ଅନୁଭବ କରିପାରିବି । ଭକ୍ତମାନଙ୍କର ସଦାସର୍ବଦା ଉପସ୍ଥିତି ରହୁଥିବାରୁ, ମୁଁ ଏ ବିଷୟରେ କଥା ହେବାକୁ କ୍ୱଚିତ ସମୟ ପାଇଥାଏ ।' ମୁଁ ଭାବିଲି ଯେ ମୁଁ ତାଙ୍କର ଅନୁରୋଧକୁ କାର୍ଯ୍ୟକାରୀ କରିବାରେ ସହାୟକ ହେବା ଠିକ୍ ହେବ ।"

"ତା'ପର ଦିନ ଠାକୁର ତାଙ୍କ ବିଛଣାରେ ଏକାକୀ ବସିଥାନ୍ତି ଯେତେବେଳେ ମୁଁ ତାଙ୍କ କୋଠରିକୁ ଗଲି । ଯଥାରୀତି ଭାବରେ ତାଙ୍କୁ ପ୍ରଣାମ କଲି ଏବଂ ଶ୍ରୀମା'ଙ୍କର ପ୍ରାର୍ଥନା ତାଙ୍କୁ ଜଣାଇଲି । ସେ ଶୁଣିଲେ କିନ୍ତୁ କୌଣସି ଉତ୍ତର ଦେଲେ ନାହିଁ । ହଠାତ୍ ସେ ଅତ୍ୟନ୍ତ ଗମ୍ଭୀର ହୋଇପଡ଼ିଲେ । ସେପରି ଅବସ୍ଥାରେ ଥିବା ବେଳେ କେହି ତାଙ୍କ ନିକଟରେ ପଦେ କଥା ଉଚ୍ଚାରଣ କରନ୍ତି ନାହିଁ । ତେଣୁ ମୁଁ କୋଠରିରେ କିଛି ସମୟ ବସି ଫେରି ଆସିଲି । ନହବତକୁ ଫେରି ଦେଖିଲି, ଶ୍ରୀମା' ତାଙ୍କର ଦୈନିକ ପୂଜାରେ ବସିଛନ୍ତି । ମୁଁ ଦୁଆରକୁ ଟିକିଏ ଖୋଲିଦେଲି ଏବଂ ଭିତରକୁ ଚାହିଁଲି । ଅତି ଆଶ୍ଚର୍ଯ୍ୟ ଯେ ସେ ବିଲବିଲେଇ ଉଠିଲେ ଏବଂ ପରମୁହୂର୍ତ୍ତରେ କାନ୍ଦିବାକୁ ଲାଗିଲେ । ଏହା କିଛି ସମୟ ଧରି ଚାଲିଲା । କ୍ରମାଗତ ଭାବରେ ଲୁହ ତାଙ୍କ ଗାଲ ଉପର ଦେଇ ବହି ଚାଲିଥିଲା । କ୍ରମଶଃ ସେ ନିଜ ଭିତରେ ନିଜେ ସମାହିତ ହୋଇଗଲେ । ମୁଁ ଜାଣେ ସେ ସମାଧି ଅବସ୍ଥାରେ ଥିଲେ । ମୁଁ ଦୁଆର ବନ୍ଦ କରି ଚାଲି ଆସିଲି ।"

"କିଛି ସମୟ ପରେ, ମୁଁ ପୁନଶ୍ଚ ତାଙ୍କ କୋଠରିକୁ ଗଲି । ସେ ମୋତେ କହିଲେ, 'ତୁମେ କ'ଣ ଠାକୁରଙ୍କ କୋଠରିରୁ ଆସୁଛ ?' ଏବଂ ମୁଁ ଉତ୍ତର ଦେଲି, 'ଏ କିପରି କଥା ତୁମେ କହୁଛ ଯେ ତୁମେ ସମାଧି ଏବଂ ଅନ୍ୟ ଉଚ୍ଚ ଆଧ୍ୟାତ୍ମିକ ଅନୁଭୂତି ଅନୁଭବ କରୁନାହିଁ ବୋଲି ?' ସେ ଚୁପ୍ ରହି ମୁରୁକେଇଲେ । ଏହି ଘଟଣା ପରେ, ମୁଁ କେବେ କେବେ ଦକ୍ଷିଣେଶ୍ୱରରେ ତାଙ୍କ ସହିତ ରାତି ବିତାଏ । ଯଦିଓ ଅନ୍ୟ ବିଛଣାରେ ମୁଁ ଶୋଇବାକୁ ଚାହେଁ, ସେ ତାହା ଶୁଣନ୍ତି ନାହିଁ । ଦିନେ ରାତିରେ କେହି ଜଣେ ବାହାରେ ବଂଶୀ ବଜାଉଥାଏ । ତାହା ଫଳରେ ସେ ଅତି ଉଚ୍ଚ ଆଧ୍ୟାତ୍ମିକ ଭାବକୁ ପ୍ରବେଶ କଲେ । ମଝିରେ ମଝିରେ ହସୁଥାନ୍ତି । ମୁଁ କୁଣ୍ଠାର ସହିତ, ତାଙ୍କ ବିଛଣାରେ ଗୋଟିଏ କୋଣରେ ବସିଲି । ମୁଁ ଭାବିଲି ଯେ ସଂସାରୀ ଲୋକ ହୋଇଥିବାରୁ, ମୋର ତାଙ୍କୁ ସେ ସମୟରେ ଛୁଇଁବା ଠିକ୍ ହେବ ନାହିଁ । ବହୁ ସମୟ ପରେ, ତାଙ୍କର ମନ ସାଧାରଣ ଅବସ୍ଥାକୁ ଆସିଥିଲା ।"

ଆଧ୍ୟାତ୍ମିକ ଅନୁଭୂତିର ସାରାଂଶ ହେଉଛି ଅନ୍ତତଃ ଜୀବନର ପରିବର୍ତ୍ତନ । ବାହ୍ୟିକ ପରିପ୍ରକାଶରେ କିଛି ପରିବର୍ତ୍ତନ ଘଟେ ନାହିଁ । ଶ୍ରୀମା' ସାରଦାଦେବୀ ଏହାକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରି କହିଛନ୍ତି, "ଈଶ୍ୱରଙ୍କୁ ଅପରୋକ୍ଷାନୁଭୂତି କରି ଜଣେ କ'ଣ ପାଏ ? କ'ଣ ତା'ର ଦୁଇଟି ଶିଙ୍ଘ ଉଠେ ? ନା ଆମର ମନ ପବିତ୍ର ହୁଏ ଏବଂ ତାହା ମାଧ୍ୟମରେ ପବିତ୍ର ମନରେ ଜ୍ଞାନୋଦୟ ହୁଏ ।"

ଠାକୁର ଶ୍ରୀ ରାମକୃଷ୍ଣ ଶ୍ରୀମା'ଙ୍କୁ ଦୈନନ୍ଦିନ ଜୀବନର ଚଳନୀ ସଂପର୍କରେ ଶିକ୍ଷା ଦେଇଛନ୍ତି । ବିଭିନ୍ନ ବ୍ୟବହାର୍ଯ୍ୟ ଜିନିଷକୁ କିପରି ସଜାଡ଼ି ରଖିବ, ପରିବା କାଟିବା, ପାନ ଭାଙ୍ଗିବା, ରୋଷେଇ କରିବା ଏବଂ ଘରର ଯାବତୀୟ କାମ ପ୍ରତି ନିଘା ଦେବା ଉପରେ ସେ ଗୁରୁତ୍ୱ ଦେଇ କିପରି କରିବାକୁ ହୁଏ, ତାହା ବତେଇଛନ୍ତି । ଡଙ୍ଗାରେ କିମ୍ୱା ଗାଡ଼ିରେ ଯିବାବେଳେ ପ୍ରଥମେ ଚଢ଼ିବ ଓ ସବାଶେଷରେ ଓହ୍ଲାଇବ କାରଣ ଏହାଦ୍ୱାରା ସବୁଜିନିଷ ଆସିଲା କି ନାହିଁ, ତାହା ଜାଣି ପାରିବ । ସମୟ, ସ୍ଥାନ, ପରିସ୍ଥିତି ଏବଂ ଯେଉଁ ଲୋକମାନଙ୍କ ସହିତ କାର୍ଯ୍ୟ କରିବାକୁ ହେବ, ସେସବୁ ସହିତ ନିଜକୁ ଖାପ ଖୁଆଇ ପାରି କାର୍ଯ୍ୟ କଲେ ଜଣକର ସାମାଜିକ ସଂପର୍କର ସଫଳତା ନିର୍ଭର କରେ । ସମସ୍ତେ ରକ୍ତ ମାଂସରେ ଗଢ଼ା ମଣିଷ କିନ୍ତୁ ସମସ୍ତଙ୍କର ମନ ଭିନ୍ନ ଭିନ୍ନ । ତେଣୁ ନିଜର ବନ୍ଧୁ ଓ ସହଯୋଗୀ କିଏ ହେବ, ତାହାକୁ ସାବଧାନର ସହ ଠିକ୍ କରିବା ଉଚିତ୍ । ନିଜ ସ୍ୱଭାବ ଓ ଶ୍ରୀରାମକୃଷ୍ଣଙ୍କ ଶିକ୍ଷା ପ୍ରଭାବରୁ ଶ୍ରୀମା' ପ୍ରକୃତରେ "ଯେତେବେଳେ ଯେମିତି ସେତେବେଳେ ସେମିତି, ଯେଉଁଠାରେ ଯେମିତି, ସେହିଠାରେ ସେମିତି, ଯାହାକୁ ଯେମିତି, ତାହାକୁ ସେମିତି" ଏହି ଉକ୍ତିଟିକୁ ଜୀବନର

ପ୍ରତ୍ୟେକ କର୍ମରେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

ଠାକୁର ଶ୍ରୀମା' ସାରଦାଙ୍କୁ ଆଧ୍ୟାତ୍ମିକ ଓ ବ୍ୟାବହାରିକ ଜୀବନ କିପରି ନିର୍ବାହ କରିବାକୁ ହେବ, ତାହାକୁ ଟିକିନିଖି ଶିକ୍ଷା ଦେଇ ତାଙ୍କର ମହନୀୟ ଉଦ୍ଦେଶ୍ୟକୁ ସେ ସଫଳ କରିବା ପାଇଁ ପ୍ରସ୍ତୁତ କରିଛନ୍ତି । ଦକ୍ଷିଣେଶ୍ୱରଠାରେ ଶ୍ରୀମା' ସାରଦାଦେବୀ ପ୍ରାୟ ୧୩ ବର୍ଷ ରହିଥିଲେ । ଅବଶ୍ୟ ମଝିରେ ମଝିରେ କିଛି ସମୟ ପାଇଁ ଜୟରାମବାଟୀ ଯାଇଥିଲେ । ଏହି ସମୟ ମଧ୍ୟରେ ତାଙ୍କର ଅଭୂତପୂର୍ବ ଆଧ୍ୟାତ୍ମିକ ଉନ୍ନତି ଘଟିଥିଲା । ଦକ୍ଷିଣେଶ୍ୱରଠାରେ ଥିବାବେଳେ ସେ ନହବତରେ ରହୁଥିଲେ । ନିହାତି ଛୋଟିଆ ଘରଟିଏ । ଉପର ମହଲା କୋଠରିରେ ରହୁଥିଲେ ଶ୍ରୀ ରାମକୃଷ୍ଣଙ୍କର ଜନ୍ମଦାତ୍ରୀ ମାଁ । ଏହି କ୍ଷୁଦ୍ର କୋଠରିଟି ସଂପର୍କରେ ଶ୍ରୀମା' କହନ୍ତି, "କୋଠରିଟି ଏତେ ଛୋଟ ଯେ ପ୍ରଥମେ ପ୍ରଥମେ ଦୁଆର ବନ୍ଧରେ ମୋର ମୁଣ୍ଡ ବାଜିଯାଏ । ତା'ପରେ ମୋର ଏହା ଅଭ୍ୟାସରେ ପଡ଼ିଗଲା । ମୁଁ ଦୁଆର ମୁହଁକୁ ଯିବାମାତ୍ରେ ମୁଣ୍ଡ ଆପଣା ଛାଏଁ ନଇଁ ପଡ଼େ । ବହୁ ସମ୍ଭ୍ରାନ୍ତ ବଂଶୀୟ ଭଦ୍ରମହିଳା କଲିକତାରୁ ଆସନ୍ତି । ସେମାନେ ଘର ଭିତରକୁ ପଶି ପାରନ୍ତି ନାହିଁ । ସେମାନେ ଦୁଆର ମୁହଁରେ ଛିଡ଼ା ହୁଅନ୍ତି ଏବଂ ବନ୍ଧକୁ ଧରି ନଇଁ କରି ଚାହାଁନ୍ତି । ଏବଂ ମୋତେ ଉଦ୍ଦେଶ୍ୟ କରି କହନ୍ତି, 'ଆହାଃ, ଆମର ଏଇ ସୁନାଝିଅଟି ପାଇଁ କେଡ଼େ ଛୋଟିଆ ଘରଟିଏ । ସୀତାଙ୍କ ପରି ସେ ବନବାସରେ ରହିଛନ୍ତି ।"

ଠାକୁର ତାଙ୍କର ନହବତରେ ରହିବା ଦ୍ୱାରା ଅସୁବିଧା ହେଉଥିବା ସଂପର୍କରେ ସଚେତନ ଥିଲେ ମଧ୍ୟ କିଛି କରିପାରନ୍ତି ନାହିଁ । କାରଣ ତାଙ୍କୁ ସଦାସର୍ବଦା ସବୁ ବ୍ୟକ୍ତିଗତ ସୁବିଧା ଯୋଗାଇ ଦେଉଥିବା ରାଣୀ ରାସମଣିଙ୍କର ଜ୍ୱାଇଁ ମଥୁର ନାଥଙ୍କର ସେତେବେଳକୁ ଦେହାନ୍ତ ହୋଇଯାଇଥାଏ । ମଥୁରନାଥ ବଞ୍ଚି ଥିବାବେଳେ ଶ୍ରୀମା' ସାରଦା ଦକ୍ଷିଣେଶ୍ୱର ଯାଇଥିଲେ, ସେ ତାଙ୍କର ସମସ୍ତ ସୁବିଧା ନିଶ୍ଚିତ ଭାବେ କରି ଦେଇଥାନ୍ତେ । ମନ୍ଦିର ମଧ୍ୟରେ ଶ୍ରୀମା'ଙ୍କର ରହିବା ପାଇଁ ସେପରି କୌଣସି ଘର ମଧ୍ୟ ନଥାଏ । ସେ ତ କେବେହେଲେ ଲୋକମାନଙ୍କ ସମ୍ମୁଖକୁ ଆସନ୍ତି ନାହିଁ । ଏପରିକି ଠାକୁରଙ୍କ ସମ୍ମୁଖରେ ମୁଣ୍ଡରେ ଲମ୍ବା ଓଢ଼ଣା ଥାଏ । ଭୋର ୩ଟାରୁ ୪ଟା ମଧ୍ୟରେ ତାଙ୍କର ଦୈନନ୍ଦିନ କାର୍ଯ୍ୟ ଆରମ୍ଭ ହୁଏ । ସେ ଅତି ପ୍ରତ୍ୟୁଷରୁ ଯାଇ ଗଙ୍ଗାରେ ନିଜର ଗାଧୋଇବା କାର୍ଯ୍ୟ ଶେଷ କରନ୍ତି । ଥରେ ଗଙ୍ଗାକୁ ଅନ୍ଧାରରେ ଗାଧୋଇବାକୁ ଯିବାବେଳେ ଗୋଟିଏ କୁମ୍ଭୀର ହାବୁଡ଼ରେ ପଡ଼ିଥାନ୍ତେ । ଏହା ଶୁଣି ଠାକୁର ତାଙ୍କୁ ଲଣ୍ଠନ ନେଇ ଯିବାକୁ କହିଥିଲେ । ସେଇ ଯେ ଗାଧୋଇ ସାରି ଫେରନ୍ତି, ନହବତର ସେଇ କୋଠରି ଭିତରୁ ତାଙ୍କୁ ବାହାରକୁ ବାହାରିବାର କେହି ଦେଖିନାହିଁ । ଏପରିକି

ତାଙ୍କର ଘନ ଆର୍ଦ୍ର କେଶରାଶିକୁ ଶୁଖାଇବାକୁ ସେ ମଧ ପଦାକୁ ବାହାରନ୍ତି ନାହିଁ । ଦ୍ୱିପହର ୧ଟାବେଳେ, କେହି ନଥିବା ସମୟରେ ସେ ନହବତ ବାରଣ୍ଡାରେ ବସି ଓଦାବାଳକୁ ଶୁଖାନ୍ତି । ସେ ନିଜେ କହିଛନ୍ତି, "ମନ୍ଦିରର ପରିଚାଳକ କହନ୍ତି ଯେ, 'ଆମ୍ଭେମାନେ ସେ ସେଠାରେ ରହିଥିବାର ଶୁଣିଛୁ କିନ୍ତୁ ଆମ୍ଭେମାନେ କେବେ ହେଲେ ଦେଖିନାହୁଁ ।"

ତାଙ୍କର ଏହିପରି ସରଳତା ଓ ସଂଯମତାକୁ ଠାକୁର ଉଚ୍ଚ ପ୍ରଶଂସା କରନ୍ତି । ଏ ସଂପର୍କରେ ଥରେ ଠାକୁର କହିଥିଲେ, "ପ୍ରିୟ ହୃଦୟ, ସେ (ସାରଦା) ଯେତେବେଳେ ଏଠାକୁ ପ୍ରଥମେ ଆସିଲେ ମୁଁ ଭାରୀ ଚିନ୍ତିତ ଥିଲି, ସେ ମଫସଲରୁ ଆସିଛନ୍ତି ଓ ସହର ସଂପର୍କରେ ତାଙ୍କର କିଛି ଧାରଣା ନାହିଁ ।" ଶ୍ରୀମା' ମଧ ସହରୀ ଜୀବନ ସଂପର୍କରେ ନିଜର ଅନୁଭୂତି ବର୍ଣ୍ଣନା କରିଛନ୍ତି, "ମୁଁ କଲିକତା ଆସିବା ପୂର୍ବରୁ ପାଣି ଟ୍ୟାପ୍ ଦେଖି ନଥିଲି । ଦିନେ ଗୋଟିଏ ଘରକୁ ପଶିଗଲି ଯେଉଁଠି ଟ୍ୟାପ୍ ଥିଲା । ମୁଁ ତାକୁ ଖୋଲିଦେଲି । ପାଣି ବାହାରିବା ପୂର୍ବରୁ ହସ୍ ହସ୍ ଶବ୍ଦ ହେଲା । ଯେମିତି ସାପ ଶବ୍ଦ କରେ । ମୁଁ ଭୟରେ ଡରିଗଲି ଓ ଘରୁ ଦୌଡ଼ି ପଳାଇ ଆସିଲି । ମୁଁ ଘରର ଅନ୍ୟ ସ୍ତ୍ରୀ ଲୋକଙ୍କ ପାଖକୁ ଆସିଲି ଏବଂ ଚିତ୍କାର କରି କହିଲି, 'ପାଣି ପାଇପ୍ ଭିତରେ ସାପ ଅଛି । ସେ ସଁ ସଁ ଶବ୍ଦ କରୁଛି । ସେମାନେ ମୋ କଥାଶୁଣି ହସିଲେ ଏବଂ କହିଲେ, 'ସେଠାରେ କୌଣସି ସାପ ନାହିଁ । ଆଦୌ ଭୟ କର ନାହିଁ । ପାଣି ବାହାରିବା ପୂର୍ବରୁ ପାଣି ପାଇପଭିତରୁ ସେପରି ସଁ ସଁ ଶବ୍ଦ ହୁଏ ।' ତା'ପରେ ଆମେ ସବୁ ହସି ହସି ବେଦମ୍ ହୋଇଗଲୁ । ପେଟ ବଥା ହୋଇଗଲା ।"

ଠାକୁର କହୁଥିଲେ, "ମଫସଲରୁ ଆସିଥିବାରୁ ମୁଁ ଭାବିଥିଲି ଲୋକମାନେ ତାର ଚାଲିଚଳଣକୁ ସମାଲୋଚନା କରିବେ । ଏବଂ ଆମ୍ଭମାନଙ୍କୁ ଅପମାନିତ ଲାଗିବ । କିନ୍ତୁ ସେ ଏତେ ଆଶ୍ଚର୍ଯ୍ୟ ଜନକ ଭାବେ ନିଜକୁ ଅନ୍ୟମାନଙ୍କ ଠାରୁ ଲୁଚାଇ ରଖୁଥିଲେ ।" ଏହା କହିବା ଅର୍ଥ ନୁହେଁ ଯେ ଠାକୁର ସ୍ତ୍ରୀଲୋକମାନେ ପର୍ଦ୍ଦା ଭିତରେ ରହନ୍ତୁ ବୋଲି ଚାହୁଁଥିଲେ ଏବଂ କୌଣସି କାର୍ଯ୍ୟରେ ଭାଗ ନିଅନ୍ତୁ ନାହିଁ ବୋଲି ଇଚ୍ଛା କରୁଥିଲେ । ଏପରିକି ଠାକୁରଙ୍କର ମହିଳାଭକ୍ତ ଲକ୍ଷ୍ମୀଦିଦି, ଗୋଲାପ ମା', ଗୌରୀ-ମା' ପ୍ରଭୃତି ଆଦୌ ଲଜ୍ଜାଶୀଳା ନଥିଲେ ଏବଂ ବିଭିନ୍ନ ଆନୁଷ୍ଠାନିକ କାର୍ଯ୍ୟରେ ଭାଗ ନେଉଥିଲେ । ଏପରିକି ଗୌରୀ-ମା' ସ୍ତ୍ରୀଲୋକଙ୍କ ପାଇଁ ଗୋଟିଏ ମହିଳା ଶିକ୍ଷାନୁଷ୍ଠାନ ଖୋଲିଥିଲେ । ଲକ୍ଷ୍ମୀ ଦିଦିଙ୍କ ସଂପର୍କରେ ଶ୍ରୀମା' କହୁଥିଲେ, "ଲକ୍ଷ୍ମୀ ଠାକୁରଙ୍କ ସମ୍ମୁଖରେ ବାଦ୍ୟ ଯନ୍ତ୍ରୀଙ୍କ ପରି ଗୀତ ବୋଲେ ଓ ନାଚେ । ଠାକୁର ମୋତେ କହନ୍ତି, "ଏହା ତାଙ୍କର ସ୍ୱଭାବ କିନ୍ତୁ ତୁମେ ତାଙ୍କୁ ଅନୁକରଣ କର ନାହିଁ, କାରଣ ଏହା

ଦ୍ୱାରା ତୁମର ନମନୀୟତା ନଷ୍ଟ ହେବ ।" ଠାକୁର କହୁଥିଲେ, "ମୁଁ ତାଙ୍କୁ କେବେହେଲେ ଧୁଆ ଧୋଇ ହେବା ବା ଅନ୍ୟ କୌଣସି କାର୍ଯ୍ୟପାଇଁ ବାହାରକୁ ଯିବାର ଦେଖିନାହିଁ ।" "ଏହି ମନ୍ତବ୍ୟ ଶୁଣିବା ପରେ, ମୁଁ ନିଜ ସଂପର୍କରେ ସଚେତନ ହେଲି । ମୁଁ ଜାଣେ ଯେ ତାଙ୍କ ମନ ଭିତରେ ଯେଉଁ ଭାବନା ଦେଖାଦେବ, ତାହା ଘଟିବ । ମୁଁ ଅତି ନିଷ୍ଠାର ସହ ଶ୍ରୀମା' ଜଗଦମ୍ବାଙ୍କୁ ପ୍ରାର୍ଥନା କରେ, 'ହେ ଦିବ୍ୟଜନନୀ, ମୋର ଏହି ନମନୀୟତାକୁ ଦୟାକରି ସୁରକ୍ଷିତ କରନ୍ତୁ ।"

ଠାକୁର କିନ୍ତୁ ସଦାସର୍ବଦା ଏହି ଅନ୍ଧାରୁଆ କୋଠରିଟି ଭିତରେ ଶ୍ରୀମା' ରୁହନ୍ତୁ ବୋଲି ଚାହୁଁ ନଥିଲେ । ସେଠାରେ ରହି ତାଙ୍କର ଗୋଡ଼ରେ ଆଣ୍ଠୁଦରଜ ଆରମ୍ଭ ହେଲା । ସେ କହୁଥିଲେ, "ନହବତର ବାରଣ୍ଡା ଚାରିକଡ଼େ ଘେରା ହୋଇଥିବା ପରଦା ପଛରେ ଛିଡ଼ା ହୁଏ ଏବଂ ଠାକୁରଙ୍କୁ ପରଦା କଣାରେ ଗାଉଥିବାର ଓ ଭାବସ୍ଥ ହେଉଥିବାର ଦେଖେ । ବହୁ ସମୟ ଧରି ଏଇମିତି ଛିଡ଼ା ହେବା ହେତୁ ମୋର ଆଣ୍ଠୁ ଦରଜ ହେଲା ।" ଠାକୁର ଶ୍ରୀମା'ଙ୍କର ସ୍ୱାସ୍ଥ୍ୟ ଖରାପ ନ ହେଉ ଏଥିପ୍ରତି ନଜର ଦେଉଥିଲେ । ଶ୍ରୀମା କହୁଥିଲେ, "ଠାକୁର କହନ୍ତି ବଣ ଚଢ଼େଇଟି ଦିନରାତି ପଞ୍ଜୁରୀ ଭିତରେ ରହି ଆଣ୍ଠୁ ଗଣ୍ଠି ବାତ ଧରିଲାଣି । ତେଣୁ ତୁମେ ପଡୋଶୀରେ ଚଲାବୁଲା କର । ଖରାବେଳେ ସମସ୍ତେ ଖାଇପିଇ ବିଶ୍ରାମ ନେବାବେଳେ ଠାକୁର ପଞ୍ଚବଟୀକୁ ଯାଇ ଦେଖିବେ ପଡ଼ୋଶାରେ କେହି ବାହାରେ ଅଛନ୍ତି କି । ଯଦି ନଥିବେ ତେବେ ମୋତେ କହିବେ, 'ବର୍ତ୍ତମାନ ବାହାରକୁ ଯାଅ କେହି ନାହାଁନ୍ତି ।' ସେ ତାଙ୍କ କୋଠରିର ବାହାରେ କିଛି ସମୟ ଛିଡ଼ା ହେବେ ଏବଂ ମୁଁ ପଛ ଫାଟକ ଦେଇ ବାହାରକୁ ଯିବି ଏବଂ ରାମଲାଲ୍ ଘର ନିକଟରେ ଥିବା ଘର ମାନଙ୍କୁ ଯାଇ ସ୍ତ୍ରୀଲୋକମାନଙ୍କୁ ଭେଟିବି । ସେମାନଙ୍କ ସହିତ ଦିନର ଅବଶିଷ୍ଟ ସମୟ କଥାବାର୍ତ୍ତାରେ କଟାଇ, ସନ୍ଧ୍ୟା ପୂର୍ବରୁ ଫେରି ଆସିବି ଯେତେବେଳେ ଲୋକମାନେ ମନ୍ଦିରକୁ ଆରତ୍ରୀ ଦର୍ଶନ କରିବାକୁ ଆସିବାକୁ ଆରମ୍ଭ କରନ୍ତି ।"

ଶ୍ରୀମା'ଙ୍କର ଏହି ଅସୁବିଧାକୁ ଲକ୍ଷ୍ୟ କରି ଶମ୍ଭୁ ମଲ୍ଲିକ ୨୫୦ ଟଙ୍କା ଦେଇ ଖଣ୍ଡିଏ ଜାଗା ଲିଜ୍‌ରେ ନେଇ ଗୋଟିଏ ଘର ତିଆରି କଲେ । ଏହି ଘର ପାଇଁ ନେପାଳ ସରକାରଙ୍କର କଲିକତାରେ ଥିବା ଏଜେଣ୍ଟ କ୍ୟାପଟେନ୍ ବିଶ୍ୱନାଥ ଉପାଧ୍ୟାୟ କାଠ ଯୋଗାଇ ଦେଲେ । ଏହି ଘରେ ଶ୍ରୀମା' ପ୍ରାୟ ବର୍ଷେକାଳ ରହିଥିଲେ । ସେଠାରେ ଶ୍ରୀମା' ଠାକୁରଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରନ୍ତି ଏବଂ ଠାକୁରଙ୍କୁ ଆଣି ଖାଇବାକୁ ଦିଅନ୍ତି । ଦିନେ ଦିନେ ଠାକୁର ଶ୍ରୀମା'ଙ୍କ ଘରକୁ ଯାଇ ତାଙ୍କର ଖବର ଅନ୍ତର ବୁଝନ୍ତି । ସନ୍ଧ୍ୟାପୂର୍ବରୁ ଫେରି ଆସନ୍ତି । ଦିନେ ଭୟଙ୍କର ବର୍ଷା ହେବାରୁ ଠାକୁର ଫେରି

ନପାରି ସେଠାରେ ରହି ଯାଉଥିଲେ । ଶ୍ରୀମାଙ୍କର ଦୈନନ୍ଦିନ କାର୍ଯ୍ୟ ଥିଲା ଠାକୁରଙ୍କ ପାଇଁ ରୋଷେଇ କରିବା । ଶ୍ରୀମା' ଠାକୁରଙ୍କର ମା' ଚନ୍ଦ୍ରାଦେବୀଙ୍କର ସେବାଯତ୍ନରେ କୌଣସି ତ୍ରୁଟି କରୁନଥିଲେ । ତାଙ୍କ ଡାକ ଶେଷହେବା ପୂର୍ବରୁ ସେ ପହଞ୍ଚି ଯାଉଥିଲେ ତାଙ୍କ ପାଖରେ । ଠାକୁରଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିବା ସଂପର୍କରେ ଶ୍ରୀମା' କହନ୍ତି, "ମୁଁ ଠାକୁରଙ୍କ ପାଇଁ ରାନ୍ଧେ । ତାଙ୍କର ହଜମ କରିବାର ଶକ୍ତି ବହୁତ କମ୍ । ତେଣୁ ସେ କାଳୀମନ୍ଦିରରେ ଅର୍ପଣ ହେଉଥିବା ନୈବେଦ୍ୟକୁ ଗ୍ରହଣ କରିପାରନ୍ତି ନାହିଁ । ମୋତେ ମଧ ଠାକୁରଙ୍କର ଭକ୍ତମାନଙ୍କ ପାଇଁ ରୋଷେଇ କରିବାକୁ ହୁଏ । ଲାଟୁ ତାଙ୍କ ସହିତ ରହେ । ରାମ ଦତ୍ତ ସହିତ ତାହାର ଝଗଡ଼ା ହେବା ପରଠାରୁ ସେ ସେଠାରୁ ପଳାଇ ଆସିଲା । ଠାକୁର ମୋତେ କହିଲେ, 'ସେ ଗୋଟିଏ ଉତ୍ତମ ବାଳକ । ସେ ତୁମ ପାଇଁ ଅଟାଚକଟି ଦେବ ।' ମୋତେ ରାତିଦିନ ରୋଷେଇ କରିବାକୁ ପଡ଼େ । ରାମଦତ୍ତ ଆସିଲେ, ସେ ପାଟି କରିବ । 'ମୋର ଆଜି ରୁଟି ଏବଂ ମୁଗ ଡାଲି ଦରକାର ।' ମୁଁ ତତ୍‌କ୍ଷଣାତ୍ ରୋଷେଇ କରିବାକୁ ଆରମ୍ଭ କରେ । ମୋତେ ୩/୪ ସେର ଅଟାର ରୁଟି କରିବାକୁ ହୁଏ । ରାଖାଲ ଥିବାବେଳେ ମୁଁ ତା' ପାଇଁ ଖେଚୁଡ଼ି ପ୍ରସ୍ତୁତ କରେ । ଦିନେ ଠାକୁର ମୋତେ ନରେନ୍ ପାଇଁ ଖୁବ୍ ଭଲ ରାନ୍ଧିବାକୁ କହିଲେ । ମୁଁ ମୁଗଡ଼ାଲି ଏବଂ ରୁଟି କଲି । ରୋଷେଇ ସରିବା ପରେ ଠାକୁର ନରେନ୍‌କୁ ଡାକିଲେ, 'ତୁମକୁ କେମିତି ଖାଇବା ଲାଗିଲା ?' 'ଖୁବ୍ ଭଲ କିନ୍ତୁ ଏହା ରୋଗୀର ପଥ୍ୟ ।' ଏହା ଶୁଣି ଠାକୁର ମୋତେ କହିଲେ, 'ତୁମେ କେଉଁ ପ୍ରକାର ଜିନିଷରେ ତା' ପାଇଁ ରୋଷେଇ କରିଥିଲ ? ତୁମେ ତା' ପାଇଁ ମୋଟା ଡାଲି ଓ ମୋଟା ରୁଟି ତିଆରି କରିବ ।' ମୁଁ ତା' ପାଇଁ ସେପରି ତିଆରି କଲି ଓ ସେ ଖାଇକରି ଖୁସି ହେଲା । ସୁରେନ୍ ମିତ୍ର ଭକ୍ତମାନଙ୍କର ଖର୍ଚ୍ଚପାଇଁ ମାସକୁ ଦଶଟଙ୍କା ଦିଅନ୍ତି । ବୁଢ଼ା ଗୋପାଳ ବଜାର କରନ୍ତି । ଦିନ ଓ ରାତି ତମାମ ନାଚ, ଗୀତ, ଭାବ ସମାଧି ଇତ୍ୟାଦି ଚାଲେ । ମୁଁ ବାଉଁଶ ତିଆରି ପରଦାରେ କଣାଟିଏ କରିଦେଇଥାଏ, ତାହା ଫଳରେ ମୁଁ ସବୁ ଦେଖି ପାରିବି । ସେଠାରେ ଦୀର୍ଘ ସମୟ ଛିଡ଼ା ହେବାର ଫଳ ହେଲା ମୋର ଏଇ ଆଣ୍ଠୁଗଣ୍ଠି ବାତ ।"

ଦକ୍ଷିଣେଶ୍ୱର ଠାରେ ଶ୍ରୀମା'ଙ୍କର ପ୍ରତ୍ୟେକ ଦିନର କାର୍ଯ୍ୟ ଥିଲା ନିରବଚ୍ଛିନ୍ନ ସେବା ଓ ଧ୍ୟାନ । ସେ ପ୍ରାତଃ ୩ଟାରୁ ୪ଟା ମଧ୍ୟରେ ଉଠି ଗଙ୍ଗାରେ ସ୍ନାନ କରନ୍ତି ଏବଂ ପୂଜା ଓ ଧ୍ୟାନରେ ସକାଳ ସମୟଟିକୁ ବିତାନ୍ତି । କାରଣ ଠାକୁର ଧ୍ୟାନ ଉପରେ ସବୁବେଳେ ଗୁରୁତ୍ୱ ଦେଇଥାନ୍ତି । ତା'ପରେ ଆରମ୍ଭ ହୁଏ ତାଙ୍କର ରୋଷେଇ । ଯଦି ଠାକୁରଙ୍କ ନିକଟରେ କେହି ଭକ୍ତ ଉପସ୍ଥିତ ନଥାନ୍ତି, ତେବେ ସେ ଠାକୁରଙ୍କ ଦେହରେ

ତେଲ ଘଷନ୍ତି । ଠାକୁର ଗାଧୋଇ ସାରିବା ପରେ ତାଙ୍କ ପାଇଁ ପାନ ପ୍ରସ୍ତୁତ କରନ୍ତି । ଖାଦ୍ୟ ପରିବେଷଣ କରନ୍ତି ଏବଂ ଠାକୁରଙ୍କ ଖାଇବା ଶେଷ ପର୍ଯ୍ୟନ୍ତ ତାଙ୍କ ନିକଟରେ ଠିଆ ହୋଇ ଲଘୁ ହାସ୍ୟରସର କଥାବାର୍ତ୍ତା କରନ୍ତି ଯାହାଦ୍ୱାରା ଠାକୁର ଖାଇବା ବେଳେ ଯେପରି ସମାଧିସ୍ଥ ନ ହୁଅନ୍ତି । ସେ ଠାକୁରଙ୍କୁ କିପରି ଖୁଆନ୍ତି, ତାହା ଜଣେ ଭକ୍ତଙ୍କୁ ନିଜ ମୁହଁରେ କହିଛନ୍ତି । "ଠାକୁର ଯେତେବେଳେ ଅସୁସ୍ଥ ଥିଲେ, କୁମାରଟୁଲିର ଡାକ୍ତର ଗଙ୍ଗାପ୍ରସାଦ ସେନଙ୍କ ସହିତ ପରାମର୍ଶ କରାଗଲା । ଡାକ୍ତର ତାଙ୍କୁ ଔଷଧ ଦେବାକୁ କହିଲେ ଏବଂ ପାଣି ପିଇବାକୁ ମନା କଲେ । ଠାକୁର ଏହାଶୁଣି ପଚାରିବାକୁ ଲାଗିଲେ, 'ଠିକ୍ ଅଛି, ବିନା ପାଣିରେ ମୁଁ କ'ଣ ବଞ୍ଚିପାରିବି ?' ଯେମିତି ପାଞ୍ଚବର୍ଷର ଶିଶୁଟି ବାରମ୍ବାର ପଚାରେ, ଠିକ୍ ସେହିପରି । ସମସ୍ତଙ୍କର କିନ୍ତୁ ସେଇ ଗୋଟିଏ ଉତ୍ତର 'ହଁ ମହାଶୟ ।' ପରେ ମୋତେ ପଚାରିଲେ । ମୁଁ ତାଙ୍କୁ 'ତୁମେ ପାରିବ' ବୋଲି କହିଲି । ଠାକୁର ଶେଷକୁ ତାଙ୍କ ମନକୁ ସ୍ଥିର କଲେ ଏବଂ ପାଣି ପିଇଲେ ନାହିଁ । ଔଷଧ ଖାଇଲେ । ମୁଁ ପ୍ରତ୍ୟେକ ଦିନ ତାଙ୍କୁ ୩/୪ସେର କ୍ଷୀର ପିଇବାକୁ ଦେଉଥିଲି । ତାପରେ ୫/୬ ସେର । ମନ୍ଦିର ଗାଈମାନଙ୍କୁ ଯେଉଁ ଗଉଡ଼ ଦୁହୁଁଥିଲା, ସେ ମୋତେ ଅଧିକ ପରିମାଣର କ୍ଷୀର ଦେଉଥିଲା । ସେ ମୋତେ କହିବ, "ମୁଁ ଯଦି ସବୁ କ୍ଷୀରକୁ ମନ୍ଦିର ପୁରୋହିତଙ୍କୁ ଦେଇଦିଏ, ସେ ପୂଜା ସରିବା ପରେ ତାହାକୁ ଘରକୁ ନେଇଯିବ ଓ ଅନ୍ୟ କାହାକୁ ଦେଇଦେବ । କିନ୍ତୁ ଏଠାରେ ଦେଲେ, ଠାକୁରଙ୍କର କାର୍ଯ୍ୟରେ ଲାଗିବ ।' ସେ ମୋତେ ୫ରୁ ୬ ସେର କ୍ଷୀର ଦିଏ । ସେ ଅତି ଉତ୍ତମ ମଣିଷ । ଠାକୁରଙ୍କ ପ୍ରତି ଅମାପ ଭକ୍ତି । ମୁଁ ତାଙ୍କୁ ମିଠାଇ ଦିଏ । ମୁଁ ସେହି ଦୁଧକୁ ଫୁଟେଇ ଫୁଟେଇ ସେରେ/ଦେଢ଼ସେର କରିଦିଏ । ଠାକୁର ମୋତେ ପଚାରିବେ, 'କେତେ କ୍ଷୀର ଅଛି ?' ମୁଁ କହିବି, 'ସେରେ ପାଞ୍ଚପା' ହେବ ।' ସେ ମନ୍ତବ୍ୟ ଦେବେ, 'ବୋଧହୁଏ ବେଶୀ । ଏତେ ମୋଟା ସର ପଡ଼ିଛି ।'

'ଦିନେ ଗୋଲାପମା' ସେଠାରେ ଉପସ୍ଥିତ ଥିଲେ । ସେ ତାଙ୍କୁ ପଚାରିଲେ, 'ସେଠାରେ କେତେ କ୍ଷୀର ଅଛି ?' ସେ ସତ କଥା କହିଲା । 'ବହୁତ କ୍ଷୀର, ସେଇଥିପାଇଁ ମୋର ଅଜୀର୍ଣ୍ଣ ହେଉଛି । ଡାକୁ ଡାକ । ଡାକୁ ଡାକ ।' ମୁଁ ଭିତରକୁ ଆସିଲି । ଗୋଲାପ କ'ଣ କହିଲା, ସେ କଥା ମୋତେ କହିଲେ । ମୁଁ ତାଙ୍କୁ ଶାନ୍ତ କରି କହିଲି, 'ଓହୋ ! ଗୋଲାପକୁ ମାପିବା ଜଣାନାହିଁ । ଏହି ପାତ୍ରରେ କେତେ ଧରିବ, ସେ କିପରି ଜାଣିବ ?'

'ଆଉ ଦିନେ ସେ ଗୋଲାପକୁ କ୍ଷୀର ସଂପର୍କରେ ପଚାରିଲେ ଏବଂ ସେ ଉତ୍ତର ଦେଲା, 'ଗୋଟିଏ ପୂରା କଂସା ଏଠାରୁ, ଆଉ ଗୋଟିଏ କାଳୀ ମନ୍ଦିରରୁ ।' ଏହା

ଶୁଣି ଠାକୁର ଚିନ୍ତିତ ହେଲେ । ସେ ମୋତେ ଡକାଇ ପଠାଇ ପ୍ରକୃତରେ କେତେ ପା' ଓ ଛଟାଙ୍କି କ୍ଷୀର ରହିଛି ପଚାରିଲେ । ମୁଁ ତାଙ୍କୁ କହିଲି, 'ମୁଁ ପା' ଓ ଛଟାଙ୍କି ଜାଣେ ନାହିଁ । ତୁମେ ତ କ୍ଷୀର ପିଇବ । ଏତେ ମପାମପିରୁ କ'ଣ ଅଛି ?' ମୋ କଥାରେ ସେ ସନ୍ତୁଷ୍ଟ ହେଲେ ନାହିଁ । ସେ କହିଲେ, 'ଏତେ ଗୁଡ଼େ କ୍ଷୀର ମୁଁ କ'ଣ ହଜମ କରି ପାରିବି ? ମୋର ବଦହଜମି ହେବ ।' ସେଦିନ ସତକୁ ସତ ତାଙ୍କର ବଦହଜମି ହେଲା । ସେଦିନ ରାତିରେ ସେ କିଛି ଖାଇଲେ ନାହିଁ କେବଳ ଟିକିଏ ସାଗୁପାଣି ପିଇଲେ ।'

'ଏହା ପରେ ଗୋଲାପ ମା' ମୋତେ କହିଲେ, 'ହଁ, ମା', ମୋତେ ଆଗରୁ ଟିକିଏ ଏକଥା କହି ଦେଇଥାନ୍ତ । ମୁଁ କିପରି ଜାଣିବି ? ତାଙ୍କର ସନ୍ଧ୍ୟାବେଳେ ଖାଇବା ହେଲାନାହିଁ ।' ତାହାର ଉତ୍ତରରେ ମୁଁ କହିଲି, 'ଖୋଇବା ପାଇଁ ମିଛକଥା କହିଲେ କିଛି ଭୁଲ ନାହିଁ ।' ମୁଁ ତାଙ୍କୁ ଖାଇବାକୁ ବାଧ୍ୟ କଲି । 'ଏହିପରି ଭାବରେ ତାଙ୍କର ସ୍ୱାସ୍ଥ୍ୟ ଭଲ ହେବାକୁ ଲାଗିଲା ଓ ସେ ରୋଗମୁକ୍ତ ହେଲେ ।' ଦିନେ ଠାକୁର ମା'ଙ୍କୁ କହିଲେ, 'ତୁମ ରୋଷେଇ ଖାଦ୍ୟ ଖାଇ ମୁଁ କିପରି ମୋଟା ହେଉଛି ଦେଖିଲଣି ।'

ଦିନ ତମାମ କାର୍ଯ୍ୟ ମଧ୍ୟରେ ଠାକୁରଙ୍କର ଭକ୍ତମାନେ ମଧ୍ୟ ମା'ଙ୍କୁ ସାକ୍ଷାତ କରୁଥିଲେ । କାର୍ଯ୍ୟ ବ୍ୟସ୍ତତା ମଧ୍ୟରେ ଠାକୁରଙ୍କ ସେବା କରିବାରେ ସେ ପାଉଥିଲେ ଅମାପ ଆନନ୍ଦ । ଯେତିକି ସୁଯୋଗ ପାଇବା କଥା, ସେତିକି ନ ପାଉଥିବାରୁ ତାଙ୍କ ମନରେ ଦୁଃଖ ହେଉଥିଲା । ଏପରିକି କିଛିଦିନ ଗୋଲାପମା' ଠାକୁରଙ୍କୁ ନେଇ ଖାଦ୍ୟ ପରଶିବା କାର୍ଯ୍ୟ କରିବା ଫଳରେ, ସେ ନିଜ ହୃଦୟରେ ଦୁଃଖ ଅନୁଭବ କରିଥିଲେ ମଧ୍ୟ ଠାକୁରଙ୍କ ଉପରେ କେବଳ ନିଜର ଅଧିକାର ରହିବ ଏହା ଆଦୌ ବିଚାର କରୁନଥିଲେ । ଏହି ବିଷୟକୁ ଉଲ୍ଲେଖ କରିବାକୁ ଯାଇ ଶ୍ରୀମା' ଜଣେ ଭକ୍ତଙ୍କୁ କହିଥିଲେ, 'ସେ ସମୟରେ ମୁଁ ଠାକୁରଙ୍କୁ ଦୁଇମାସରେ ଥରେ ଦେଖୁଥିଲି । ମୁଁ ମୋର ମନକୁ ସାନ୍ତ୍ୱନା ଦେଇ କହୁଥିଲି, 'ହେ ମନ, ତୁମେ କ'ଣ ଏତେ ଭାଗ୍ୟବାନ ଯେ ତୁମେ ତାଙ୍କୁ ପ୍ରତ୍ୟେକ ଦିନ ଦେଖିବ ?' ଶ୍ରୀରାମକୃଷ୍ଣ ଏହାଜାଣି ପାରିଥିଲେ ଏବଂ ଏଥିରେ ପରିବର୍ତ୍ତନ କରିଥିଲେ ।

ଶ୍ରୀମା'ଙ୍କର ଅସୁବିଧା ଓ ଅନୁଭବ ପ୍ରତି ଶ୍ରୀରାମକୃଷ୍ଣ ସଦାସର୍ବଦା ସଚେତନ ଥିଲେ ଯଦିଓ ଖୁବ୍ କ୍ୱଚିତ୍ ବ୍ୟକ୍ତିଗତ ସଂପର୍କ ସ୍ଥାପିତ ହେଉଥିଲା । ଏଥିରୁ ଆଧ୍ୟାତ୍ମିକ ସଂପର୍କ ଶାରିରୀକ ସଂପର୍କଠାରୁ କେତେ ଊର୍ଦ୍ଧ୍ୱରେ ଏବଂସେମାନଙ୍କର ପରସ୍ପର ମଧ୍ୟରେ କେତେ ନିବିଡ଼ ଆତ୍ମିକ ସଂପର୍କ ରହିଥିଲା ତାହା ବୁଝାପଡ଼େ ।

ଗୋଲାପମା' ଦୀର୍ଘ ସମୟ ଧରି ଠାକୁରଙ୍କ ପାଖରେ ସନ୍ଧ୍ୟା ସମୟ କଟାଇବାକୁ

ଲାଗିଲେ । ଏପରିକି ଦିନେ ଦିନେ ରାତି ଦଶଟା ପର୍ଯ୍ୟନ୍ତ ରହିଲେ । ଫଳରେ ଶ୍ରୀମା'ଙ୍କୁ ନହବତରେ ଗୋଲାପମାଙ୍କର ଖାଦ୍ୟକୁ ରଖି ଅପେକ୍ଷା କରିବାକୁ ହେଲା । ଏହା ତାଙ୍କ ପାଇଁ ଅସୁବିଧା ମଧ୍ୟ ସୃଷ୍ଟି କଲା । ଦିନେ ଶ୍ରୀରାମକୃଷ୍ଣ ମା' କହୁଥିବାର ଶୁଣିଲେ, "କୁକୁର ବା ବିରାଡି ତାଙ୍କ ଖାଦ୍ୟକୁ ନଷ୍ଟ କରନ୍ତୁ । ମୁଁ ତାଙ୍କ ଖାଦ୍ୟକୁ ଆଉ ଜଗି ପାରିବି ନାହିଁ ।" ତା'ପର ଦିନ ସେ ମା' କିପରି ହଇରାଣ ହେଉଛନ୍ତି, ତାହା ଗୋଲାପମା' ଙ୍କୁ କହିଲେ । ଏହାଶୁଣି ଗୋଲାପମା' ଏହାକୁ ହାଲ୍‌କା ଭାବରେ ବିଚାର କରି କହିଲେ, "ନାଁ', ମା' ମୋତେ ଭାରୀ ଭଲ ପାଆନ୍ତି । ସେ ମୋତେ ମୋ ନାଆଁ ଧରି ଡାକନ୍ତି ଯେପରି କି ମୁଁ ତାଙ୍କର ଝିଅ ।" ଶ୍ରୀ ରାମକୃଷ୍ଣ ଅବଶ୍ୟ ତାଙ୍କୁ ବୁଝାଇ ଦେଇଥିଲେ ।

ଏହାକୁ ଲକ୍ଷ୍ୟ କରି ଗୌରୀମା କହିଥିଲେ, ''ଏହି ଦୁଇ ପ୍ରାଣୀ ୫୦ଫୁଟ ଦୂରରେ ରହି ମଧ୍ୟ ବହୁ ସମୟରେ ପରସ୍ପରର ଦେଖାସାକ୍ଷାତ୍ ହୁଏନାହିଁ । କିନ୍ତୁ ଏହା ସତ୍ତ୍ୱେ ସେମାନଙ୍କ ମଧ୍ୟରେ ନିବିଡ଼ତା ଅତି ବେଶୀ । ଥରେ ମୁଁ ଦେଖିଛି, ଶ୍ରୀମା'ଙ୍କର ମୁଣ୍ଡବିନ୍ଧା ହେଉଥିଲା ଏବଂ ଶ୍ରୀରାମକୃଷ୍ଣ କେତେ ବ୍ୟତିବ୍ୟସ୍ତ ହୋଇପଡୁଥିଲେ ଏବଂ ବାରମ୍ବାର ରାମଲାଲ୍‌ଙ୍କୁ ପଚାରୁଥିଲେ, "ଏହେ ରାମଲାଲ୍, ତାଙ୍କର କାହିଁକି ମୁଣ୍ଡବିନ୍ଧା ହେଉଛି ?"

ଦିନେ ଠାକୁରଙ୍କ ସଂପର୍କରେ ଆଲୋଚନା ହେଉଥିବା ବେଳେ ଶ୍ରୀମା' କହିଲେ, "ସେ ସମ୍ପୂର୍ଣ୍ଣ ତ୍ୟାଗୀ କିନ୍ତୁ ମୋ ପାଇଁ ସେ ଭାରୀ ବ୍ୟସ୍ତ । ଦିନେ ସେ ମୋତେ ପଚାରିଲେ, 'ମାସକୁ ଖର୍ଚ୍ଚ କରିବା ପାଇଁ ତୁମର କେତେ ଟଙ୍କା ଦରକାର ?' 'ପାଞ୍ଚଛଅ ଟଙ୍କା ହେଲେ ଚଳିଯିବ ।' ତା'ପରେ ପୁଣି ସେ ମୋତେ ପଚାରିଲେ, 'ତୁମେ ସଂଧ୍ୟାରେ କେତୋଟି ରୁଟି ଖାଉଛ ?' ମୁଁ ଲାଜରେ ଝାଉଁଳି ପଡ଼ିଲି । ମୁଁ କେମିତି ତା'ର ଉତ୍ତର ଦେବି ? ମୋତେ ଯେହେତୁ ବାରମ୍ବାର ଏହି କଥା ପଚାରିଲେ, ମୋତେ କହିବାକୁ ହେଲା । 'ପାଞ୍ଚୋଟି ବା ଛଅଟି' । ଶ୍ରୀମା'ଙ୍କର ଅତି କମ୍‌ରେ ପାଞ୍ଚ ଛଅ ଟଙ୍କା ଆବଶ୍ୟକ ବୋଲି ସେ ହିସାବ କଲେ ଏବଂ ବଳରାମବାବୁଙ୍କ ନିକଟରେ ଏହାକୁ ଗଚ୍ଛିତ ରଖିବାର ବ୍ୟବସ୍ଥା କରିଥିଲେ । ବଳରାମ ବାବୁ ପ୍ରତି ଛଅ ମାସରେ ଶ୍ରୀମା'ଙ୍କ ନିକଟକୁ ତିରିଶ ଟଙ୍କା ପଠାଉଥିଲେ । କେବଳ ସେତିକି ନୁହେଁ, ଶ୍ରୀମା' ଗହଣା ପିନ୍ଧିବା ଉଚିତ୍ ଭାବି ସେ ତାଙ୍କର ଭଣଜା ହୃଦୟକୁ କହିଥିଲେ, "ହୃଦୟ, ଦେଖତ ତୁମ ବାକ୍ସରେ କେତେଟଙ୍କା ଅଛି । ତାଙ୍କ ପାଇଁ କିଛି ସୁନ୍ଦର ସୁନାଗହଣା ତିଆରି କରିଦିଅ ।" ଠାକୁରଙ୍କ ସେତେବେଳେ ଦେହଖରାପ, ତଥାପି ତାଙ୍କ ପାଇଁ ଗହଣା ତିଆରି କରିବାରେ ସେ ତିନିଶହ ଟଙ୍କା ଖର୍ଚ୍ଚ କରିଥିଲେ । ଅବଶ୍ୟ

ସେ ଆଦୌ ପଇସା ଛୁଉଁ ନଥିଲେ । ଏହି ଘଟଣାକୁ ଲକ୍ଷ୍ୟ କରି ସେ ଥଟ୍ଟାରେ କହୁଥିଲେ, "ଓହୋ ! ତାଙ୍କ ସହିତ ମୋର ଏତିକି ସଂପର୍କ ।"

କାମାରପୁକୁରରେ ଥିବାବେଳେ ଗୋଟିଏ କୌତୁକିଆ ଘଟଣା ସଂପର୍କରେ ଶ୍ରୀମା' ନିଜେ ବର୍ଣ୍ଣନା କରି କହିଛନ୍ତି, "କାମାରପୁକୁରରେ ଲକ୍ଷ୍ମୀର ମା ଓ ମୁଁ ସାଙ୍ଗହୋଇ ରୋଷେଇ କରୁ । ଦିନେ ଠାକୁର ଓ ହୃଦୟ ଦୁଇଜଣ ଏକାଠି ଖାଇବସି ଥିଲେ । ଲକ୍ଷ୍ମୀଙ୍କର ମା' ତିଆରି କରିଥିବା ବ୍ୟଞ୍ଜନକୁ ଲକ୍ଷ୍ୟ କରି ଠାକୁର କହିଲେ, 'ହୃଦୟ ! ଏହି ଖାଦ୍ୟକୁ ଯେ ପ୍ରସ୍ତୁତ କରିଛନ୍ତି, ତାଙ୍କୁ ଡାକ୍ତର ରାମଦାସଙ୍କ ସହିତ ତୁଳନା କରାଯାଇପାରେ । ମୋ ଦ୍ୱାରା ତିଆରି ତରକାରିକୁ ଲକ୍ଷ୍ୟ କରି କହିଲେ, 'ଏହାକୁ ଯେ କରିଛି ସେ ଶ୍ରୀନାଥ ସେନ୍ ।' ରାମଦାସ ପ୍ରସିଦ୍ଧ ଚିକିତ୍ସକ ଥିବାବେଳେ ଶ୍ରୀନାଥ ସେନ୍ ଥିଲେ ମାମୁଲି ଡାକ୍ତର । ତାଙ୍କର କହିବାର ଅର୍ଥ ହେଲା ଲକ୍ଷ୍ମୀର ମା' ବିଶେଷଜ୍ଞ । ଏବଂ ମୁଁ କେବଳ ସାଧାରଣ । ଏହା ଶୁଣି ହୃଦୟ କହିଲା, 'ତୁମେ ଯାହା କହୁଛ ତାହା ସତ୍ୟ । କିନ୍ତୁ ତୁମେ ଶ୍ରୀନାଥ ସେନ୍‌କୁ ସଦାସର୍ବଦା ପାଇ ପାରିବ । ସେ ତୁମର ସବୁପ୍ରକାର ସେବା ଏପରିକି ଗୋଡ଼ଘଷା ପର୍ଯ୍ୟନ୍ତ କରିବ । ତୁମେ କେବଳ ତାଙ୍କୁ ଡକାଇ ପଠାଇଲେ ହେଲା । ତତ୍‌କ୍ଷଣାତ୍ ସେ ଆସିବେ । କିନ୍ତୁ ଡାକ୍ତର ରାମଦାସ ମୋଟା ଅର୍ଥ ନେବେ ଦେଖିବାକୁ ଆସିବାମାତ୍ରେ । ଏହାଛଡ଼ା ତୁମେ ତାଙ୍କୁ ସବୁବେଳେ ପାଇବ ନାହିଁ । ତା'ଛଡ଼ା ଲୋକମାନେ ପ୍ରଥମେ ସାଧାରଣ ଡାକ୍ତରଙ୍କୁ ଦେଖାନ୍ତି । ଏହି ସାଧାରଣ ଡାକ୍ତର ମାନେ ତୁମର ସଦାସର୍ବଦା ବନ୍ଧୁ । ଠାକୁର କହିଲେ, 'ହଁ, ତାହା ସତ୍ୟ ତାହା ସତ୍ୟ, ସେ ସବୁବେଳେ ମିଳେ ।' ଏସବୁ ସତ୍ତ୍ୱେ ଶ୍ରୀରାମକୃଷ୍ଣ ଶ୍ରୀମା'ଙ୍କର ପବିତ୍ରତା ଓ ଆଧ୍ୟାତ୍ମିକ ଶକ୍ତି ସଂପର୍କରେ ସଦାସର୍ବଦା ଲକ୍ଷ୍ୟ ରଖିଥାନ୍ତି । ସେ ତାଙ୍କୁ ଦେବୀ ସରସ୍ୱତୀ ଭାବରେ ଜ୍ଞାନ କରନ୍ତି । ସେ ଜାଣିଥିଲେ ତାଙ୍କର ଶକ୍ତି ଭାବରେ ସାରଦା ଆସିଛନ୍ତି ଏବଂ ଦୁଃଖ କଷ୍ଟ ଭୋଗୁଥିବା ମଣିଷମାନଙ୍କୁ ଉଦ୍ଧାର କରିବା ତାଙ୍କର ଦାୟିତ୍ୱ । ଶ୍ରୀରାମକୃଷ୍ଣ ତାଙ୍କ ଜୀବଦ୍ଦଶାରେ ସାରଦା ପ୍ରସନ୍ନଙ୍କୁ (ସ୍ୱାମୀ ତ୍ରିଗୁଣାତୀତ)ଙ୍କୁ ଶ୍ରୀମା' ସାରଦା ଦେବୀଙ୍କଠାରୁ ସନ୍ନ୍ୟାସ ଦୀକ୍ଷା ନେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏପରିକି କାଳୀପଦ ଘୋଷଙ୍କର ସ୍ତ୍ରୀ ତାଙ୍କ ସ୍ୱାମୀ ବିପଥଗାମୀ ହୋଇଥିବା କାରଣରୁ ତାଙ୍କୁ ବାଟକୁ ଆଣିବା ପାଇଁ ଠାକୁରଙ୍କ ନିକଟରେ ଶରଣ ପଶିଥିଲେ । ଠାକୁର ତାଙ୍କୁ ଶ୍ରୀମା'ଙ୍କ ନିକଟକୁ ପଠାଇଥିଲେ । ଶ୍ରୀମା'ଙ୍କ ଆଶୀର୍ବାଦ ଫଳରେ କାଳୀପଦ ବାଟକୁ ଆସି ଠାକୁରଙ୍କର ବଡ଼ଭକ୍ତ ହୋଇଥିଲେ ।

ଭକ୍ତମାନଙ୍କୁ ଦୀକ୍ଷା ଦେବା ସଂପର୍କରେ ଶ୍ରୀମା' କହୁଥିଲେ, "ମୁଁ ଠାକୁରଙ୍କ ଠାରୁ ସବୁ ମନ୍ତ୍ର ଲାଭ କରିଥିଲି । ଏହା ସାହାଯ୍ୟରେ ମୁକ୍ତି ନିଶ୍ଚୟ ମିଳିବ । କାଶୀପୁର

ଠାରେ ଶ୍ରୀରାମକୃଷ୍ଣ ଥିବାବେଳେ କହିଥିଲେ, 'ତୁମେ କ'ଣ କିଛି କରିବ ନାହିଁ ? ମୋତେ କ'ଣ ସବୁ କିଛି କରିବାକୁ ହେବ ?' ଏହାଶୁଣି ଶ୍ରୀମା' କହିଥିଲେ, 'ମୁଁ ତ ସାମାନ୍ୟ ନାରୀ ମାତ୍ର । ମୁଁ କ'ଣ ବା କରିପାରିବି ?' ଠାକୁର କହିଲେ, 'ନାଁ, ନାଁ, ତୁମକୁ ବହୁତ କିଛି କରିବାକୁ ଅଛି ।" ଭବିଷ୍ୟତରେ ଶ୍ରୀମା' ଗୁରୁ ଦାୟିତ୍ୱ ନେବାର ଆବଶ୍ୟକତାକୁ ଉପଲବ୍ଧି କରି, ଠାକୁର ତାଙ୍କୁ ତାଙ୍କର ଶିଷ୍ୟ ଓ ଭକ୍ତମାନଙ୍କ ସହିତ ନିକଟ ସଂପର୍କ ସ୍ଥାପନ କରାଇଥିଲେ । ଠାକୁରଙ୍କ ଦେହତ୍ୟାଗ ପରେ ଶ୍ରୀମା'ଙ୍କୁ ନିଜର ଶରୀର ରକ୍ଷାକରି ରହିବା ସଂପର୍କରେ ପ୍ରଶ୍ନ ହେବାରୁ ସେ କହିଥିଲେ, "ତୁମର ଧାରଣା ଥିବ ଯେ ଏହି ସଂସାରର ସମସ୍ତ ପ୍ରାଣୀଙ୍କୁ ଠାକୁର ମାତୃଭାବରେ ଦେଖୁଥିଲେ । ସେ ମୋତେ ଏହି ମାତୃଭାବକୁ ଜଗତରେ ପରିପ୍ରକାଶ କରିବା ପାଇଁ ରଖିଦେଇ ଯାଇଛନ୍ତି ।"

ଶ୍ରୀମା' ସାରଦାଦେବୀଙ୍କର ଅଭୂତପୂର୍ବ ଆଧ୍ୟାତ୍ମିକ ଶକ୍ତି ସଂପର୍କରେ ଅବଗତ ଥିବା ଶ୍ରୀରାମକୃଷ୍ଣ ତାଙ୍କୁ ତିରସ୍କାର ଓ ଅପମାନ ଠାରୁ ଦୂରରେ ରଖୁଥିଲେ । କାରଣ ସେ ଜାଣିଥିଲେ ଯଦି ସେ ରାଗ ପ୍ରକାଶ କରିବେ, ତେବେ ପ୍ରାଣୀର ନିସ୍ତାର ନାହିଁ । ଥରେ ହୃଦୟର ଶ୍ରୀମା'ଙ୍କ ପ୍ରତି ଆକ୍ଷେପୋକ୍ତିକୁ ଲକ୍ଷ୍ୟ କରି ଠାକୁର ତାଙ୍କୁ କହିଥିଲେ, 'ତୁମେ ମୋତେ ଚିଡ଼ାଇ ପାର କିନ୍ତୁ ଏହା ତୁମେ ତାଙ୍କ ସହିତ କରିବ ନାହିଁ । ମୋ ଭିତରେ ଯେଉଁ ଶକ୍ତି ରହିଛି, ତାହା ପ୍ରକାଶ ହେଲେ ହୁଏତ ତୁମେ ରକ୍ଷା ପାଇ ଯାଇପାର କିନ୍ତୁ ସେ ରାଗ କଲେ ତୁମକୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ମଧ ରକ୍ଷା କରି ପାରିବେ ନାହିଁ ।'

ଶ୍ରୀରାମକୃଷ୍ଣ ଶ୍ରୀମା' ସାରଦା ଦେବୀଙ୍କର ଇଚ୍ଛା ପ୍ରତି ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ । ଏପରିକି ନିଜର ଆଚାର ବ୍ୟବହାରରେ ଠାକୁର ଦେଖୁଥିଲେ ଯେପରି ସେ ଶ୍ରୀମା'ଙ୍କର ଭାବନାକୁ କ୍ଷୁଣ୍ଣ ନକରନ୍ତି । ଶ୍ରୀମା' ବହୁ ସମୟରେ ଭକ୍ତମାନେ ଆଣୁଥିବା ଫଳ, ମିଠା ଇତ୍ୟାଦିକୁ ଅଳ୍ପ ଠାକୁରଙ୍କ ପାଇଁ ରଖି ଭକ୍ତମାନଙ୍କ ମଧ୍ୟରେ, ପଡୋଶୀମାନଙ୍କ ମଧ୍ୟରେ ବାଣ୍ଟି ଦିଅନ୍ତି । ଏହା ଦେଖି ଦିନେ ଠାକୁର ଅଭିଯୋଗ କଣ୍ଠରେ ଏପରି ବଦ୍‌ଖର୍ଚ୍ଚ ନ କରିବାକୁ କହିଲେ । ଏହା ଶ୍ରୀମା'ଙ୍କର ଭାବାବେଗକୁ ଆଘାତ କଲା । ସେ ମନ ଦୁଃଖ କରି ସେଠାରୁ ଚାଲିଗଲେ । ଠାକୁର ଏପରି ପରିସ୍ଥିତିକୁ ଉପଲବ୍ଧି କରି ତାଙ୍କର ପୁତୁରା ରାମଲାଲ୍‌କୁ ଡାକି କହିଲେ, ''ରାମଲାଲ୍, ଯାଆ ଓ ତୋର ଖୁଡ଼ୀଙ୍କୁ ପ୍ରସନ୍ନ କର । ଯଦି ସେ ରାଗେ, ମୋର ଅବସ୍ଥା ରହିବ ନାହିଁ ।''

ଅନ୍ୟ ଏକ ଘଟଣା ତରୁଣ ସନ୍ନ୍ୟାସୀମାନଙ୍କର ଖାଇବାକୁ ନେଇ ଘଟିଥିଲା ।

ଠାକୁରଙ୍କର ତରୁଣ ଶିଷ୍ୟମାନେ ବହୁ ସମୟରେ ଧ୍ୟାନ ଜପ ପାଇଁ ଦକ୍ଷିଣେଶ୍ୱରରେ ରାତିରେ ରହି ଯାଉଥିଲେ । ଠାକୁର ଶିଷ୍ୟମାନଙ୍କର ଆଧ୍ୟାତ୍ମିକ ସାଧନା ଠିକ୍ ଭାବରେ ହେବା ପାଇଁ ଖାଦ୍ୟ ଉପରେ ନିୟନ୍ତ୍ରଣ ରଖିବା ଉପରେ ଦୃଷ୍ଟି ଦେଉଥିଲେ । ଦିନେ ବାବୁରାମ (ସ୍ୱାମୀ ପ୍ରେମାନନ୍ଦ)ଙ୍କୁ ରାତିରେ କେତୋଟି ରୁଟି ଖାଉଛ ବୋଲି ପଚାରିବାରୁ ସେ ୫/୬ଟା ଖାଉଥିବାର କଥା କହିଲେ । ଏତେ କାହିଁକି ଖାଉଛ ? ବୋଲି ଠାକୁର ପ୍ରଶ୍ନ କରିବାରୁ ବାବୁରାମ କହିଲେ ଯେ ଶ୍ରୀମା' ଯାହା ଦେଉଛନ୍ତି ଆମେ ତାହା ଖାଉଛୁ । ଏହା ଶୁଣି ଠାକୁର ଶ୍ରୀମା'ଙ୍କ ପାଖକୁ ଗଲେ ଏବଂ ଅଭିଯୋଗ କରି କହିଲେ ଯେ ସେ ଏହି ତରୁଣ ମାନଙ୍କର ଆଧ୍ୟାତ୍ମିକ ସାଧନାକୁ ଅଧିକା ଖାଇବାକୁ ଦେଇ ନଷ୍ଟ କରିଦେଉଛନ୍ତି । ଏହା ଶୁଣି ଶ୍ରୀମା' କହିଲେ, ''ସେ ଦୁଇଟା ଅଧିକା ରୁଟି ଖାଇଦେଲା ବୋଲି ତୁମେ ଏତେ ବ୍ୟସ୍ତ କାହିଁକି ହେଉଛ ? ମୁଁ ସେମାନଙ୍କର ମଙ୍ଗଳ ପାଇଁ ଚେଷ୍ଟା କରିଛି । ସେମାନଙ୍କର ଖାଇବା ନେଇ ତୁମର ସେମାନଙ୍କୁ ଦୋଷଦେବା ଉଚିତ୍ ନୁହେଁ ।"

ଶ୍ରୀମା' ଜାଣିଥିଲେ ତାଙ୍କର ସନ୍ତାନମାନଙ୍କୁ କିପରି ଖାଇବାକୁ ଦେବାକୁ ହେବ । ଏହାଶୁଣି ଠାକୁର ହସି ପକାଇଲେ ।

ଠାକୁର ଶ୍ରୀମା'ଙ୍କ ସହିତ ଶିଶୁ ସୁଲଭ ଚପଳାମି ଢଙ୍ଗରେ ବ୍ୟବହାର କରୁଥିଲେ ମଧ୍ୟ କେତେକ ମୌଳିକ ପ୍ରଶ୍ନ ଉପରେ ଶ୍ରୀମା'ଙ୍କର ଇଚ୍ଛାକୁ ସମ୍ମାନ ଦେଉଥିଲେ । ତାଙ୍କ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ବୋଧ ରହିଥିଲା କାରଣ ତାଙ୍କର ଉଦ୍ଦେଶ୍ୟକୁ ପୂରଣ କରିବା ପାଇଁ ଶ୍ରୀମା'ଙ୍କର ଆବଶ୍ୟକତାକୁ ସେ ହୃଦୟଙ୍ଗମ କରିଥିଲେ । ଶ୍ରୀରାମକୃଷ୍ଣ ଶ୍ରୀମା' ସାରଦାଙ୍କ ପ୍ରତି ଯେପରି ଆଦରଣୀୟ ବ୍ୟବହାର କରୁଥିଲେ ତାହା ନିମ୍ନ ଘଟଣାରୁ ବୁଝାପଡ଼େ । ଦିନେ ଶ୍ରୀମା' ଠାକୁରଙ୍କର ଗୃହକୁ ତାଙ୍କର ଖାଦ୍ୟଧରି ପ୍ରବେଶ କଲେ । ଠାକୁର ଭାବିଲେ ବୋଧହୁଏ ତାଙ୍କର ଝିଆରୀ ଲକ୍ଷ୍ମୀ ଆସିଛି ଏବଂ 'ତୁ' କବାଟ ବନ୍ଦ କରିଦେ ବୋଲି ତାକୁ କହିଲେ । ଶ୍ରୀମା' ଯେତେବେଳେ କହିଲେ 'ହଁ' କରିଦେଉଛି ଠାକୁର ସଙ୍କୋଚବୋଧ କରି କହିଲେ, 'ତୁମେ ? ମୁଁ ଭାବିଥିଲି ଲକ୍ଷ୍ମୀ । ମୋତେ କ୍ଷମାକର ।' ଶ୍ରୀମା' ଏଥିରେ କିଛି ଯାଏ ଆସେ ନାହିଁ ଏବଂ ଲକ୍ଷ୍ମୀ ଭାବି ତାଙ୍କୁ କହିବାର କିଛି ଭୁଲ୍ ନାହିଁ ବୋଲି କହିଲେ ମଧ୍ୟ ଠାକୁରଙ୍କ ମନ ମାନିଲା ନାହିଁ । ତା'ପର ଦିନ ସକାଳେ ସେ ନହବତକୁ ଯାଇ ଶ୍ରୀମା'ଙ୍କୁ କହିଲେ, 'ମୁଁ ଗତକାଲି ରାତିରେ ଶୋଇପାରିଲି ନାହିଁ । ମୁଁ ତୁମକୁ ଚଡ଼ାଗଳରେ କହିଥିବାରୁ ଅତ୍ୟନ୍ତ ବିବ୍ରତ ।' ଏହି କଥାକୁ ଉଲ୍ଲେଖ କରି ପରବର୍ତ୍ତୀ' ସମୟରେ ଯେତେବେଳେ ତାଙ୍କର ସମ୍ପର୍କୀୟ ମାନେ ତାଙ୍କୁ ଖରାପ ବ୍ୟବହାର କରିଛନ୍ତି ଶ୍ରୀମା' କହିଛନ୍ତି, 'ମୁଁ ଏପରି

ଜଣେ ସ୍ୱାମୀଙ୍କୁ ବିବାହ କରିଥିଲି ଯେ ମୋତେ ଆଦୌ 'ତୁ' କହି ନାହାନ୍ତି । ଆହା ! ସେ କେମିତି ମୋତେ ବ୍ୟବହାର କରନ୍ତି । ଦିନେ ହେଲେ ସେ ମୋତେ କଠୋର ଶବ୍ଦ କହି ନାହାନ୍ତି କିମ୍ବା ମୋର ଭାବନାକୁ ଆଘାତ କରି ନାହାନ୍ତି । ଏପରିକି ସେ ମୋତେ ଫୁଲ ସାହାଯ୍ୟରେ ମଧ୍ୟ ଆଘାତ କରିନାହାନ୍ତି ।'

ଶ୍ରୀମା' ଠାକୁରଙ୍କର ତ୍ୟାଗ ଭାବକୁ ମଧ୍ୟ ନିଜ ଭିତରେ ସାକାର ରୂପ ଦେଇଛନ୍ତି । ଠାକୁରଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଲକ୍ଷ୍ମୀ ନାରାୟଣ ନାମରେ ଜଣେ ମାରୱାଡି ବ୍ୟବସାୟୀ ଥାଆନ୍ତି । ଦିନେ ଠାକୁରଙ୍କର ବିଛଣା ଚାଦର ମଇଳା ଥିବାର ଦେଖି, ସେ ତାଙ୍କ ନାମରେ ଦଶ ହଜାର ଟଙ୍କା ଜମା କରିବାକୁ ଚାହିଁଲେ, ଯାହା ଫଳରେ ସେହି ସୁଧରୁ ତାଙ୍କର ବ୍ୟକ୍ତିଗତ ଖର୍ଚ୍ଚ ଉଠା ଯାଇପାରିବ । ଶ୍ରୀରାମକୃଷ୍ଣ ଏପରି ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ଠାକୁର ବ୍ୟବସାୟୀଙ୍କୁ ଶ୍ରୀମା'ଙ୍କ ନିକଟକୁ ପଠାଇ ଦେଲେ ଏବଂ କହିଲେ ଯେ ଯଦି ତାଙ୍କର ଅସମ୍ମତି ନଥାଏ ତେବେ ସେ ତାଙ୍କୁ ଦେଇପାରନ୍ତି । ଶ୍ରୀମା' ଏହି ପ୍ରସ୍ତାବକୁ ମଧ୍ୟ ପ୍ରତ୍ୟାଖ୍ୟାନ କଲେ । ଏବଂ କହିଲେ ତାଙ୍କର ଟଙ୍କା ନେବା ଯାହା, ଠାକୁର ନେବା ମଧ୍ୟ ସେଇଆ । ଏହି ଉତ୍ତର ଶୁଣି ଠାକୁର ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ଶ୍ରୀମା' ତେଣୁ ଭକ୍ତଙ୍କୁ କହୁଥିଲେ, 'ଠାକୁରଙ୍କ ଜୀବନ ହେଉଛି ତ୍ୟାଗ । ଏପରି ପ୍ରକୃତ ତ୍ୟାଗ କେହି କେଉଁଠି ଦେଖିଛ ?' ତ୍ୟାଗ ହେଉଛି ଠାକୁରଙ୍କର ଅଳଙ୍କାର । ଏପରିକି ଶ୍ରୀମା' କହିଥିଲେ, 'ମୋର ସ୍ୱାମୀ ହେଉଛନ୍ତି ନଗ୍ନ ଫକୀର ।'

ଶ୍ରୀମା'ଙ୍କର ଏହି ଜୀବନରୁ ମାନବ ଜାତି କେତେଗୁଡ଼ିଏ ଶିକ୍ଷା ଲାଭ କରେ । ଶ୍ରୀମା'ଙ୍କର ମଧ୍ୟରେ ପ୍ରଥମେ ଆମେ ଦେଖୁ ଆଦର୍ଶ ସ୍ତ୍ରୀ ଓ ଶିକ୍ଷାର ସମନ୍ୱୟ । ସ୍ୱାମୀଙ୍କ ପ୍ରତି ଅକୁଣ୍ଠ ପ୍ରେମ ଓ ସେବା ହିଁ ତାଙ୍କର ସର୍ବଶ୍ରେଷ୍ଠ ଆନନ୍ଦ । କୌଣସି ବ୍ୟକ୍ତିଗତ କଷ୍ଟକୁ ବିଚାରକୁ ନନେଇ, ସେ କେବଳ ତାଙ୍କ ସ୍ୱାମୀଙ୍କର ସେବା କରି ନାହାନ୍ତି ବରଂ ତାଙ୍କ ଜୀବନର ଉଦ୍ଦେଶ୍ୟ ଓ ଆଦର୍ଶକୁ ନିଜ ଜୀବନର ଉଦ୍ଦେଶ୍ୟ ଓ ଆଦର୍ଶ ଭାବେ ଗ୍ରହଣ କରିଛନ୍ତି । ସେ ଶ୍ରୀରାମକୃଷ୍ଣଙ୍କୁ ତାଙ୍କ ସାଧନାରେ ସାହାଯ୍ୟ କରିଛନ୍ତି, କେବେହେଲେ ପ୍ରତିବନ୍ଧକ ହୋଇ ଛିଡ଼ା ହୋଇ ନାହାନ୍ତି ।

ଫଳରେ ସେ ପାଇଛନ୍ତି ତାଙ୍କ ସ୍ୱାମୀଙ୍କର ଅକୁଣ୍ଠ ପ୍ରେମ ଓ ସମ୍ମାନ । ଏହି ପବିତ୍ର ଦମ୍ପତିଙ୍କ ମଧ୍ୟରେ ପ୍ରେମର ଫଲ୍‌ଗୁ ମଧ୍ୟରେ ଶାରିରୀକ ସଂପର୍କର ଲେଶମାତ୍ର ଚିହ୍ନ ଦେଖିବାର ମିଳିନାହିଁ । ଏହି ଜୀବନରୁ ଶିକ୍ଷା ମିଳିଛି ଯେ ପ୍ରେମ ଶାରିରୀକ ସଂପର୍କ ବିନା ମଧ୍ୟ ସମ୍ଭବ ।

ବୃହଦାରଣ୍ୟକ ଉପନିଷଦରେ କୁହାଯାଇଛି, ''ସହୋବାଚ ନବା ଅରେ ପତ୍ୟୁ

କାମାୟ ପତି ପ୍ରିୟୋ ଭବତ୍ୟାତ୍ ମନସ୍ତୁ କାମାୟ ପତିଃ ପ୍ରିୟୋ ଭବତି । ନବାଅରେ ଜାୟାଯୈକାମୟ ଜାୟାପ୍ରିୟା ଭବତ୍ୟାତ୍ମନସ୍ତ କାମାୟ ଜାୟା ପ୍ରିୟା ଭବତି ।'' 'ଏହାର ଅର୍ଥ ହେଉଛି, ଯାଜ୍ଞବଲ୍‌କ୍ୟ କହିଲେ- ହେ ମୈତ୍ରେୟୀ ! ପତି କାମନାରେ ପତି ପ୍ରିୟ ହୋଇ ପାରନ୍ତି ନାହିଁ, ବରଂ ଆତ୍ମାର କାମନା ପାଇଁ ପତି ପ୍ରିୟ ହୋଇଥାନ୍ତି । ହେ ମୈତ୍ରେୟୀ ! ପତ୍ନୀ କାମନା ପାଇ ପତ୍ନୀ ପ୍ରିୟା ହୁଏ ନାହିଁ; ବରଂ ଆତ୍ମାର କାମନାରେ ପତ୍ନୀ ପ୍ରିୟା ହୋଇଥାଏ ।'

ଏହାର ଜ୍ୱଳନ୍ତ ଉଦାହରଣ ଶ୍ରୀମା' ସାରଦା ଦେବୀ ଓ ଶ୍ରୀ ରାମକୃଷ୍ଣ ପରମହଂସ । ଶ୍ରୀମା'ଙ୍କ ଜୀବନରେ ଶ୍ରୀରାମକୃଷ୍ଣଙ୍କ ସହିତ ଦିନଗୁଡ଼ିକ ଯେପରି ସରି ସରି ଆସୁଥିଲା । ୧୮୮୫ ମସିହାରେ ଶ୍ରୀରାମକୃଷ୍ଣ ଗଳା କର୍କଟ ରୋଗରେ ପୀଡ଼ିତ ହେଲେ । ତାଙ୍କର ଚିକିତ୍ସା ପାଇଁ କଲିକତାର ଶ୍ୟାମାପୁକୁରଠାରେ ଏକ ଘରଭଡ଼ା ନିଆଗଲା । ସେହି ଘରେ ସ୍ୱଚ୍ଛନ୍ଦ ଚଳପ୍ରଚଳର ଅସୁବିଧା ସତ୍ତ୍ୱେ ଶ୍ରୀମା' ସାରଦା ସେଠାରେ ଠାକୁରଙ୍କର ସେବା କରିବାକୁ ଯାଇ ରହିଲେ । ସେଠାରେ କିଛିଦିନ ରହିବା ପରେ ୧୧ ଡିସେମ୍ବର ୧୮୮୫ ମସିହାରେ କାଶୀପୁର ବଗିଚା ଘରକୁ ତାଙ୍କୁ ସ୍ଥାନାନ୍ତରିତ କରାଗଲା । ସେଠାରେ ଦିନେ ନିରଂଜନ ଓ ଆଉ କେତେକ ଶିଷ୍ୟ ଖଜୁରି ରସ ପିଇବା ପାଇଁ ନିକଟସ୍ଥ ଖଜୁରି ଗଛ ନିକଟକୁ ଯିବାର ଶ୍ରୀ ରାମକୃଷ୍ଣ ଦେଖିଲେ । ସେତେବେଳେ ତାଙ୍କର ଦେହର ଅବସ୍ଥା ଏତେ ଖରାପ ଯେ ସେ ବିନା ସାହାଯ୍ୟରେ ଯାଇ ପାରିବେ ନାହିଁ। କିନ୍ତୁ ହଠାତ୍ ସେ ଦୌଡ଼ିବାକୁ ଆରମ୍ଭ କଲେ । ଶ୍ରୀମା' ଏହା ଦେଖିପାରି ଠାକୁରଙ୍କ କୋଠରିକୁ ଆସିବାବେଳକୁ ଠାକୁର ସେଠାକୁ ଫେରି ଆସିଥିଲେ । ସେ ଯେତେବେଳେ ଘଟଣା କ'ଣ ଜାଣିବାକୁ ଚାହିଁଲେ, ଠାକୁର ସେ କଥାକୁ ଏଡାଇ ଯିବାକୁ ଚାହିଁଲେ । ଶ୍ରୀମା' ଅତ୍ୟନ୍ତ ବାଧ କରନ୍ତେ ଠାକୁର କହିଲେଯେ ଖଜୁରି ଗଛ ତଳେ ଗୋଟେ ବିଷଧର ନାଗସାପ ଥିଲା । ସେ ତାଙ୍କର ଅଲୌକିକ ଶକ୍ତି ପ୍ରୟୋଗ କରି ତାହାକୁ ସେଠାରୁ ଘଉଡ଼ାଇ ଦେଲେ । ବୋଧହୁଏ ଏପରି ଅଲୌକିକ ଘଟଣା ପ୍ରତି ଗୁରୁତ୍ୱ ନ ଦେବା ପାଇଁ ଠାକୁର ପ୍ରଥମେ ଶ୍ରୀମା'ଙ୍କୁ ଏକଥା କହିବାକୁ ଇଚ୍ଛା କରୁ ନଥିଲେ ।

କାଶୀପୁର ବଗିଚା ଘରେ ତାଙ୍କର ଚିକିତ୍ସା କରିବା ପାଇଁ କଲିକତାର ପ୍ରସିଦ୍ଧ ଚିକିତ୍ସକ ଡାକ୍ତର ମହେନ୍ଦ୍ରନାଥ ସରକାରଙ୍କର ସାହାଯ୍ୟ ନିଆଗଲା । ଠାକୁରଙ୍କର ଦିନ କ୍ରମଶଃ ଶେଷ ହୋଇ ଆସୁଛି, ଏକଥା ଠାକୁର ପୂର୍ବରୁ ଶ୍ରୀମା' ସାରଦା ଓ ଅନ୍ୟ ଶିଷ୍ୟ ଓ ଭକ୍ତମାନଙ୍କୁ ସୂଚିତ କରିଥିଲେ ।

ସେ କହିଥିଲେ ଯେତେବେଳେ ସେ କଲିକତାରେ ରାତ୍ରି ଯାପନ କରିବେ,

ଯେ କୌଣସି ଲୋକଙ୍କ ଖାଦ୍ୟ ଗ୍ରହଣ କରିବେ, ଅନ୍ୟମାନଙ୍କୁ ପରଷା ଯାଇ ବଳକା ରହିଥିବା ଖାଦ୍ୟକୁ ଖାଇବେ, ଏବଂ ବହୁଲୋକ ଆସି ତାଙ୍କୁ ଭଗବାନ ପରି ପୂଜା କରିବାକୁ ଆରମ୍ଭ କରିବେ ସେତେବେଳେ ସେ ଏହି ଦେହ ତ୍ୟାଗ କରିବେ । ଏହି ଘଟଣା ଶ୍ରୀମା' ସାରଦାଙ୍କର ଗୋଚରକୁ ଆସିଲା ।

ଦିନେ ଦଳେ ଭକ୍ତ ଠାକୁରଙ୍କୁ ସାକ୍ଷାତ୍ କରିବାକୁ ଦକ୍ଷିଣେଶ୍ୱର ଯାଇଥିଲେ । ସେଠାରେ ଠାକୁର କଲିକତାରେ ଅଛନ୍ତି ବୋଲି ଜାଣିବାକୁ ପାଇଲେ । ସେମାନେ ଠାକୁରଙ୍କ ପାଇଁ ମିଠାଇ ନେଇ କରି ଯାଇଥିଲେ । ଠାକୁରଙ୍କୁ ନ ପାଇ, ତାଙ୍କ ଫଟୋ ନିକଟରେ ଏହି ନୈବେଦ୍ୟକୁ ଅର୍ପଣ କରି ପ୍ରସାଦ ପାଇଲେ । ଏହି ଘଟଣା ଯେତେବେଳେ ଶ୍ରୀମା'ଙ୍କୁ ଅବଗତ କରାଗଲା, ଶ୍ରୀମା' ଠାକୁରଙ୍କର ଶେଷ ସମୟ ଆସିଗଲା ବୋଲି ଉପଲବ୍ଧି କଲେ ।

ସମସ୍ତ ପ୍ରକାର ଚିକିତ୍ସା ବିଫଳ ହେବାରୁ ଶ୍ରୀମା' ଦୈବୀ ଶକ୍ତିର ଆଶ୍ରୟ ନେବାକୁ ସ୍ଥିର କରି ତାରକେଶ୍ୱରଠାରେ ଥିବା ଶିବମନ୍ଦିରକୁ ଯାଇ ସେଠାରେ ଦୁଇ ଦିନ ଧରି ଉପାସ ରହି ଅଧିଆ ପଡ଼ିଲେ । ଦ୍ୱିତୀୟ ଦିନ ରାତିରେ, ସେ ଏହି ଘଟଣାକୁ ଉପଲକ୍ଷ କରି କହିଛନ୍ତି, 'ମୁଁ ଏକ ଶବ୍ଦ ଶୁଣି ଚମକି ପଡ଼ିଲି । ଯେପରି କେହି ଜଣେ ଚୋଟିଏ ପ୍ରହାରରେ ସବୁଯାକ ମାଟିହାଣ୍ଡିକୁ ଭାଙ୍ଗି ପକାଉଛି । ମୁଁ ହଠାତ୍ ମୋର ଅବଚେତନ ଅବସ୍ଥାରୁ ଉଠି ପଡ଼ିଲି ଏବଂ ମୋ ମନରେ ଗୋଟିଏ କଥା ଭାସି ଉଠିଲା । କିଏ ସେ ସ୍ୱାମୀ ? କିଏ ସେ ସ୍ତ୍ରୀ ? ଏହି ସଂସାରରେ କିଏ ମୋର ପରିବାର ? ମୁଁ କାହିଁକି ମୋ ନିଜକୁ ହତ୍ୟା କରିବି ?' ହଠାତ୍ ଠାକୁରଙ୍କ ପ୍ରତି ଥିବା ମୋର ସମସ୍ତ ଆସକ୍ତି ଲୋପ ପାଇଲା । ମୋ ମନରେ ଅମାପ ତ୍ୟାଗ ଭାବନା ଜାଗ୍ରତ ହେଲା । ମୁଁ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ମନ୍ଦିର ପଛପଟକୁ ଯାଇ ପବିତ୍ର ପାଣିରେ ଛିଞ୍ଚିହେଲି । ମୋ ତଣ୍ଟି ଶୁଖିଯାଇଥିବାରୁ ଅଳ୍ପ କିଛି ପାଣି ମଧ ପିଇଲି । ନିଜକୁ ସୁସ୍ଥ ଅନୁଭବ କଲି । ତା'ପର ଦିନ କାଶୀପୁର ବଗିଚା ଘରେ ଆସି ପହଞ୍ଚିଲି । ମୋତେ ଯେମିତି ଠାକୁର ଦେଖିଛନ୍ତି, ପଚାରିଲେ, 'ହଁ, କିଛି ପାଇଲ ? ହଁ, ସବୁ କିଛି ମାୟା ? ନୁହେଁକି ?'

ସେ ପୁନରାୟ କହିଲେ, 'ସେହି ସମୟରେ, ଠାକୁର ସ୍ୱପ୍ନରେ ଦେଖିଲେ ଗୋଟିଏ ହାତୀ ତାଙ୍କ ପାଇଁ ଔଷଧ ଆଣିବାକୁ ଯାଇଛି । ପଶୁଟି ତାହାକୁ ପାଇବା ପାଇଁ ମାଟି ଖୋଳୁଛି । ଏହି ସମୟରେ ସେ ଉଠିପଡ଼ିଲେ । ଠାକୁର ମୋତେ ପଚାରିଲେ ତୁମେ ଏହିଭଳି ସ୍ୱପ୍ନ ଦେଖିଛ କି ? ମୁଁ ସ୍ୱପ୍ନରେ ଦେଖିଥିଲି ମା' କାଳୀ ଠାକୁରାଣୀଙ୍କର ବେକ ଗୋଟିଏ କଡ଼କୁ ବଙ୍କା ହୋଇଯାଇଛି । ମୁଁ ତାଙ୍କୁ ପଚାରିଲି,

'ମା', ତୁମେ ସେପରି କାହିଁକି ଠିଆ ହୋଇଛ ?' ଠାକୁରାଣୀ କହିଲେ, 'ଏହା ସେଇଥିପାଇଁ (ଠାକୁରଙ୍କର ତଣ୍ଟିରେ କ୍ୟାନସରକୁ ଲକ୍ଷ୍ୟ କରି), ମୋର ମଧ ତଣ୍ଟିରେ ହୋଇଛି ।'

ବୋଧହୁଏ ଠାକୁରଙ୍କର ଶେଷ ସମୟ ନିକଟ ହୋଇ ଆସୁଥିବାର ସୂଚିତ କରି ଶ୍ରୀମାଙ୍କର ଏପରି ଅନୁଭୂତି ହୋଇଥିଲା । ଦିନେ ଠାକୁର ଶ୍ରୀମା'ଙ୍କୁ ପାଖକୁ ଡାକି କହିଲେ, 'ମୁଁ ଜାଣି ନାହିଁ କାହିଁକି ମୋ ମନରେ ବ୍ରହ୍ମଭାବ ଜାଗ୍ରତ ହେଉଛି ।'

୧୫ ଅଗଷ୍ଟ ୧୮୮୬ । ଶ୍ରୀରାମକୃଷ୍ଣ ଏହି ପଞ୍ଚଭୂତର ମନୁଷ୍ୟ ଶରୀରକୁ ତ୍ୟାଗ କରି ଯିବା ପୂର୍ବରୁ ଶ୍ରୀମା'ଙ୍କୁ ଧୀରସ୍ୱରରେ କହିଲେ, 'ହେଇ ଦେଖ ! ମୋତେ ଜଣାଯାଉଛି ମୁଁ କେଉଁ ଆଡ଼କୁ ଚାଲି ଯାଉଛି- ପାଣି ଉପର ଦେଇ ବହୁଦୂରକୁ । ତୁମେ ଆଦୌ ବ୍ୟସ୍ତ ହେବ ନାହିଁ । ଏ ପର୍ଯ୍ୟନ୍ତ ଯେପରି ଥିଲ, ସେପରି ରହିବ । ନରେନ୍ ଏବଂ ଅନ୍ୟମାନେ ତୁମର ଦେଖାଶୁଣା କରିବେ ଏବଂ ମୋ ପାଇଁ ଯେପରି କରୁଥିଲେ ସେପରି କରିବେ । ଲକ୍ଷ୍ମୀ ଉପରେ ନଜର ରଖିଥିବ ।' ୧୬ ଅଗଷ୍ଟ ୧୮୮୬ ରେ ସବୁ ଶୂନ୍ୟ ହୋଇଗଲା । ଠାକୁର ଶରୀର ତ୍ୟାଗ କଲେ । ତାଙ୍କର ଶବସତ୍କାର ପରେ, ଯେତେବେଳେ ଶ୍ରୀମା' ନିଜ ଦେହରୁ ଅଳଙ୍କାର ନିରାଭରଣ କରୁଥିଲେ, ଶ୍ରୀରାମକୃଷ୍ଣ ତାଙ୍କୁ ଦୃଶ୍ୟମାନ ହେଲେ ଏବଂ ଠାକୁର ତାଙ୍କୁ କହୁଥିବାର ଶୁଣିଲେ, 'ତୁମେ ଏ କ'ଣ କରୁଛ ? ମୁଁ ତ କେଉଁଆଡ଼େ ଯାଇ ନାହିଁ । ମୁଁ ଗୋଟିଏ କୋଠରିରୁ ଅନ୍ୟ କୋଠରିକୁ ଯାଉଛି ।' ବଳରାମ ବାବୁ ଶ୍ରୀମା'ଙ୍କ ପାଇଁ ଧଡ଼ି ନ ଥିବା ଧଳା ଲୁଗାଟିଏ କିଣି ଗୋଲାପ ମା'ଙ୍କ ହାତରେ ଦେଲେ । ଗୋଲାପ- ମା' ଭାବିଲେ, 'ହେ ଭଗବାନ୍ ! ଏହି ଧଡ଼ି ନଥିବା ଧଳା ଲୁଗାଟିକୁ ବର୍ତ୍ତମାନ କିଏ ନେଇ ତାଙ୍କୁ ଦେବ ? କିନ୍ତୁ ଶ୍ରୀମା'ଙ୍କ ନିକଟକୁ ଯାଇ ଦେଖିଲେ, ଶ୍ରୀମା' ତାଙ୍କ ଶାଢ଼ୀର ଧଡ଼ିରୁ ଅଧା ଅଧା ଚିରି ପକାଇଛନ୍ତି । ସେହିଦିନଠାରୁ ଶ୍ରୀମା' ଅଳ୍ପ ନାଲିଧଡି ଥିବା ଧଳାଲୁଗା ବ୍ୟବହାର କରୁଥିଲେ ।



# ତୀର୍ଥଯାତ୍ରା

କିଛିଦିନ କାଶୀପୁର ବଗିଚା ଘରେ ରହିବା ପରେ ଶ୍ରୀମା' ଓ ଲକ୍ଷ୍ମୀ ଦିଦିଙ୍କୁ ଯାଇ ବଳରାମ ବୋଷଙ୍କ ଘରେ ରହିବାକୁ ହେଲା ।

ଠାକୁର ଦେହତ୍ୟାଗ କରିବା ପୂର୍ବରୁ ଶ୍ରୀମା'ଙ୍କୁ ନିର୍ଦ୍ଦେଶ ଦେଇ କହିଥିଲେ, 'ତୁମେ ସେହି ସବୁ ସ୍ଥାନ ପରିଦର୍ଶନ କରିବ, ଯାହା ମୋ ଦ୍ୱାରା କରିବା ସମ୍ଭବ ହୋଇନାହିଁ ।' ଠାକୁରଙ୍କର ଦେହାବସାନ  ହେବାର ୧୫ ଦିନ ପରେ ଶ୍ରୀମା'ଙ୍କର ତୀର୍ଥଯାତ୍ରା ଆରମ୍ଭ ହେଲା । ଅଗଷ୍ଟ ୩୦ ତାରିଖ ଦିନ ସେ ଯାତ୍ରା ଆରମ୍ଭ କଲେ । ତାଙ୍କ ସହିତ ସ୍ୱାମୀ ଯୋଗାନନ୍ଦ, ସ୍ୱାମୀ ଅଭେଦାନନ୍ଦ, ସ୍ୱାମୀ ଅଭୁତାନନ୍ଦ, ଲକ୍ଷ୍ମୀ ଦିଦି, ଗୋଲାପ-ମା', ମାଷ୍ଟର ମହାଶୟ ଅର୍ଥାତ୍ ମହେନ୍ଦ୍ର ନାଥ ଗୁପ୍ତଙ୍କର ସ୍ତ୍ରୀ ଯାଇଥିଲେ । ବୃନ୍ଦାବନ ଯାତ୍ରା କରିବା ସମୟରେ ସେମାନେ ଦେଓଘର, ବନାରସ ଓ ଅଯୋଧ୍ୟାରେ ଅଟକି ଥିଲେ । ବନାରସରେ ଜଣେ ମହାନ୍ ସନ୍ନ୍ୟାସୀ ଭାସ୍କରାନନ୍ଦଙ୍କ ସହିତ ସାକ୍ଷାତ୍ ହୋଇଥିଲା ।' ତାଙ୍କର ସେହି ସାକ୍ଷାତ୍‌କୁ ଉଲ୍ଲେଖ କରି ଶ୍ରୀମା' ଲେଖିଥିଲେ, "ମୁଁ ବୃନ୍ଦାବନ ଯିବା ବାଟରେ ବନାରସରେ ଥିବା ଭାସ୍କରନନ୍ଦଙ୍କୁ ଦେଖିବାକୁ ଯାଇଥିଲି । ସେତେବେଳେ ମୋର ମାନସିକ ଅବସ୍ଥା ଭଲ ନଥିଲା । ମୁଁ ତାଙ୍କୁ ଦେଖିବା ସମୟରେ ସେ ସଂପୂର୍ଣ୍ଣ ଉଲଗ୍ନ ଥିଲେ । କିନ୍ତୁ ସେ ସେଥିପ୍ରତି ଆତ୍ମସଚେତନ ନଥିଲେ । ସେ ଯେମିତି ମୋତେ ଓ ଅନ୍ୟାନ୍ୟ ସ୍ତ୍ରୀଲୋକମାନଙ୍କୁ ଦେଖିଲେ ପାଟି କରି କହିଲେ, 'ମା' ମାନେ, ଲାଜ କରନ୍ତୁ ନାହିଁ । ମୁଁ ସମସ୍ତଙ୍କ ମଧ୍ୟରେ ବିଶ୍ୱ ଜନନୀଙ୍କୁ ଦେଖୁଛି । ତୁମ୍ଭେମାନେ କାହିଁକି ଲାଜ କରିବ ?' ଓହୋ !! କେଡ଼େ ମହାନ୍ ଆତ୍ମା । ସଂପୂର୍ଣ୍ଣ ଭାବେ ସଂସାରିକ ବନ୍ଧନରୁ ମୁକ୍ତ । ଖରା ଓ ଶୀତରେ, ସେ ସବୁବେଳେ ଲଙ୍ଗଳା ରହୁଥିଲେ ।"

ବୃନ୍ଦାବନ ଯିବା ସମୟରେ  ଅପୂର୍ବ ଭାବରେ ଠାକୁର ତାଙ୍କୁ ଦୃଶ୍ୟ ହେଲେ । ଠାକୁର ରୋଗରେ ପଡ଼ିଥିବା ବେଳେ ଶ୍ରୀମା'ଙ୍କୁ ହାତର ଇଷ୍ଟକବଚ ଦେଇଥିଲେ ଯାହାକୁ ଶ୍ରୀମା' ପୂଜା କରୁଥିଲେ ଏବଂ ତାଙ୍କ ବାହୁରେ ପିନ୍ଧିଥିଲେ । ଟ୍ରେନ୍‌ରେ ଶୋଇଥିବା ବେଳେ ଇଷ୍ଟକବଚ ଥିବା ବାହୁ ଖୋଲା ଅବସ୍ଥାରେ ବାହାରକୁ

ଦେଖାଯାଉଥିଲା । ଏହି ମୁହୂର୍ତ୍ତରେ ଠାକୁର ତାଙ୍କୁ ଦେଖା ଦେଇ କବଚଟି ହଜିଯାଇପାରେ ବୋଲି ସତର୍କ କରି ଦେଇଥିଲେ । ଏହି ଘଟଣାକୁ ମନେ ପକାଇ ସେ କହିଥିଲେ, 'ମୁଁ ଯେତେବେଳେ ବୃନ୍ଦାବନକୁ ଯାଉଥିଲି, ଠାକୁର ମୋତେ ଟ୍ରେନ୍ ଡବାର ଝରକା ଦେଇ ଚାହିଁଲେ ଏବଂ କହିଲେ, 'ମୋର ସୁନା କବଚଟି ତୁମ ପାଖରେ ଅଛି । ଦେଖିବ, ତାହା ଯେପରି ହଜି ନଯାଏ ।' ମୁଁ ହଠାତ୍ ଉଠିପଡ଼ିଲି ଏବଂ ଛୋଟ ଟିଣ ବାକ୍ସଟିରେ ଯେଉଁଥିରେ ଠାକୁରଙ୍କ ଫଟୋ ରଖିଥିଲି କବଚଟିକୁ ରଖିଦେଲି । ପରେ ଏହାକୁ ବେଲୁଡ ମଠକୁ ଦେଇ ଦେଇଥିଲି ।'

ଅଯୋଧ୍ୟା ପରେ ସେ ବୃନ୍ଦାବନରେ ପହଞ୍ଚିଲେ। ଶ୍ରୀକୃଷ୍ଣ, ଶ୍ରୀରାଧା ଓ ଗୋପୀମାନଙ୍କର ଲୀଳାଖେଳାର ପବିତ୍ର ଭୂମିକୁ ଦର୍ଶନ କରିବା ମାତ୍ରେ ଶ୍ରୀମା'ଙ୍କର ଧାର୍ମିକ ଅନୁଭବରେ ଶିହରଣ ଜାତ ହେଲା । ଶ୍ରୀରାଧାଙ୍କର ଶ୍ରୀକୃଷ୍ଣ ବିରହ ଜନିତ ଦୁଃଖର ଅନୁଭୂତି ତାଙ୍କ ହୃଦୟକୁ ମନ୍ଥିତ କଲା । ସେ ମଧ୍ୟ ଠାକୁରଙ୍କ ଅନୁପସ୍ଥିତିକୁ ଗଭୀର ଭାବରେ ଅନୁଭବ କଲେ । ବୃନ୍ଦାବନରେ ଥିବା ସମୟରେ ତାଙ୍କ ହୃଦୟର ଦିବ୍ୟ ପ୍ରେମର ଉଚ୍ଛ୍ୱାସ ଲୋତକ ଆକାରରେ ତାଙ୍କ ଚକ୍ଷୁରୁ ଅନବରତ ବହି ଚାଲିଲା । ସେ ଯୋଗୀନ୍ ମା'ଙ୍କୁ ଦେଖିବା ମାତ୍ରେ 'ହେ ଯୋଗୀନ୍ ମୋର' ବୋଲି କହି ତାଙ୍କୁ କୁଣ୍ଢାଇ ଜଣେ ସାହାହୀନ ପିଲା ପରି କାନ୍ଦିଲେ । ପ୍ରେମ ଓ ଦୁଃଖର ଅପୂର୍ବ ସମନ୍ୱୟ ମଧ୍ୟରେ ଶ୍ରୀମା' ବୃନ୍ଦାବନରେ ସମୟ କାଟୁଥିବା ବେଳେ, ତାଙ୍କ ବ୍ୟକ୍ତିତ୍ୱରେ ଅମାପ ପରିବର୍ତ୍ତନ ହେବାକୁ ଲାଗିଥିଲା । ତାଙ୍କୁ ସେଠାରେ ଠାକୁର ଦେଖାଦେଇ କହିଲେ, 'ତୁମେ ଏତେ କାନ୍ଦୁଛ କାହିଁକି ? ମୁଁ ଏଠାରେ ଅଛି । ମୁଁ କେଉଁଠିକୁ ଯାଇଛି କି ? କେବଳ ଗୋଟିଏ କୋଠରିରୁ ଆଉ ଗୋଟିଏ କୋଠରିକୁ ।'

ଏହି ଅନୁଭୂତି ତାଙ୍କର ଦୁଃଖକୁ ବହୁ ପରିମାଣରେ ଲାଘବ କଲା । ସେ ଠାକୁରଙ୍କର ନିକଟତମ ହେବା ଅନୁଭବ କଲେ । ତାଙ୍କ ମନରେ ପ୍ରଶାନ୍ତି ଓ ଆନନ୍ଦ ଭରିଗଲା । ସେ ଯେପରି ଛୋଟ ଝିଅଟିଏ ପାଲଟି ଗଲେ । ତାଙ୍କର ଏହି ସମୟର ଗୋଟିଏ ଘଟଣା ଯୋଗୀନ୍ ମା' ଉଲ୍ଲେଖ କରିଛନ୍ତି । ଦିନେ ସୁନ୍ଦର ସାଜସଜ୍ଜା ହୋଇ ଓ ଭକ୍ତି ସଂଗୀତ ପରିବେଷଣ ମଧ୍ୟରେ ସେ ଗୋଟିଏ ମୃତ ଶରୀର ଶ୍ମଶାନକୁ ଯାଉଥିବାର ଦେଖିଲେ । ଯୋଗୀନ୍ ମା'ଙ୍କୁ ସେହି ଶବ ଶୋଭାଯାତ୍ରାକୁ ଦେଖାଇ କହିଲେ, ''ଏହି ଦେଖ ! ଏହି ପବିତ୍ର ଭୂମି ବୃନ୍ଦାବନରେ ଲୋକଟି ମରିବା ଫଳରେ କେତେ ଭାଗ୍ୟବାନ ନୁହେଁ ସତେ ? ମୁଁ ମଧ୍ୟ ଏଠାକୁ ଆସିଥିଲି ଓ ଆଶା କରିଥିଲି, ମୋର ଜୀବନ ଦୀପ ଲିଭିଯିବ ବୋଲି । କିନ୍ତୁ ଆଶ୍ଚର୍ଯ୍ୟର କଥା, ଏଠି ମୋତେ ଜ୍ୱର ଟିକିଏ ବି ହେଲାନାହିଁ । ମୁଁ ବର୍ତ୍ତମାନ ଆଉ ଯୁବାବୟସୀ ନୁହେଁ । ମୁଁ କେତେ

ବୁଢ଼ୀ ହେଲିଣି (ସେତେବେଳେ ଶ୍ରୀମା'ଙ୍କର ବୟସ ମାତ୍ର ତିରିଶି) । ମୁଁ ମୋ ଜୀବଦ୍ଦଶାରେ ମୋ ବାପା ଓ ମୋ ସ୍ୱାମୀଙ୍କର ବଡ଼ଭାଇଙ୍କ ପରି ବୟସ୍କ ଲୋକଙ୍କୁ ଦେଖିଛି ।' ଏହିପରିକା ପିଲାଳିଆମୀ ଦେଖି ଯୋଗୀନ୍ ମା' ହସିବାକୁ ଲାଗିଲେ ଏବଂ କହିଲେ, ''ମା' ! ତୁମେ କ'ଣ କହୁଛ ? ହଁ, ଏହା ସତ୍ୟ ଯେ ତୁମେ ତୁମର ବାପାଙ୍କୁ ଦେଖିଛ, କିନ୍ତୁ କୁହତ ଦେଖି, କିଏ ଏପରି ନଦେଖେ ?'

ଶ୍ରୀମା'ସାରଦା ବୃନ୍ଦାବନରେ ପ୍ରାୟ ବର୍ଷାଧିକ କାଳ ରହିଥିଲେ । ସେ ସେଠାରେ ଥିବା ଅଧିକାଂଶ ମନ୍ଦିରକୁ ବହୁଥର ଯାଇ ଦର୍ଶନ କରିଥିଲେ । ସେ ରାଧାରମଣ ମନ୍ଦିରକୁ ଯାଇ ପ୍ରାର୍ଥନା କଲେ, 'ହେ ପ୍ରଭୁ, ଅନ୍ୟଠାରେ ଦୋଷ ଦେଖିବାର ମୋର ଅଭ୍ୟାସକୁ ଦୂର କର । ମୁଁ ଯେପରି କେବେହେଲେ କାହାରି ଦୋଷ ଦେଖେ ନାହିଁ ।' ବୋଧହୁଏ ପ୍ରଭୁ ତାଙ୍କର ଏହି ପ୍ରାର୍ଥନାକୁ ଶୁଣିଥିଲେ ଏବଂ ପରବର୍ତ୍ତୀ ଜୀବନରେ ତାଙ୍କଠାରେ ଏହି ଅଭ୍ୟାସ ଆଦୌ ନ ଥିଲା । ଅନ୍ୟ କାହାଠାରେ ଏପରି ଦେଖିଲେ ସେ କହୁଥିଲେ, 'ପୂର୍ବରୁ ମୁଁ ମଧ୍ୟ ଅନ୍ୟର ଦୋଷ ଦେଖୁଥିଲି । ମୁଁ ଠାକୁରଙ୍କୁ ପ୍ରାର୍ଥନା କଲି । ମୋର ଏହି ଅଭ୍ୟାସରୁ ମୁଁ ମୁକ୍ତ ହେଲି । ତୁମେ ଜଣେ ଲୋକକୁ ହୁଏତ ହଜାରେ ଥର ସାହାଯ୍ୟ କରିଥାଇ ପାର କିନ୍ତୁ ଯଦି ତା'ର ଥରଟିଏ ଖରାପ କର, ସେ ରାଗକରି ତୁମଠାରୁ ମୁହଁ ବୁଲାଇ ଚାଲିଯିବ । ଅନ୍ୟର ଦୋଷ ଦେଖିବା ମନୁଷ୍ୟର ପ୍ରବୃତ୍ତି । ଅନ୍ୟର ଗୁଣର ପ୍ରଶଂସା କରିବାକୁ ଶିଖିବା ଉଚିତ୍ । ମଣିଷ ନିଃସନ୍ଦେହ ଭାବରେ ଭୁଲ୍ କରେ । କିନ୍ତୁ ଏହାକୁ ଦେଖିବା ଉଚିତ୍ ନୁହେଁ । ସବୁବେଳେ ଅନ୍ୟର ଦୋଷ ଦେଖିବା ଫଳରେ, ଜଣେ କେବଳ ଦୋଷ ଦେଖେ ।' ସେ ଯୋଗୀନ୍‌ମା'ଙ୍କୁ କହିଥିଲେ, 'ଯୋଗୀନ୍, ତୁମେ ଅନ୍ୟର ଦୋଷ ଦେଖନାହିଁ; କାରଣ ଏହା ଦ୍ୱାରା ତୁମ ଆଖି ଅପବିତ୍ର ହେବ ।'' ବୃନ୍ଦାବନରେ ଥିବା ବେଳଠାରୁ ତାଙ୍କର ଆଧାତ୍ମିକ କାର୍ଯ୍ୟ ଆରମ୍ଭ ହୋଇଥିଲା । ସେ ସେଠାରେ ସ୍ୱାମୀ ଯୋଗାନନ୍ଦଙ୍କୁ ଦୀକ୍ଷିତ କରାଇଥିଲେ । ସେ କହିଥିଲେ, 'ଦିନେ ଠାକୁର ମୋତେ ଦେଖାଦେଲେ ଏବଂ କହିଲେ, ସ୍ୱାମୀ ଯୋଗାନନ୍ଦଙ୍କୁ ଦୀକ୍ଷା ଦିଅ । ମୋତେ ଟିକିଏ ଭୟ ଲାଗିଲା । ମୁଁ ମଧ୍ୟ ଲାଜୁଆ ଅନୁଭବ କଲି । ମୁଁ ଭାବିଲି, 'ଏହା ପୁଣି କ'ଣ ? ଲୋକମାନେ କ'ଣ ଭାବିବେ ? ସେମାନେ କହିବେ, 'ମା' ନିଜର ଶିଷ୍ୟ କରିବାକୁ ଆରମ୍ଭ କଲେଣି ।' କିନ୍ତୁ ତିନି ରାତି ଧରି କ୍ରମାଗତ ଭାବରେ ଠାକୁର ମୋତେ କହୁଥିବାର ଶୁଣିଲି, 'ମୁଁ ଯୋଗୀନ୍‌କୁ ଦୀକ୍ଷା ଦେଇ ନାହିଁ । ତୁମେ ତାହାକର ।' ସେ ମଧ୍ୟ ମୋତେ କହିଲେ କି ମନ୍ତ୍ରଦେବାକୁ ହେବ । ତା' ପୂର୍ବରୁ ମୁଁ ଯୋଗୀନ୍ ସହିତ କଥାବାର୍ତ୍ତା ହୋଇ ନଥିଲି । ତେଣୁ ଠାକୁର ମୋତେ ଯୋଗୀନ୍ ମା' ଜରିଆରେ ଏ କାର୍ଯ୍ୟଟି କରିବାକୁ କହିଲେ । ମୁଁ ଯୋଗୀନ୍

ମା'ଙ୍କୁ ଏ ବିଷୟ କହିଲି । ସେ ଯୋଗୀନ୍‌କୁ ଦୀକ୍ଷା ବିଷୟରେ କହିଲେ ଏବଂ ଜାଣିଲେ ଯେ ଠାକୁର ତାଙ୍କୁ କୌଣସି ମନ୍ତ୍ରଦେଇ ନାହାନ୍ତି । ଠାକୁର ମଧ୍ୟ ଯୋଗୀନ୍‌ଙ୍କୁ ଦେଖାଦେଲେ ଏବଂ ମୋଠାରୁ ଦୀକ୍ଷା ନେବା କଥା କହିଲେ କିନ୍ତୁ ସେ ଏକଥା ମୋତେ କହିବାକୁ ସାହସ କରୁ ନଥିଲା । ଆମେ ଉଭୟ ଠାକୁରଙ୍କଠାରୁ ଆଦେଶ ପାଇବାରୁ, ମୁଁ ଯୋଗୀନ୍‌କୁ ଦୀକ୍ଷିତ କରାଇଲି ।'

ଦିନେ ଶ୍ରୀମା' ସାରଦା ତାଙ୍କ କୋଠରିରେ ପୂଜା କରୁଥିଲେ । ତାଙ୍କ ସମ୍ମୁଖରେ ଠାକୁରଙ୍କର ଗୋଟିଏ ଫଟୋ ଏବଂ ଠାକୁରଙ୍କର ଚିତାଭସ୍ମ ଥିବା ବାକ୍ସ ଥୁଆ ହୋଇଥିଲା । ସେ ସ୍ୱାମୀ ଯୋଗାନନ୍ଦଙ୍କୁ ଡକାଇ ପଠାଇଲେ ଏବଂ ତାଙ୍କ ନିକଟରେ ବସିବାକୁ କହିଲେ । ପୂଜା କରୁଥିବା ସମୟରେ, ସେ ସମାଧିସ୍ଥ ହେଲେ ଏବଂ ସେହି ଅବସ୍ଥାରେ ତାଙ୍କୁ ଦୀକ୍ଷିତ କଲେ । ସେ ପବିତ୍ର ମନ୍ତ୍ରକୁ ଏତେ ଜୋରରେ କହୁଥିଲେ ଯେ ପାଖ କୋଠରିରେ ଥିବା ଯୋଗୀନ୍ ମା' ଏହା ଶୁଣି ପାରିଥିଲେ ।

ସେ ବୃନ୍ଦାବନରୁ ହରଦ୍ୱାର ଯାତ୍ରା କରି ବ୍ରହ୍ମ କୁଣ୍ଡରେ ଠାକୁରଙ୍କର କିଛି ଚିତାଭସ୍ମକୁ ବିସର୍ଜନ କଲେ । ଏହାପରେ ଜୟପୁର, ପୁଷ୍କର, ଏଲାହାବାଦ ଦେଇ ଫେରି ଆସିଲେ କଲିକତା । ଏଲାହାବାଦରେ ଠାକୁରଙ୍କର କେଶରାଶିକୁ ଗଙ୍ଗା, ଯମୁନା ଓ ତ୍ରିବେଣୀ ସଂଗମରେ ଅର୍ପିତ କରିଥିଲେ । ସେ ଏ ସଂପର୍କରେ କହିଥିଲେ, 'ମୁଁ ଗଙ୍ଗା ଓ ଯମୁନାର ସଂଗମ ସ୍ଥଳରେ ପହଞ୍ଚିଲି । ସେଠାରେ ପାଣି ଅତ୍ୟନ୍ତ ସ୍ଥିର । ହାତରେ ଠାକୁରଙ୍କ କେଶରାଶିକୁ ଧରି ତାକୁ ପାଣିରେ ପକାଇବାକୁ ଭାବୁଛି, ଏହି ସମୟରେ ପାଣି ଢେଉଉଠି ମୋ ହାତରୁ କେଶକୁ ନେଇଗଲା । ପବିତ୍ର ଜଳ ମୋ ହାତରୁ କେଶରାଶି ନେଇ, ତାହାର ସଂସ୍ପର୍ଶରେ ଯେପରି ଅଧିକ ପବିତ୍ର ହେବାକୁ ଚାହୁଁଥିଲା ।' ଏହି ବୃନ୍ଦାବନର ତୀର୍ଥଯାତ୍ରା ପରେ ଶ୍ରୀମା' ଅନେକ ଥର ତୀର୍ଥାଟନ କରିଥିଲେ । ଏପ୍ରିଲ୍ ୧୮୮୮ ମସିହାରେ ସ୍ୱାମୀ ଅଦ୍ୱୈତାନନ୍ଦ (ଗୋପାଳ ବଡ଼)ଙ୍କ ସହିତ ଗୟା ଯାଇଥିଲେ । ଶ୍ରୀ ରାମକୃଷ୍ଣ ତାଙ୍କ ମା'ଙ୍କର ମୃତ୍ୟୁ ପରେ ଶ୍ରୀମା'ଙ୍କୁ ଗୟା ଯାଇ ପିଣ୍ଡ ଦେବାକୁ କହିଥିଲେ । ଠାକୁରଙ୍କର ଇଚ୍ଛାକୁ ପୂର୍ଣ୍ଣ କରିବାକୁ ବର୍ତ୍ତମାନ ସେ ଚାହିଁଲେ । ଗୟାରୁ ବୁଦ୍ଧଙ୍କର ବୁଦ୍ଧତ୍ୱ ପ୍ରାପ୍ତିର ସ୍ଥାନ ବୁଦ୍ଧଗୟା ଦେଖିବାକୁ ମଧ୍ୟ ଯାଇଥିଲେ । ସେ ବୌଦ୍ଧ ସନ୍ନ୍ୟାସୀମାନଙ୍କର ଆବାସସ୍ଥାନ ଦେଖି, ଠାକୁରଙ୍କର ଶିଷ୍ୟମାନେ ସେପରି ଆବାସସ୍ଥାନ ତିଆରି କରି ରୁହନ୍ତୁ ବୋଲି ଠାକୁରଙ୍କୁ ପ୍ରାର୍ଥନା କରିଥିଲେ । ଏହି ଘଟଣା ସଂପର୍କରେ ସେ ନିଜେ କହିଛନ୍ତି, "ଆହା ! ଏଇଥି ପାଇଁ ମୁଁ କେତେ ଲୁହ ଆଖିରୁ ଝରାଇଛି ଏବଂ ଠାକୁରଙ୍କୁ ପ୍ରାର୍ଥନା କରି କହିଛି । ତାପରେ ତାଙ୍କର ଆଶୀର୍ବାଦରୁ ଆଜିର ଏହି ମଠ ଏମିତି ହୋଇଛି । ଠାକୁର ତାଙ୍କର ଶରୀର

ତ୍ୟାଗ କରି ଚାଲିଯିବା ପରେ, ବାଳକମାନେ ସଂସାର ତ୍ୟାଗ କଲେ ଏବଂ ଏକ ଭଡ଼ା ଘରଟିଏ ନେଇ ଏକାଠି ରହିଲେ । ତାପରେ ସେମାନେ ଇତଃସ୍ତତଃ କିଛି ଦିନ ସ୍ୱାଧୀନ ଭାବରେ ବୁଲିବାକୁ ଲାଗିଲେ । ମୁଁ ଅତ୍ୟନ୍ତ ଗଭୀର ଭାବରେ ଦୁଃଖ ଅନୁଭବ କଲି ଏବଂ ଠାକୁରଙ୍କୁ ପ୍ରାର୍ଥନା କଲି, 'ପ୍ରଭୁ ! ଆପଣ ଆସିଲେ । ଏମାନଙ୍କ ସହିତ ଲୀଳାଖେଳା କଲେ ଏବଂ ତାପରେ ଚାଲିଗଲେ । ସେତିକିରେ କ'ଣ ସବୁ ଶେଷ ହୋଇଯିବ ? ଯଦି ତାହା, ତେବେ ତୁମର ଆବିର୍ଭାବ ହେବାର ଆବଶ୍ୟକତା କ'ଣ ଥିଲା ଏବଂ ଏତେ କଷ୍ଟ ସ୍ୱୀକାର କରିବାର କ'ଣ ଦରକାର ଥିଲା ? ମୁଁ ବନାରସ ଓ ବୃନ୍ଦାବନରେ ଦେଖିଛି ବହୁ ସାଧୁଲୋକ ଭିକ୍ଷାମାଗି ବଞ୍ଚନ୍ତି ଏବଂ ଗୋଟିଏ ଗଛତଳୁ ଯାଇ ଆଉ ଗୋଟିଏ ଗଛତଳେ ରୁହନ୍ତି । ସେପରି ସାଧୁଲୋକଙ୍କର ସଂଖ୍ୟାର ଅଭାବ ନାହିଁ । ମୋର ପୁତ୍ରମାନେ ଯେଉଁମାନେ ତୁମ ନାମରେ ସଂସାର ତ୍ୟାଗ କଲେ ସେମାନେ ଖାଦ୍ୟ ଭିକ୍ଷା କରି ବଞ୍ଚିବେ, ଏହା ମୋର ଆଖିକୁ ସହ୍ୟ ହେବନାହିଁ । ମୋର ତୁମ ନିକଟରେ ପ୍ରାର୍ଥନା ଯେ ତୁମ ନାମରେ ଯେଉଁମାନେ ସଂସାର ତ୍ୟାଗ କଲେ ସେମାନଙ୍କର ସାମାନ୍ୟତମ ଆବଶ୍ୟକତା ଯେପରି ପୂରଣ ହୁଏ । ସେମାନେ ତୁମର ଆଦର୍ଶ ଓ ଭାବକୁ ନେଇ ବଞ୍ଚିବେ ଏବଂ ସଂସାରର ଲୋକମାନେ ସଂସାର ଝଞ୍ଜାଳରେ ଆକ୍ରାନ୍ତ ହୋଇ ତାଙ୍କର ଆଶ୍ରୟ ଗ୍ରହଣ କରିବେ ଏବଂ ସେମାନଙ୍କଠାରୁ ତୁମ୍ଭ ନାମ ଶ୍ରବଣ କରି ଶାନ୍ତି ଲାଭ କରିବେ । ସେଇଥିପାଇଁ ତୁମେ ଆସିଥିଲ । ସେମାନେ ଇତଃସ୍ତତଃ ବୁଲୁଥିବାର ଦେଖି ଦୁଃଖରେ ମୋ ହୃଦୟ କୋରି ହୋଇ ଯାଉଛି ।' ଏହାପରେ ନରେନ୍ ଏହିସବୁ ମଠ ତିଆରି କଲା ।"

ସେ ନଭେମ୍ବର ୧୮୮୮ରେ ପୁରୀ, ୧୮୯୪ରେ ପୁନର୍ବାର ବନାରସ ଓ ବୃନ୍ଦାବନ, ୧୯୦୪ରେ ପୁରୀ ଏବଂ କାମାରପୁକୁରଠାରୁ ୨୮ କି.ମି ଦୂର ବିଷ୍ଣୁପୁର ମଧ ଯାତ୍ରା କରିଥିଲେ । ଏହି ସ୍ଥାନକୁ ଶ୍ରୀରାମକୃଷ୍ଣ 'ଗୁପ୍ତ ବୃନ୍ଦାବନ' ବୋଲି କହି ସେଠାକୁ ଯିବାକୁ ତାଙ୍କୁ କହିଥିଲେ । ୧୯୧୦ ମସିହାରେ ରାମେଶ୍ୱର ଯିବା ବାଟରେ ସେ ବାଲେଶ୍ୱରର କୋଠାର ଠାରେ ଅବସ୍ଥାନ କରିଥିଲେ । ମାନ୍ଦ୍ରାଜ ଦେଇ ରାମେଶ୍ୱର ଯିବାବେଳେ ସେ ବ୍ରହ୍ମପୁର ଠାରେ ଦିନଟିଏ ମଧ ଥିଲେ । ରାମେଶ୍ୱରଠାରେ ସେ ତିନିଦିନ ଅବସ୍ଥାନ କରିଥିଲେ । କାହାରିକୁ ଏହି ମନ୍ଦିରର ଗର୍ଭଗୃହକୁ ପ୍ରବେଶ କରି ସେଠାକାର ଅଧିଷ୍ଠିତ ମହାଦେବଙ୍କୁ ସ୍ପର୍ଶ କରିବାର ଅନୁମତି ନ ଥିଲେ ମଧ ରାମନାଦ ରାଜାଙ୍କର ଆଦେଶ ଫଳରେ ଶ୍ରୀମା'ଙ୍କୁ ସେ ସୁଯୋଗ ମିଳିଥିଲା । ଦିନେ ଶିବଲିଙ୍ଗ ପୂଜା କରିବା ସମୟରେ ଏକ ଆଶ୍ଚର୍ଯ୍ୟ ଜନକ ଘଟଣା ଘଟିଲା । ମୂର୍ତ୍ତି ସ୍ୱର୍ଣ୍ଣପେଟିକା ଦ୍ୱାରା ଆଚ୍ଛାଦିତ ଥାଆନ୍ତି । କିନ୍ତୁ ଶ୍ରୀମା'ଙ୍କର ଅଭିଷେକ ପାଇଁ ଏହାକୁ ଉନ୍ମୁକ୍ତ କରି

ଦିଆଗଲା । ବ୍ରହ୍ମଚାରୀ କ୍ରିଷଲାଲ୍ ଯେକି ଶ୍ରୀମା'ଙ୍କ ସହିତ ଥିଲେ ଶ୍ରୀମା' ସ୍ୱଗତୋକ୍ତି କରୁଥିବାର ଶୁଣିବାକୁ ପାଇଲେ, 'ମୁଁ ଯେମିତି ରଖିଦେଇ ଯାଇଥିଲି, ସେହିପରି ରହିଛି ।' ଏବଂ ଶ୍ରୀମା' ପୁନଶ୍ଚ ନିଜକୁ ସଂଶୋଧନ କରି କହିଲେ, 'କେତେଟା ମୂଲ୍ୟହୀନ ଶବ୍ଦ ମୋ ମୁହଁରୁ ବାହାରି ପଡ଼ିଲା ।' ତାଙ୍କୁ କଲିକତା ଠାରେ କୋଖାଲପଡ଼ାର କେଦାର ବାବୁ ତାଙ୍କର ଅନୁଭୂତି ସଂପର୍କରେ ଯେତେବେଳେ ପ୍ରଶ୍ନ କଲେ, ସେ ପୁଣି କହିଲେ, 'ପୁଅ, ମୁଁ ତାଙ୍କୁ ଯେମିତି ଛାଡ଼ି ଆସିଥିଲି, ସେଇମିତି ଅଛନ୍ତି ।' ସେବାଟ ଦେଇ ଯାଉଥିବା ଗୋଲାପମା' ମଧ ଏହା ଶୁଣିବାକୁ ପାଇଲେ । ଏହାର ଗୂଢ଼ ଅର୍ଥ ପଚାରିବାରୁ ଶ୍ରୀମା' ଘଟଣାଟିକୁ ଏଡାଇବାକୁ ଯାଇ କହିଲେ, 'କ'ଣ ? ମୁଁ ମୂର୍ତ୍ତିକୁ ଦେଖି ଅତ୍ୟନ୍ତ ଖୁସି ହେବା କଥା କହିଲି ।'

ଗୋଲାପମା' ଘୋଷଣା କଲେ ଯେ ଶ୍ରୀମା' ସାରଦା ଅନ୍ୟ କେହି ନୁହଁନ୍ତି, ସେ ହେଉଛନ୍ତି ସୀତା, ଲଙ୍କା ବିଜୟ ପରେ ଶ୍ରୀରାମ ତାଙ୍କର ଉପସ୍ଥିତିରେ ରାମେଶ୍ୱରଠାରେ ଶିବମୂର୍ତ୍ତି ସ୍ଥାପନା କରିଥିଲେ ।

ରାମେଶ୍ୱରର ଅନୁଭୂତି ବର୍ଣ୍ଣନା କରି ଶ୍ରୀମା' କହିଥିଲେ, ଶଶି (ସ୍ୱାମୀ ରାମକୃଷାନନ୍ଦ) ରାମେଶ୍ୱରରେ ଶିବଙ୍କୁ ପୂଜା କରିବା ପାଇଁ ୧୦୦ ସ୍ୱର୍ଣ୍ଣରେ ନର୍ମିତ ବେଲପତ୍ର ନିର୍ମାଣ କରି ଆଣିଥିଲେ । ମୋର ଆସିବା ଖବର ପାଇ ରାମନାଦର ରାଜା ତାଙ୍କର କର୍ମଚାରୀମାନଙ୍କୁ ମୋତେ ତାଙ୍କର ପ୍ରାସାଦ ଓ ଧନସମ୍ପତ୍ତି ଦେଖାଇବା ପାଇଁ କହିଥିଲେ । ସେ ଆହୁରି ମଧ କହିଥିଲେ ଯେ ଯଦି ମୁଁ କୌଣସି ଜିନିଷକୁ ଭଲ ପାଏ, ମୋତେ ତାକୁ ଉପହାର ଦେବେ । କିନ୍ତୁ ମୋର ସେଠାରେ କ'ଣ ଆବଶ୍ୟକ ? କୌଣସି ନିଷ୍ପତ୍ତିରେ ନ ପହଞ୍ଚି, ମୁଁ କହିଲି, 'ମୋର ଯାହା ଆବଶ୍ୟକ ତାହା ଶଶି ଠିକ୍ କରି ଦେଇଛି ।' କିନ୍ତୁ ସେହି କର୍ମଚାରୀଙ୍କର ଇଚ୍ଛାକୁ କ୍ଷୁଣ୍ଣ ନ କରିବା ପାଇଁ, ମୁଁ କହିଲି, ଯଦି ରାଧୁ କିଛି ଚାହୁଁଥାଏ, ସେ ମାଗିପାରେ ।' ମୁଁ ରାଧୁକୁ କହିଲି, ତୁମର ଯାହା ଦରକାର, ତୁମେ ନେଇପାର । ଯେତେବେଳେ ହୀରା ଓ ଅନ୍ୟାନ୍ୟ ମୂଲ୍ୟବାନ ପଥର ପ୍ରଭୃତି ଦେଖାଇଲେ, ମୋ ଛାତି ଥରିବାକୁ ଲାଗିଲା । ମୁଁ ଠାକୁରଙ୍କୁ ମନେ ମନେ ପ୍ରାର୍ଥନା କଲି, 'ହେ ପ୍ରଭୁ, ଦେଖ ଯେ ରାଧୁ ଯେପରି ଏ ସବୁ କୌଣସି ଜିନିଷକୁ ନ ଚାହେଁ ।' ଶେଷରେ ରାଧୁ କହିଲା, 'ମୁଁ କ'ଣ ନେବି ? ମୁଁ ଏସବୁ ଜିନିଷକୁ ଆଦୌ ଚାହେଁନାହିଁ । ମୋର ପେନ୍‌ସିଲ ହଜିଯାଇଛି । ମୋ ପାଇଁ ଗୋଟିଏ ପେନ୍‌ସିଲ୍ କିଣି ଦିଅ ।' ମୁଁ ଆଶ୍ୱସ୍ତିର ଦୀର୍ଘଶ୍ୱାସ ଛାଡ଼ିଲି । ବାହାରକୁ ଆସି ରାସ୍ତାକଡ଼ ଦୋକାନରୁ ଅଧଅଣାର ପେନ୍‌ସିଲ୍‌ଟିଏ କିଣିଦେଲି ।'

ରାମେଶରରୁ ମାନ୍ଦ୍ରାଜ, ମାନ୍ଦ୍ରାଜରୁ ବାଙ୍ଗାଲୋର ଆସି ସେଠାରେ କିଛିଦିନ

ଅବସ୍ଥାନ କଲେ । ବହୁ ଲୋକ ତାଙ୍କୁ ଦର୍ଶନ କରିବାକୁ ଆସୁଥିଲେ । ତାହାକୁ ଲକ୍ଷ୍ୟ କରି ସେ କହିଛନ୍ତି, 'ବାଙ୍ଗାଲୋରରେ କେତେ ଲୋକଙ୍କୁ ମୁଁ ସାକ୍ଷାତ୍ କଲି । ମୁଁ ଟ୍ରେନ୍‌ରୁ ଓହ୍ଲାଇବା ମାତ୍ରେ ଲୋକମାନେ ମୋ ଉପରେ ପୁଷ୍ପବୃଷ୍ଟି କଲେ । ରାସ୍ତାଉପରେ ଫୁଲ ଗଦା ହୋଇଗଲା, ଠାକୁରଙ୍କର ବାର୍ତ୍ତା ଚାରିଆଡ଼େ ପ୍ରଚାରିତ ହୋଇଯାଇଥିଲା, ସେଇଥିପାଇଁ ଏତେ ଲୋକ ଆସିଥିଲେ ।'

ଦିନେ ସଂଧ୍ୟାରେ ଆଶ୍ରମ ପଛପାଖରେ ଥିବା ପ୍ରସ୍ତର ଖଣ୍ଡ ଉପରେ ବସି ଶ୍ରୀମା' ଜପକରି, ତାହାକୁ ପବିତ୍ର କରିଦେଲେ । ସ୍ୱାମୀ ରାମକୃଷ୍ଣାନନ୍ଦ ସେଠାରେ ଶ୍ରୀମା'ଙ୍କୁ ଦେବୀ ପର୍ବତବାସିନୀ ଭାବେ ପୂଜା କରି ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ ଶ୍ରୀମା' ତାଙ୍କ କରକମଳକୁ ସ୍ୱାମୀ ରାମକୃଷ୍ଣନନ୍ଦଙ୍କ ମୁଣ୍ଡ ଉପରେ ରଖି ଆଶୀର୍ବାଦ କରିଥିଲେ ।

ଫେରିବା ବାଟରେ ସେ ଗୋଦାବରୀରେ ସ୍ନାନ କରିବା ପାଇଁ ରାଜମହେନ୍ଦ୍ରୀରେ ରହିଥିଲେ ଓ ପୁରୀରେ କିଛିଦିନ ରହି ୧୯୧୧ ଏପ୍ରିଲ୍ ୧୧ ତାରିଖ ଦିନ କଲିକତାରେ ପହଞ୍ଚିଲେ ।

୧୯୧୨ ମସିହାରେ ତୃତୀୟ ଥର ପାଇଁ ସେ ବନାରସ ଯାତ୍ରା କରିଥିଲେ । ସେତେବେଳକୁ ସେଠାରେ ରାମକୃଷ୍ଣ ମିଶନ ସେବାଶ୍ରମ ଆରମ୍ଭ ହୋଇଥାଏ । ଶ୍ରୀମା' ତାହାକୁ ବୁଲି ଦେଖି ଅତ୍ୟନ୍ତ ପ୍ରୀତ ହୋଇ କହିଥିଲେ, 'ଠାକୁର ଏଠାରେ ବିଦ୍ୟମାନ । ଦେବୀ ଲକ୍ଷ୍ମୀ ତାଙ୍କର ସମୁଜ୍ଜ୍ୱଳ ପ୍ରତିଭାରେ ମଧ୍ୟ ଉପସ୍ଥିତ । ଏହି ସ୍ଥାନ ଏତେ ସୁନ୍ଦର ଲାଗୁଛି ଯେ ଏଠାରେ ରହିଯିବାକୁ ଇଚ୍ଛା ହେଉଛି ।' ସେ ଦଶଟଙ୍କା ଦାନ ମଧ୍ୟ କରିଥିଲେ ।

ଶ୍ରୀମା' ବୌଦ୍ଧ ଭଗ୍ନାବଶେଷ ଦେଖିବାକୁ ସାରନାଥ ଯାଇଥିଲେ ଏବଂ ନାନକ ପନ୍ଥୀ ସନ୍ନ୍ୟାସୀ ଓ ଚମେଲି ପୁରୀଙ୍କୁ ମଧ୍ୟ ଦର୍ଶନ କରିଥିଲେ । ସେ ୧୬ ଜାନୁଆରୀ ୧୯୧୩ ମସିହାରେ କଲିକତାକୁ ଫେରି ଆସିଲେ ।



# ଓଡ଼ିଶା ମାଟିରେ ଦିବ୍ୟସ୍ପର୍ଶ

୧୮୮୮ ମସିହା ନଭେମ୍ବର ମାସ ଶେଷ ଆଡ଼କୁ ଶ୍ରୀମା' ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରିବାକୁ ପୁରୀ ଆସିଥିଲେ । ଏହି ଯାତ୍ରା ଥିଲା ଅତ୍ୟନ୍ତ କଷ୍ଟସାଧ । ସେମାନେ ବଡ଼ ଜାହାଜରେ କଲିକତାରୁ ଚାନ୍ଦବାଲିକୁ ଓ ସେଠାରୁ ଷ୍ଟିମର ଯୋଗେ କଟକ ଆସି ସେଠାରୁ ବଳଦ ଗାଡ଼ିରେ ପୁରୀ ଅଭିମୁଖେ ଯାତ୍ରା କରିଥିଲେ । କଟକରେ ଯେଉଁ ସ୍ଥାନରେ ଶ୍ରୀମା' ଷ୍ଟିମରରୁ ଓହ୍ଲାଇ ଥିଲେ ସେହି ମାତାମଠ ନିକଟରେ ବର୍ତ୍ତମାନ ବିବେକାନନ୍ଦ ମନ୍ଦିର ରାମକୃଷ୍ଣ ଭାବ ପ୍ରଚାର ପରିଷଦ ଦ୍ୱାରା ନିର୍ମିତ ହୋଇଛି । ତାଙ୍କ ସହିତ ଥିଲେ ଯୋଗୀନ୍‌ମା', ସ୍ୱାମୀ ବ୍ରହ୍ମାନନ୍ଦ, ସ୍ୱାମୀ ଯୋଗାନନ୍ଦ ଓ ସ୍ୱାମୀ ସାରଦାନନ୍ଦ । ବଳରାମ ବୋଷଙ୍କର ପରିବାରର ପୁରୀଠାରେ ଥିବା କ୍ଷେତ୍ରବାସୀ ମଠରେ ସେମାନଙ୍କ ରହିବାର ବ୍ୟବସ୍ଥା କରାଯାଇଥିଲା । ବଳରାମ ବୋଷଙ୍କର ଭାଇ ହରିବଲ୍ଲଭ ପ୍ରସିଦ୍ଧ ଓକିଲ ଥିଲେ । ପୁରୀର ପଣ୍ଡାମାନେ ତାଙ୍କୁ ମଧ୍ୟ ବହୁତ ସମ୍ମାନ କରୁଥିଲେ । ଶ୍ରୀମା' ଓ ତାଙ୍କ ସହିତ ଥିବା ଶିଷ୍ୟ ଓ ଭକ୍ତମାନଙ୍କୁ ସସମ୍ମାନେ ପାଛୋଟି ନେବା ପାଇଁ ପାଲିଙ୍କିର ବ୍ୟବସ୍ଥା କରିବାକୁ ପଣ୍ଡା ଗୋବିନ୍ଦ ସିଂହାରୀ କହିବାରୁ ଶ୍ରୀମା' ତାଙ୍କୁ କହିଲେ, 'ନାଁ ଗୋବିନ୍ଦ, ତୁମେ ମୋତେ ମନ୍ଦିର ନିକଟକୁ ନେଇଯାଅ । ମୁଁ ତୁମ ପଛେ ପଛେ ଜଣେ ସାଧାରଣ ଦୀନ ଭିକାରି ମହିଳା ପରି ଯାଇ ବିଶ୍ୱ ନିୟନ୍ତା ପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବି ।'

ଶ୍ରୀରାମକୃଷ୍ଣ ଜଗନ୍ନାଥଧାମ ଆସି ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିନଥିଲେ । ତେଣୁ ଶ୍ରୀମା' ସାରଦା ଠାକୁରଙ୍କର ଫଟୋ ଲୁଗାରେ ଗୁଡ଼ାଇ ନେଇ କରି ଆସିଥିଲେ ଏବଂ ତାହା ଜଗନ୍ନାଥଙ୍କ ମୂର୍ତ୍ତି ସମ୍ମୁଖରେ ଟେକି ଧରିଲେ । ସେ ପୁରୀରେ ପ୍ରାୟ ଚାରିମାସ ରହିଥିଲେ । ପ୍ରାୟ ସକାଳେ ଓ ସନ୍ଧ୍ୟା ଆରତି ସମୟରେ ଠାକୁରଙ୍କୁ ଦର୍ଶନ କରୁଥିଲେ । ଅଧିକାଂଶ ସମୟ ଲକ୍ଷ୍ମୀ ମନ୍ଦିରରେ ବସି ଧ୍ୟାନ କରୁଥିଲେ । ଜଗନ୍ନାଥଙ୍କ ସଂପର୍କରେ ନିଜର ସ୍ମୃତି ଚାରଣ କରି କହିଥିଲେ, 'ମୁଁ ଦେଖିଲି ଜଗନ୍ନାଥ ରତ୍ନ ସିଂହାସନ ଉପରେ ସିଂହ ତୁଲ୍ୟ ବିଦ୍ୟମାନ ଏବଂ ମୁଁ ତାଙ୍କ ନିକଟରେ ଦାସୀ ଭାବରେ ସେବା କରୁଅଛି ।' ସେ ଜଗନ୍ନାଥ ମୂର୍ତ୍ତି ସଂପର୍କରେ ସ୍ୱପ୍ନ ଦେଖିଥିଲେ ଏବଂ କହୁଥିଲେ

ସେ ମୂର୍ତ୍ତି ବାସ୍ତବରେ ଶିବମୂର୍ତ୍ତି ଏବଂ ଲକ୍ଷେ ଶାଳଗ୍ରାମ ଉପରେ ଉପବେଶନ କରିଅଛନ୍ତି ।

ଐତିହାସିକ ମାନଙ୍କ ମତ ସହିତ ଶ୍ରୀମା'ଙ୍କ ମତ ବହୁତ ଖାପ ଖାଇଯାଏ । ବର୍ତ୍ତମାନ ଏହି ମୂର୍ତ୍ତିକୁ କୃଷ୍ଣ ବା ବିଷ୍ଣୁ ବୋଲି ବିଚାର କରାଯାଏ । ଏହା ପୂର୍ବରୁ ବୌଦ୍ଧମନ୍ଦିର ଥିବାର କେତେକ ଐତିହାସିକ ମତ ଦିଅନ୍ତି ଏବଂ ଶଙ୍କରାଚାର୍ଯ୍ୟଙ୍କର ଶିଷ୍ୟମାନେ ଏହାକୁ ଶିବ ଭାବେ ଏବଂ ବୈଷ୍ଣବମାନେ ପରେ ଏହାକୁ ବିଷ୍ଣୁ ମୂର୍ତ୍ତି ରୂପେ ଗ୍ରହଣ କଲେ ।

ଜଗନ୍ନାଥଙ୍କ ରଥଯାତ୍ରାରେ ବହୁଲୋକ ସମାବେଶ ସଂପର୍କରେ ସ୍ୱାମୀ ଅରୂପାନନ୍ଦଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀମା' କହିଥିଲେ, ଥରେ ରଥଯାତ୍ରା ସମୟରେ ମୁଁ ପୁରୀଠାରେ ଜଗନ୍ନାଥଙ୍କର ମୂର୍ତ୍ତି ଦେଖିଥିଲି । ପ୍ରଭୁଙ୍କର ମୂର୍ତ୍ତିକୁ ବହୁଲୋକ ଦେଖିବାକୁ ପାଉଥିବାରୁ ମୁଁ ଆନନ୍ଦରେ କାନ୍ଦିବାକୁ ଲାଗିଲି । 'ମୁଁ ନିଜକୁ ନିଜେ କହିଲି, ''ଆହା, ଏହା ଅତି ଉତ୍ତମ । ସେମାନଙ୍କର ମୋକ୍ଷ ହେବ ।' କିନ୍ତୁ ପରେ ମୁଁ ଅନୁଭବ କଲି ଯେ ଏହା ସେପରି ନୁହେଁ । ସେମାନଙ୍କ ମଧ୍ୟରୁ ଜଣେ କିମ୍ବା ଦୁଇଜଣ ଯେଉଁମାନେ ସଂପୂର୍ଣ୍ଣ ଆସକ୍ତି ତ୍ୟାଗ କରିଛନ୍ତି, ସେମାନେ ମୁକ୍ତିଲାଭ କରିପାରନ୍ତି । ମୁଁ ଏ ଘଟଣା ଯୋଗୀନ୍‌ମା'ଙ୍କୁ କହିବାରୁ ସେ କହିଲେ, 'ହଁ ମା' ! ଯେଉଁଲୋକମାନେ ଆସକ୍ତି ଶୂନ୍ୟ ସେମାନେ କେବଳ ମୋକ୍ଷଲାଭ କରିବେ ।'

୧୯୦୪ ନଭେମ୍ବର ମାସରେ ସେ ଦ୍ୱିତୀୟ ଥର ପାଇଁ ପୁନଶ୍ଚ ତାଙ୍କର ପାଗିଳୀ ଭାଉଜ ସୁରବାଳା, ଝିଆରୀ ରାଧୁ, ଭାଇ କାଳୀ ଏବଂ ତାଙ୍କ ପରିବାର, ସ୍ୱାମୀ ପ୍ରେମାନନ୍ଦ ଓ ଠାକୁରଙ୍କର ଅନ୍ୟାନ୍ୟ ଭକ୍ତମାନଙ୍କ ସହିତ ପୁରୀ ଆସିଥିଲେ । ପୁରୀରେ ଥିବାବେଳେ ତାଙ୍କ ଗୋଡ଼ରେ ଗୋଟିଏ ବଥ ହୋଇ ଅତ୍ୟନ୍ତ ଯନ୍ତ୍ରଣା ଦେଉଥିଲା । ସେ ତାକୁ କାହାକୁ ଦେଖିବାକୁ କିମ୍ବା ଛୁଇଁବାକୁ ମଧ୍ୟ ଦେଉ ନଥିଲେ । ସ୍ୱାମୀ ପ୍ରେମାନନ୍ଦ ଏହା ଜାଣିପାରି ଜଣେ ଡାକ୍ତରଙ୍କ ସହିତ ପରାମର୍ଶ କଲେ । ସେ ଡାକ୍ତର ଥିଲେ ଶ୍ରୀମା'ଙ୍କର ଭକ୍ତ । ଡାକ୍ତର ଶ୍ରୀମା'ଙ୍କ ନିକଟକୁ ଆସି ସାଷ୍ଟାଙ୍ଗ ପ୍ରଣାମ କରିବା ସମୟରେ ସେହି ବଥଟିକୁ କାଟି ସଫା କରିଦେଲେ । ବଥର ଯନ୍ତ୍ରଣା ଫଳରେ ଶ୍ରୀମା'ଙ୍କ ମନରେ ଯଦିଓ ସେହି ମୁହୂର୍ତ୍ତରେ ବିରକ୍ତିଭାବ ପ୍ରକାଶ ପାଇଥିଲା, କିନ୍ତୁ ଅପରେସନ୍ ପରେ ସେ ଯନ୍ତ୍ରଣାରୁ ମୁକ୍ତିଲାଭ କଲେ । ତା'ପରେ ତାଙ୍କର ସ୍ୱାସ୍ଥ୍ୟ ଭଲ ହେବାକୁ ଲାଗିଲା ଏବଂ ସେ ପୁରୀଠାରେ ଥିବା ଅନ୍ୟାନ୍ୟ ତୀର୍ଥସ୍ଥାନ ଦର୍ଶନ କରି ପାରିଲେ । ଏପରିକି ସମୁଦ୍ରରେ ମଧ୍ୟ ଦୁଇଥର ସ୍ନାନ କରିଥିଲେ । ଅତି ଆନନ୍ଦରେ ପ୍ରାୟ ଦୁଇମାସ କାଳ ପୁରୀରେ କଟାଇଥିଲେ ।

ଶ୍ରୀମା' ରାମେଶ୍ୱର ଯିବା ପାଇଁ ୧୯୧୦ ଡିସେମ୍ବର ମାସରେ ବାହାରିଲେ । କଲିକତାରୁ ବାହାରି ତତ୍‌କାଳୀନ ବାଲେଶ୍ୱର ଜିଲ୍ଲା ବର୍ତ୍ତମାନ ଭଦ୍ରକ ଜିଲ୍ଲାର କୋଠାରଠାରେ ୧୯୧୦ ମସିହା ଡିସେମ୍ବର ୫ ତାରିଖରେ ପହଞ୍ଚି ପ୍ରାୟ ୨ମାସ କାଳ ଅବସ୍ଥାନ କରିଥିଲେ । ଏହା ଠାକୁରଙ୍କର ଭକ୍ତ ବଳରାମ ବୋଷଙ୍କର ଜମିଦାରୀ ଅନ୍ତର୍ଭୁକ୍ତ ଥିଲା । ଶ୍ରୀମାଙ୍କ ସହିତ ଗୋଲାପ ମା', ରାମକୃଷ୍ଣ ବାବୁଙ୍କ ମା', ରାଧୁ, ସ୍ୱାମୀ ବ୍ରହ୍ମାନନ୍ଦ, ସ୍ୱାମୀ ଅଖଣ୍ଡାନନ୍ଦ ପ୍ରଭୃତି ଆସିଥିଲେ । ଭଦ୍ରକ ଷ୍ଟେସନରେ ସ୍ୱାମୀ ପ୍ରେମାନନ୍ଦଜୀଙ୍କ ଭାଇ ତୁଳସୀ ରାମବାବୁ ଉପସ୍ଥିତ ଥିଲେ । ଭଦ୍ରକ କଚେରୀ ଘରେ କିଛି ସମୟ ବିଶ୍ରାମ କରି ଶ୍ରୀମା' ପାଲିଙ୍କିରେ ପ୍ରାୟ ୧୨ କି:ମି ଦୂରରେ ଥିବା କୋଠାରକୁ ଯାଇଥିଲେ । ରାଧାଶ୍ୟାମ ମନ୍ଦିର ପରିସରରେ ଥିବା ଗୃହ ମଧ୍ୟରେ ଶ୍ରୀମା' ଓ ଅନ୍ୟମାନଙ୍କର ରହିବା ବ୍ୟବସ୍ଥା କରାଯାଇଥିଲା । ସେଠାରେ ସରସ୍ୱତୀ ପୂଜା ମହାଆଡ଼ମ୍ବର ସହକାରେ ପାଳନ କରାଗଲା । ଶ୍ରୀମା' ସେଠାରେ କେତେଜଣ ଭକ୍ତଙ୍କୁ ଦୀକ୍ଷିତ କରିଥିଲେ । କୋଠାର ପୋଷ୍ଟମାଷ୍ଟର ଶ୍ରୀ ଦେବେନ୍ଦ୍ର ନାଥ ଚାଟାର୍ଜୀ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ଏହାଦ୍ୱାରା ସେ ମାନସିକ ଶାନ୍ତି ପାଉନଥିଲେ । ହିନ୍ଦୁଧର୍ମକୁ ଫେରିଆସିବାକୁ ତାଙ୍କ ମନରେ ସଦାସର୍ବଦା ବ୍ୟାକୁଳତା ଲାଗି ରହିଥିଲା । ସେ ଶ୍ରୀ ଶ୍ରୀ ମା'ଙ୍କୁ ଅନୁରୋଧ କଲେ । ଶ୍ରୀମା'ଙ୍କ ନିର୍ଦ୍ଦେଶ ଅନୁସାରେ ଦେବେନ୍ଦ୍ର ବାବୁ ସରସ୍ୱତୀ ପୂଜାର ପୂର୍ବଦିନ ଶ୍ରୀ ରାଧାଶ୍ୟାମ ମନ୍ଦିରରେ ଯଥାବିଧି ପ୍ରାୟଶ୍ଚିତ କରି ଗାୟତ୍ରୀ ଓ ଯଜ୍ଞୋପବିତ ଧାରଣ କଲେ । କୃଷ୍ଣଲାଲ ମହାରାଜ (ସ୍ୱାମୀ ଧୀରାନନ୍ଦ) ତାଙ୍କୁ ଗାୟତ୍ରୀ ମନ୍ତ୍ର ଓ ଯଜ୍ଞୋପବିତ ପ୍ରଦାନ କଲେ । ସରସ୍ୱତୀ ପୂଜା ଦିନ ଶ୍ରୀ ମା' ଦେଲେ ମନ୍ତ୍ରଦୀକ୍ଷା । କୋଠାରରେ ଶ୍ରୀମା ରହିଥିବା ଏହି ଘରଟିକୁ ପୁନରୁଦ୍ଧାର କରାଯାଇ ଶ୍ରୀ ଶ୍ରୀ ମା'ଙ୍କର ପୂଜା ଇତ୍ୟାଦି କାର୍ଯ୍ୟ ବର୍ତ୍ତମାନ ଭକ୍ତମାନଙ୍କ ଦ୍ୱାରା କରାଯାଉଛି ।

ଅନ୍ୟ ଜଣେ ଭକ୍ତ ନିଜର ନାମ ପ୍ରକାଶ ନ କରି ଶ୍ରୀମା' କୋଠାରରେ ଥିବାବେଳେ ସେ କିପରି ଦୀକ୍ଷା ନେଇଥିଲେ, ତାହାର ଏକ ମାର୍ମିକ ଚିତ୍ର ଦେଇଛନ୍ତି ।

"ଶ୍ରୀମା' କୋଠାରରେ ରହୁଥିଲେ । ମୋର ମଝିଆ ଭାଇ ଯେକି ପୁରୀର ଶଶିନିକେତନରେ ଥିଲେ ଆମ ଗାଁର ତାଙ୍କର ଜଣେ ବନ୍ଧୁଙ୍କ ନିକଟକୁ ଚିଠି ଖଣ୍ଡିଏ ଲେଖିଥିଲେ । 'ଦିବ୍ୟ ଜନନୀ ବର୍ତ୍ତମାନ କୋଠାରଠାରେ ଅବସ୍ଥାନ କରୁଛନ୍ତି । ତୁମେ ସେଠାକୁ ଯାଇ ତାଙ୍କୁ ପ୍ରଣାମ ନିବେଦନ କରିବ ।' ସେ ପର୍ଯ୍ୟନ୍ତ ମୋର ଶ୍ରୀମା' ଓ ଶ୍ରୀରାମକୃଷ୍ଣଙ୍କ ସଂପର୍କରେ ବେଶୀ କିଛି ଧାରଣା ନଥାଏ । ମୁଁ ସେମାନଙ୍କ ସଂପର୍କରେ କୌଣସି ବହି ପଢ଼ି ନଥାଏ କିମ୍ବା ତାଙ୍କ ବିଷୟରେ କିଛି ଜାଣି ନଥାଏ ।

କିନ୍ତୁ ତାଙ୍କ ବିଷୟରେ ଶୁଣି, ତାଙ୍କୁ ଦେଖିବାକୁ ମନ ବ୍ୟାକୁଳ ହେଉଥାଏ । ଏହିପରି ମନ ଭିତରେ କ୍ରମାଗତ ପ୍ରେରଣା ପାଇ ମୁଁ କୋଠାର ଅଭିମୁଖେ ଯାତ୍ରା କଲି । ସେଠାରେ ପହଞ୍ଚିବା ବେଳକୁ ମୋ ମନ ଭିତରର ବ୍ୟାକୁଳତା କମି ଯାଇଥାଏ । ଭକ୍ତମାନଙ୍କୁ ମଧ୍ୟାହ୍ନ ଭୋଜନ ପାଇଁ ଡକାଗଲା ଓ ମୁଁ ସେଥିରେ ଯୋଗ ଦେଲି । ଖାଇବା ଶେଷ ହେଲା । ଆମ୍ଭେମାନେ ବାହାର ବାରଣ୍ଡାରେ ପୂଜ୍ୟ କ୍ରିଷ୍ଣଲାଲ୍ ମହାରାଜା ଓ କେଦାରବାବୁ (ସ୍ୱାମୀ ଅଚଳାନନ୍ଦ)ଙ୍କ ସହିତ ବସିଥାଉ ଯେତେବେଳେ ରାମବାବୁ, ବଳରାମ ବୋଷଙ୍କର ଏକମାତ୍ର ସନ୍ତାନ ଆସି କ୍ରିଷ୍ଣଲାଲ୍ ମହାରାଜାଙ୍କୁ କହିଲେ, 'କଟକରୁ ଆସିଥିବା ପିଲାଟିକୁ ଶ୍ରୀମା' ଡକାଇ ପଠାଇଛନ୍ତି । ସେ ଯାଇ ତାଙ୍କୁ ପ୍ରଣାମ କରୁ ।' କ୍ରିଷ୍ଣଲାଲ୍ ମହାରାଜ କହିଲେ, 'ମୁଁ ତାଙ୍କୁ ଶ୍ରୀମା'ଙ୍କୁ ଅପରାହ୍ନରେ ସାକ୍ଷାତ୍ କରିବାକୁ କହିଛି ।' ରାମବାବୁ କହିଲେ, 'ନାଁ, ତାହେବ ନାହିଁ । ଶ୍ରୀମା' ତା' ପାଇଁ ଅପେକ୍ଷା କରିଛନ୍ତି । ପିଲାଟି ସାକ୍ଷାତ୍ କରି ସାରିବା ପରେ ଶ୍ରୀମା' ଖାଇବାକୁ ଯିବେ ।' ମୁଁ ରାମବାବୁଙ୍କ ସହିତ ଗଲି ଏବଂ ଶ୍ରୀମା'ଙ୍କୁ ପ୍ରଣାମ କଲି । ମୁଁ ସେତେବେଳେ ତାଙ୍କ ସହିତ କଥା ହୋଇ ନଥିଲି । ତା'ପର ଦିନ ଘରକୁ ଫେରି ଆସିଲି ।

ଘରକୁ ଫେରିବା ପରେ, ତାଙ୍କୁ ପୁଣି ଦେଖିବା ପାଇଁ ମନରେ ସେହି ପ୍ରକାର ଅନୁଭବ କଲି ଏବଂ ପୁଣି କୋଠାର ଗଲି । ସେଠାରେ କିଛି ଦିନ ରହିବା ପରେ ଦିନେ ସକାଳେ ଶ୍ରୀମା'ଙ୍କ ପାଖକୁ ଯାଇ କହିଲି, 'ମା' ! ମୁଁ ଆସନ୍ତାକାଲି ସକାଳେ ଘରକୁ ଫେରିଯିବି । ଶ୍ରୀମା' ଉତ୍ତରରେ କହିଲେ, 'ଠିକ୍ ଅଛି । ତୁମେ ଆସନ୍ତାକାଲି ରୁହ ଏବଂ ତା'ପରଦିନ ଗୃହ ଅଭିମୁଖେ ଯାତ୍ରାକର ।' ମୁଁ କୋଠରିରୁ ବାହାରକୁ ଆସିଲି । କିଛି ସମୟ ପରେ ଜଣେ ସନ୍ନ୍ୟାସୀ ଆସି ମୋତେ କହିଲେ, 'ଶ୍ରୀମା' ତୁମକୁ ଆଶୀର୍ବାଦ କରିବାକୁ ଯାଉଛନ୍ତି । ତୁମେ ଆସନ୍ତାକାଲି ସକାଳେ ଗାଧୋଇ ସାରି ପ୍ରସ୍ତୁତ ହୋଇ ରୁହ ।' ମୁଁ କି ପ୍ରକାର ଆଶୀର୍ବାଦ ବୋଲି ଭାବି ଆଶ୍ଚର୍ଯ୍ୟ ହେଲି । ମୁଁ କିଛି ଚିନ୍ତା କରି ନପାରି ନିରବ ରହିଲି । ତା'ପରଦିନ ସକାଳେ, ମୁଁ ସକାଳୁ ଗାଧୋଇ ସାରି ଅପେକ୍ଷା କରି ରହିଲି ଯେତେବେଳେ ରାଧୁ ଦିଦି ଘୋଷଣା କଲେ, 'ବୈକୁଣ୍ଠ ବାବୁ କିଏ ? ଶ୍ରୀମା' ତାଙ୍କୁ ଡକାଇ ପଠାଇଛନ୍ତି ।'

ମୁଁ କହିଲି, 'ମୋର ନାମ ବୈକୁଣ୍ଠ । ମୋତେ ଶ୍ରୀମା'ଙ୍କ ପାଖକୁ ଯିବାକୁ ହେବ ?' ସେ ମୁଣ୍ଡ ନୁଆଁଇଲେ । ମୁଁ ତାଙ୍କ ପଛେ ପଛେ ଶ୍ରୀମା'ଙ୍କୁ ସାକ୍ଷାତ୍ କରିବାକୁ ଗଲି । ମୋତେ ଦେଖି ଶ୍ରୀମା' କହିଲେ, 'ଆସ, ଭିତରକୁ ଆସ ! ତୁମେ ମନ୍ତ୍ର ନେବ ?' ମୁଁ କହିଲି, 'ଯଦି ଆପଣ ଦୟା କରନ୍ତି, ତେବେ ପ୍ରଦାନ କରନ୍ତୁ । ମୁଁ ଏ ବିଷୟରେ କିଛି ଜାଣେ ନାହିଁ ।' ଶ୍ରୀମା' କହିଲେ, 'ଏଠାରେ ବସ ।' ତା'ପରେ

କହିଲେ, 'ତୁମେ କେଉଁ ଇଷ୍ଟଙ୍କର ମନ୍ତ୍ର ନେବାକୁ ଚାହଁ ?' ମୁଁ ଉତ୍ତର ଦେଲି, 'ମୁଁ ଏ ବିଷୟରେ କିଛି ଜାଣେ ନାହିଁ ।' ଏହା ଶୁଣି ଶ୍ରୀମା' କହିଲେ, 'ତୁମକୁ ଏହି ମନ୍ତ୍ର ଠିକ୍ ହେବ ।'

ସେହି ଦିନ ଶ୍ରୀମା' ମୋତେ ସେହି ମନ୍ତ୍ରରେ ଦୀକ୍ଷିତ କରାଇଲେ । ଏହା ୧୯୧୧ ମସିହା ଜାନୁଆରୀ - ଫେବୃୟାରୀ ହେବ । ଦିନେ ଶ୍ରୀମା'ଙ୍କୁ ସାକ୍ଷାତ କରିବାବେଳେ ମୁଁ ତାଙ୍କୁ ପଚାରିଲି, 'ମା, ମୁଁ ଯୋଗ ଶିକ୍ଷା ନେବା ପାଇଁ ଆଉ କାହାକୁ ଆଧ୍ୟାତ୍ମିକ ଗୁରୁ କରିପାରେ କି ?' ତାହାର ଉତ୍ତରରେ ସେ କହିଲେ, 'ତୁମେ ବିଭିନ୍ନ ବିଷୟ ଜାଣିବା ପାଇଁ ଅନେକ ପଥ ପ୍ରଦର୍ଶକ କରିପାର କିନ୍ତୁ ଆଧ୍ୟାତ୍ମିକ ନିର୍ଦ୍ଦେଶ ପାଇଁ ନୁହେଁ ।'

ଯେଉଁଦିନ ସକାଳେ ମୁଁ କୋଠାର ଛାଡ଼ିବି, ରାମବାବୁ ମୋତେ ରାତ୍ରିରେ ଉଠାଇ ଦେଲେ । ସେ ଗୋଟିଏ ମିଠେଇ ଡବା ମୋତେ ଧରାଇ ଦେଇ କହିଲେ, "ବୈକୁଣ୍ଠ, ଶ୍ରୀମା' ତୁମକୁ ଏହି ମିଷ୍ଟାନ୍ନ ଦେଇଛନ୍ତି । ଏହାକୁ ସାଙ୍ଗରେ ନିଅ । ଶ୍ରୀମା' କହିଛନ୍ତି ଯେ ତୁମେ ରାସ୍ତାକଡ଼ ଦୋକାନରୁ କିଛି ଖାଇବ ନାହିଁ ।"

ଫେବୃୟାରୀ ମାସରେ ସେ ରାମେଶ୍ୱରମ୍ ଅଭିମୁଖେ ଯାତ୍ରା କଲେ । ଟ୍ରେନ୍‌ରେ ଯିବାବେଳେ ଚିଲିକାର ମନୋମୁଗ୍ଧକର ଦୃଶ୍ୟ ତାଙ୍କୁ ଅତିଶୟ ପ୍ରୀତି କରିଥିଲା । ଆକାଶରେ ଉଡିଯାଉଥିବା ନୀଳକଣ୍ଠ ପକ୍ଷୀ ଦେଖି ଶ୍ରୀମା' ହାତଯୋଡ଼ି ନମସ୍କାର କଲେ । ସକାଳ ୮ଟା ବେଳେ ବ୍ରହ୍ମପୁର ଷ୍ଟେସନରେ ଟ୍ରେନ୍ ଅଟକିଲା । ତାଙ୍କୁ କେଲନାର୍ କମ୍ପାନୀର ମ୍ୟାନେଜର ଷ୍ଟେସନରୁ ନିଜ ଗୃହକୁ ନେଇ ଯାଇଥିଲେ । ବହୁଭକ୍ତ ସେଠାରେ ରୁଣ୍ଡ ହୋଇ ଶ୍ରୀମା'ଙ୍କ ଦର୍ଶନ ଲାଭ କରି ନିଜକୁ କୃତାର୍ଥ କରିଥିଲେ । ୧୯୧୧ ମସିହା ଏପ୍ରିଲ ମାସରେ ସେ ମାନ୍ଦ୍ରାଜରୁ ଫେରିବା ବାଟରେ ପୁନଶ୍ଚ ପୁରୀକୁ ଆସି କ୍ଷେତ୍ରବାସୀ ମଠରେ ନ ରହି ସମୁଦ୍ର କୂଳରେ ଥିବା ଶଶୀ ନିକେତନରେ ଅବସ୍ଥାନ କରିଥିଲେ । ଏଠାରେ ପ୍ରାୟ ତିନି ଚାରିଦିନ ଥିଲେ ।

ଶ୍ରୀ ଶ୍ରୀ ମା'ଙ୍କର ଶ୍ରୀକ୍ଷେତ୍ରକୁ ଆସିବା ଦ୍ୱାରା ମହାନ୍ ତୀର୍ଥକ୍ଷେତ୍ରର ସକଳ ବୈଭବ ତାଙ୍କ ମଧ୍ୟରେ ସମାହିତ ହୋଇଥିଲା । ଥରେ ଜଣେ ଶିଷ୍ୟ ପଚାରିଲେ, 'ଆପଣ ରଥଯାତ୍ରା ସମୟରେ ପୁରୀ ଯିବେକି ?' ଏହାର ଉତ୍ତରରେ ଶ୍ରୀମା' କହିଲେ 'ଏତେ ଲୋକ ଭିଡ଼ ବେଳେ ସେଠାକୁ ଯିବା କ'ଣ ଠିକ୍ ହେବ ! ହଇଜା ମଧ ବ୍ୟାପିପାରେ । ପୁରୋହିତ ଲକ୍ଷ୍ମୀକାନ୍ତ କହିଲେ,'ସବୁଘର ଓ କୋଠରି ଭଡ଼ାରେ ଦିଆସରିଛି । ବର୍ତ୍ତମାନ ସେଠାରେ ରହିବାକୁ ଜାଗା ନାହିଁ । ଏପରିକି ଛୋଟ ଛୋଟ ଘର ମଧ ଦଶଟଙ୍କାରେ ଦିଆଯାଇଛି । ଶୀତ ଦିନକୁ ଆସ ।' ମୁଁ ସ୍ୱପ୍ନରେ ସେଠାରେ

ଶିବଙ୍କର ମୂର୍ତ୍ତି ଥିବାର ଦେଖିଲି । ମୁଁ ଜଗନ୍ନାଥଙ୍କୁ ଦର୍ଶନ କରିବା ବେଳେ ଶିବମୂର୍ତ୍ତି ଦେଖିଲି । ପ୍ରଭୁ ଜଗନ୍ନାଥ ଶିବ ଏକ ଲକ୍ଷ ଶାଳଗ୍ରାମ ନିର୍ମିତ ବେଦୀ ଉପରେ ବସିଛନ୍ତି । କୌଣସି କାରଣ ନଥାଇ କ'ଣ ହଜାର ହଜାର ଲୋକ ଜଗନ୍ନାଥଙ୍କୁ ଦର୍ଶନ କରୁଛନ୍ତି ? ସେଠାରେ ମଧ ଦେବୀ ବିମଳାଙ୍କର ମୂର୍ତ୍ତି ରହିଛି । ମହାଷ୍ଟମୀ ରାତ୍ରୀରେ ତାଙ୍କ ପାଖରେ ବିଶେଷ ଭୋଗ ଅର୍ପଣ କରାଯାଏ । ବିମଳା ଦେବୀ ଦୁର୍ଗାଙ୍କର ଅନ୍ୟରୂପ । ତେଣୁ ଏହା କ'ଣ ଠିକ୍ ନୁହେଁ ଯେ ସେଠାରେ ଶିବ ଉପସ୍ଥିତ ଥିବେ ?"

ଠାକୁର ଶ୍ରୀରାମକୃଷ୍ଣଙ୍କର ଜଗନ୍ନାଥଙ୍କ ପ୍ରତି ଥିବା ଅଚଳାଚଳ ଭକ୍ତି ଓ ସମର୍ପିତ ଭାବ ହେତୁ ଶ୍ରୀମା' ବାରମ୍ବାର ପୁରୀ ଆସି ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିଥିଲେ ।



# କାମାରପୁକୁର ଜୀବନ

ପ୍ରଥମ ଥର ବୃନ୍ଦାବନରୁ ଫେରିବା ପରେ ଶ୍ରୀମା', ଗୋଲାପମା' ଓ ସ୍ୱାମୀ ଯୋଗାନନ୍ଦଙ୍କ ସହିତ କାମାରପୁକୁର ଅଭିମୁଖେ ଯାତ୍ରା କଲେ । ଅର୍ଥାଭାବରୁ ବର୍ଦ୍ଧମାନ ଷ୍ଟେସନରୁ ତାଙ୍କୁ ୧୬କୋଶ ଅର୍ଥାତ୍ ୨୪କି:ମି ରାସ୍ତା ଚାଲିବାକୁ ହୋଇଥିଲା । ଦକ୍ଷିଣେଶ୍ୱର ମନ୍ଦିର ପକ୍ଷରୁ ଠାକୁରଙ୍କର ମହାସମାଧି ପରେ ୭ଟଙ୍କା ଶ୍ରୀମା'ଙ୍କୁ ଦିଆଯାଉଥିଲା । କିନ୍ତୁ ରାମଲାଲ୍‌ଙ୍କ ପ୍ରରୋଚନାରେ ଶ୍ରୀମା'ଙ୍କୁ ଏହି ଟଙ୍କା ଦେବା ବନ୍ଦ ହୋଇ ଯାଇଥିଲା । କାମାରପୁକୁରରେ ପହଞ୍ଚିବା ପରେ ସ୍ୱାମୀ ଯୋଗାନନ୍ଦ କଲିକତା ଫେରି ଆସିଥିଲେ । କିନ୍ତୁ ସେଠାରେ ଶ୍ରୀମା' ଙ୍କୁ ଅନେକ କଟୂକ୍ତି ସହ୍ୟ କରିବାକୁ ହୋଇଥିଲା । କାରଣ ଶ୍ରୀମା' ନାଲି ଧଡ଼ିର ଶାଢ଼ୀ ପିନ୍ଧୁଥିଲେ ଏବଂ ତାଙ୍କ ହାତରେ ବାଲା ଥିଲା । ଜଣେ ବିଧବା ବ୍ରାହ୍ମଣୀ ସଧବା ବେଶରେ ରହିବା ଥିଲା ରକ୍ଷଣଶୀଳମାନଙ୍କ ନିକଟରେ ଅସହ୍ୟ । ଅବଶ୍ୟ ଗୋଲାପମା' ତାଙ୍କୁ ଏହି ବ୍ୟଙ୍ଗ ବିଦ୍ରୂପରୁ ରକ୍ଷା କରୁଥିଲେ, କିନ୍ତୁ ସେ ଚାଲିଯିବା ପରେ ପୁଣି ତାଙ୍କ ନାମରେ କୁତ୍ସା ଆରମ୍ଭ ହେଲା । ତାଙ୍କୁ ସୁରକ୍ଷା ଦେଲେ ଲାହା ପରିବାରର ବଡ଼ ଭଉଣୀ ପ୍ରସନ୍ନମୟୀ । ସେ ସମାଲୋଚକ ମାନଙ୍କର ମୁହଁକୁ ବନ୍ଦ କରିଦେବାକୁ ଯାଇ କହିଲେ, 'ଗଦାଇ(ଶ୍ରୀରାମକଷ୍ଟ)ଙ୍କର ସ୍ତ୍ରୀ ଦେବୀ ସ୍ୱରୂପା । ସେ ସାଧାରଣ ସ୍ତ୍ରୀଲୋକ ନୁହଁନ୍ତି ।'

ଶ୍ରୀମା' ନିଜ ହସ୍ତରୁ ଏହି ବାଲାକୁ ଓହ୍ଲାଇ ଦେବାକୁ ଇଚ୍ଛା କରିଥିଲେ ମଧ୍ୟ ଶ୍ରୀରାମକୃଷ୍ଣଙ୍କ ଦର୍ଶନ ତାଙ୍କର ଇଚ୍ଛାକୁ ରୋକି ଦେଇଥିଲା । ସେ ଏ ସଂପର୍କରେ କହିଥିଲେ, 'ମୁଁ ବୃନ୍ଦାବନରୁ ଫେରି କାମାରପୁକୁରରେ ଆସି ରହିବା ବେଳେ ଲୋକମାନଙ୍କର ସାମାଲୋଚନାକୁ ଭୟ କରି ହାତରେ ପିନ୍ଧିଥିବା ବାଲା ବାହାର କରିଦେବାକୁ ଚାହିଁଲି । ଲୋକମାନେ ଏ ସଂପର୍କରେ କହିବାକୁ ଆରମ୍ଭ କରିଦେଇଥିଲେ । ମୁଁ ମଧ୍ୟ ଗଙ୍ଗାକୁ ଗାଧୋଇବାକୁ ଯିବାକୁ ଚାହୁଁଥିଲି କାରଣ ଗଙ୍ଗା ପ୍ରତି ମୋର ବିଶେଷ ଭକ୍ତି ଥିଲା । କିନ୍ତୁ ଏହା କାମାରପୁକୁର ଠାରୁ ଥିଲା ବହୁ ଦୂରରେ । ଦିନେ ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି ଯେ ଠାକୁର ଭୁତିର କେନାଲ୍ ଦିଗରୁ ଘରଆଡ଼କୁ ଆସୁଛନ୍ତି । ତାଙ୍କ ପଛେ ପଛେ ନରେନ୍, ବାବୁରାମ, ରାଖାଲ୍ ଏବଂ ଆହୁରି ଅନେକ ଭକ୍ତ । ପୁଣି

ମୁଁ ଦେଖିଲି ତାଙ୍କ ପାଦରୁ ଝରଣା ସଦୃଶ୍ୟ ପାଣି ବହି ଆସି ତରଙ୍ଗ ସୃଷ୍ଟି କରୁଛି । ମୁଁ ନିଜକୁ ନିଜେ କହିଲି, ମୁଁ ଦେଖୁଛି ଯେ ଗଙ୍ଗା ତାଙ୍କ ପଦ୍ମପାଦରୁ ନିର୍ଗତ ହୋଇଛନ୍ତି । ରଘୁବୀର ମନ୍ଦିର ନିକଟରେ ଥିବା ମନ୍ଦାର ଗଛରୁ ମୁଁ ତତ୍‌କ୍ଷଣାତ୍ ଫୁଲ ତୋଳି ଆଣିଲି ଏବଂ ଜଳସ୍ରୋତ ଉପରେ ପୁଷ୍ପାଞ୍ଜଳି ପ୍ରଦାନ କଲି । ତା'ପରେ ମୋତେ ଠାକୁର କହିଲେ, 'ତୁମେ ତୁମ ହାତରେ ଥିବା ବାଲାକୁ ବାହାର କରନାହିଁ । ତୁମେ ବୈଷ୍ଣବ ତନ୍ତ୍ର ସଂପର୍କରେ ଜାଣ କି ?' ମୁଁ ପଚାରିଲି, 'ତାହା କ'ଣ ?' ମୁଁ ସେ ବିଷୟରେ କିଛି ଜାଣେ ନାହିଁ ।' ତା'ପରେ ସେ କହିଲେ, 'ଗୌରୀ ଦାସୀ (ଗୌରୀ ମା') ଆଜି ଅପରାହ୍ନରେ ଏଠାକୁ ଆସିବ । ସେ ତୁମକୁ ଏ ବିଷୟରେ କହିବ ।' ସେହିଦିନ ଅପରାହ୍ନରେ ଗୌରୀ ଦାସୀ ଆସି ପହଞ୍ଚିଲା ଏବଂ ମୁଁ ତା'ଠାରୁ ଶିଖିଲି ଯେ ଜଣେ ସ୍ତ୍ରୀ ଲୋକ ପାଇଁ ତା'ର ସ୍ୱାମୀ ହେଉଛି ଚିନ୍ମୟୀ ।'

ଏହି ସମୟରେ ଶ୍ରୀମା' ସାରଦା ଦାରିଦ୍ର୍ୟ ଓ ଏକାକୀତ୍ୱ ମଧ୍ୟରେ ଗତି କରୁଥିଲେ । ଜୀବନର ଅନ୍ତିମ ସମୟରେ ଶ୍ରୀରାମକୃଷ୍ଣ ଶ୍ରୀମା' ସାରଦାଦେବୀଙ୍କୁ କହିଥିଲେ, ''ମୋର ତିରୋଧାନ ପରେ, ତୁମେ କାମାରପୁକୁରକୁ ଚାଲିଯିବ, ସେଠାରେ ଯାହା ପାଇବ ସେଥିରେ ବଞ୍ଚିବା ହୁଏତ ଉଷୁନା ଭାତ ବା କଞ୍ଚା ପରିବା ଏବଂ ଈଶ୍ୱରଙ୍କ ନାମ ଉଚ୍ଚାରଣ କରି ତୁମର ସମୟ କଟାଇବ ।' ଶ୍ରୀମା'ଙ୍କ ଜୀବନରେ ଏହି ଘଟଣା ଅକ୍ଷରେ ଅକ୍ଷରେ ସତ୍ୟ ହୋଇଥିଲା । ତାଙ୍କ ହାତରେ ପଇସାଟିଏ ମଧ୍ୟ ନଥିଲା । ସେ ହାତରେ ଫାଉଡା ନେଇ ମାଟି ଖୋଳୁଥିଲେ ଏବଂ ପରିବା ଲଗାଉଥିଲେ ଯେଉଁଥିରୁ ତାଙ୍କର ଦୈନନ୍ଦିନ ଆହାର ମିଳିପାରିବ । ପରିବା ହେବା ପୂର୍ବରୁ ସେଇଠି ଧାନ ଫଳାଇ ସେହି ଚାଉଳକୁ ରାନ୍ଧି ତାକୁ ଠାକୁରଙ୍କୁ ପ୍ରଥମେ ଅର୍ପଣ କରି ସେହି ପ୍ରସାଦକୁ ସେବନ କରୁଥିଲେ । ସେଥିରେ କୌଣସି ତରକାରି ନଥିଲା । ଏପରିକି ଲୁଣ କିଣିବା ପାଇଁ ତାଙ୍କ ପାଖରେ ପଇସାଟିଏ ମଧ୍ୟ ନଥିଲା ଯଦିଓ ଗରିବଠାରୁ ଗରିବ ମଧ୍ୟ ଲୁଣ କିଣି ପାରିବାର କ୍ଷମତା ରଖୁଥିଲା ।

ଈଶ୍ୱରଙ୍କ ଇଚ୍ଛା ଉପରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରି ବଞ୍ଚୁଥିବା କାରଣରୁ ସେ କାହା ଆଗରେ ନିଜର ଦୁଃଖ କଥା ବର୍ଣ୍ଣନା କରୁ ନଥିଲେ । ଏପରିକି ନିଜର ଜନ୍ମଦାତ୍ରୀ ମା'ଙ୍କୁ ମଧ୍ୟ ଏକଥା ଜଣାଇ ନଥିଲେ । କାମାରପୁକୁରକୁ ଶ୍ରୀମା' ସାରଦା ଫେରି ଆସିଥିବା ଶୁଣି ତାଙ୍କ ମା'ଶ୍ୟାମାସୁନ୍ଦରୀଦେବୀ ତାଙ୍କୁ ଜୟରାମବାଟୀ ଆସିବାକୁ ଖବର ପଠାଇଲେ । ସେ ଦିନେ ମା'ଙ୍କୁ ଦେଖିବାକୁ ଜୟରାମବାଟୀ ଗଲେ । ତାଙ୍କର ଦରିଦ୍ର ବେଶଭୂଷା ଦେଖି ଶ୍ୟାମାସୁନ୍ଦରୀ ଦେବୀ କାନ୍ଦି ପକାଇଲେ ଓ ତାଙ୍କୁ ଜୟରାମବାଟୀ ଆସିବାକୁ କହିଲେ । ମାତ୍ର ଶ୍ରୀମା' ସାରଦା ଏଥିରେ ରାଜି ହେଲେ ନାହିଁ । କିମ୍ୱା

ନିଜ ମା'ଙ୍କ ଆଗରେ ନିଜର ଦୁଃଖ କଥା ମଧ୍ୟ କହିଲେ ନାହିଁ । କେବଳ ଏତିକି କହିଲେ, 'ମୁଁ ବର୍ତ୍ତମାନ କାମାରପୁକୁରକୁ ଫେରି ଯାଉଛି । ଈଶ୍ୱରଙ୍କ ଇଚ୍ଛା ଯେପରି ହେବ, ସେପରି କରିବି ।'

ନିଜ ଜୀବନର ଏକାକୀତ୍ୱ ଓ ନୀରବତା ହେତୁ, ତାଙ୍କର ଏହି ଦୁଃଖଦ ଜୀବନ ସଂପର୍କରେ କେହି ଜାଣି ପାରୁ ନଥିଲେ । ଶ୍ରୀରାମକୃଷ୍ଣଙ୍କର ବଡ଼ଭାଇ ରାମେଶ୍ୱରଙ୍କ ସନ୍ତାନ ରାମଲାଲ୍, ଶିବରାମ ଓ ଲକ୍ଷ୍ମୀଦେବୀ ଥିଲେ ତାଙ୍କ ପରିବାରର । ରାମଲାଲ୍ ଦକ୍ଷିଣେଶ୍ୱର କାଳୀମନ୍ଦିରର ପୂଜକ ଭାବେ କାର୍ଯ୍ୟ କରୁଥିଲେ । କିନ୍ତୁ ସେ ଶ୍ରୀମା'ଙ୍କ ପ୍ରତି ଆଦୌ ସଦୟ ନଥିଲେ ବରଂ ତାଙ୍କର ପ୍ରରୋଚନା ଫଳରେ କାଳୀ ମନ୍ଦିର କର୍ତ୍ତୃପକ୍ଷ ତାଙ୍କର ସ୍ୱଳ୍ପ ପେନ୍‌ସନ୍ ଟଙ୍କା ମଧ୍ୟ ବନ୍ଦ କରିଦେଇଥିଲେ । ଶିବରାମ ଶ୍ରୀମାଙ୍କ ପ୍ରତି ଦୟାର୍ଦ୍ର ଥିଲେ ହେଁ ତାଙ୍କ ଦ୍ୱାରା କିଛି ସମ୍ଭବ ନଥିଲା । ଦକ୍ଷିଣେଶ୍ୱରରେ ଶ୍ରୀମା' ଥିବା ବେଳେ ଲକ୍ଷ୍ମୀଦେବୀ ତାଙ୍କ ସହିତ କଲିକତାରେ ରହିବାକୁ ଲାଗିଲେ । ଶ୍ରୀମା' କାମାରପୁକୁର କୁଡ଼ିଆ ଘରେ ଏକାକୀ ନିଃସହାୟ ଅବସ୍ଥାରେ ସମୟ ବିତାଉଥିଲେ । କେବେ କେବେ ପ୍ରସନ୍ନମୟୀ ତାଙ୍କର ଚାକରାଣୀକୁ ତାଙ୍କ ପାଖରେ ରାତିରେ ଶୋଇବାକୁ ପଠାଉଥିଲେ । ବିପଦ ବେଳେ କେହି ସାହା ହେବାକୁ ନଥିଲେ । ଏପରିକି ଥରେ ପାଗଳ ଭକ୍ତ ହରିଶ ତାଙ୍କୁ ଆକ୍ରମଣ କଲା ।

ହରିଶ ଥିଲା ଶ୍ରୀରାମକୃଷ୍ଣଙ୍କର ଭକ୍ତ । ସେ ଶ୍ରୀରାମକୃଷ୍ଣଙ୍କର ସନ୍ନ୍ୟାସୀ ଶିଷ୍ୟମାନେ ବରାହନଗର ମଠରେ ଥିବାବେଳେ ବାରମ୍ବାର ସେଠାକୁ ଯିବା ଆସିବା କରୁଥିଲା । ତାର ଏପରି ତ୍ୟାଗ ଭାବ ଦେଖି ତାର ସ୍ତ୍ରୀ ତାକୁ ବଶୀଭୂତ କରିବା ପାଇଁ ନିଶା ସେବନ ଓ ତନ୍ତ୍ର ମନ୍ତ୍ରରେ ବୁଡ଼ାଇ ରଖିବା ଫଳରେ ତାଙ୍କର ମାନସିକ ବିକୃତି ଘଟିଲା । ସେହିଭଳି ସ୍ଥିତିରେ ଦିନେ ସେ କାମାରପୁକୁରରେ ଯାଇ ପହଞ୍ଚିଲା । ତାର ଏ ଅବସ୍ଥା ଲକ୍ଷ୍ୟ କରି ଶ୍ରୀମା' ମଠକୁ ଚିଠି ଲେଖି ଖବର ପଠାଇଲେ । ସ୍ୱାମୀ ସାରଦାନନ୍ଦ ଓ ସ୍ୱାମୀ ନିରଂଜନା ନନ୍ଦ ସେଠାରେ ଆସି ପହଞ୍ଚିବା ପୂର୍ବରୁ ପାଗଳ ହରିଶ ଶ୍ରୀମା'ଙ୍କୁ ଆକ୍ରମଣ କଲା । ଶ୍ରୀମା' ଏହି ଘଟଣାକୁ ବର୍ଣ୍ଣନା କରି କହିଛନ୍ତି, "ହରିଶ କିଛି ଦିନ ଧରି କାମାରପୁକୁରରେ ରହୁଥିଲା । ଦିନେ ମୁଁ ପଡୋଶୀ ଘରୁ ଫେରି ଘରକୁ ପ୍ରବେଶ କରିବା ସମୟରେ ହରିଶ ମୋତେ ଗୋଡ଼ାଇଲା । ସେତେବେଳେ ସେ ଅତ୍ୟନ୍ତ ବିବ୍ରତ ଅବସ୍ଥାରେ ଥିଲା । ନିଜ ସ୍ତ୍ରୀ ଯୋଗୁଁ ସେ ନିଜର ମାନସିକ ଭାରସାମ୍ୟ ହରାଇଥିଲା । ସେତେବେଳେ ଘରେ କେହି ନଥିଲେ । ମୁଁ କୁଆଡ଼କୁ ଯିବି ଜାଣି ପାରିଲି ନାହିଁ ଏବଂ ମୁଁ ଖଳାଘର ଚାରିକଡ଼େ ବୁଲିବାକୁ ଲାଗିଲି । ସେ କିନ୍ତୁ ମୋ ପଛ ଛାଡିଲା ନାହିଁ । ମୁଁ ଦୌଡ଼ିଲି, ପ୍ରାୟ ସାତ ଥର ଖଳା ଚାରି ପାଖେ ଦୌଡ଼ି

ଦୌଡ଼ି ଛାଲିଆ ହୋଇଗଲି । ତା'ପରେ ମୋ ନିଜ ରୂପ ପ୍ରକାଶ ପାଇଲା । ମୁଁ ତାକୁ ଭୂଇଁ ଉପରେ ପକାଇ ଦେଲି । ତା' ଛାତି ଉପରେ ମୋ ଗୋଡ଼କୁ ରଖି ମାଡ଼ି ବସିଲି । ତା'ର ଜିଭକୁ ଟାଣି ଧରି ତା' ଗାଲରେ ଶକ୍ତ ଚାପୁଡା ପକାଇବାକୁ ଲାଗିଲି । ମୋର ଆଙ୍ଗୁଳିଗୁଡ଼ିକ ଲାଲ୍ ପଡ଼ିଗଲା । ସେ ନିଶ୍ୱାସ ନେବାକୁ ଧଇଁସଇଁ ହେଲା ।'' ଶ୍ରୀମା'ଙ୍କ ଦ୍ୱାରା ଦଣ୍ଡ ପାଇ ହରିଶ ବୃନ୍ଦାବନ ପଳାଇଗଲା ଏବଂ ଆସ୍ତେ ଆସ୍ତେ ତା'ର ମାନସିକ ସ୍ଥିରତା ଲାଭ କରିଥିଲା । ବୋଧହୁଏ ଶ୍ରୀ ମା' ସାରଦା ନିଜର ଦେବୀତ୍ୱର ପ୍ରକାଶ ମହାମାୟା ବଗଲା ରୂପରେ ପ୍ରକାଶିତ କରିଥିଲେ ।

କାମାରପୁକୁର ଠାରେ ଶ୍ରୀ ମା'ଙ୍କ ଜୀବନ ଅତିଷ୍ଠ ହୋଇ ପଡ଼ିଲା । ସାଧାରଣ ଲୋକେ ତାଙ୍କର ବାଲା ପିନ୍ଧିଥିବା କାରଣରୁ ତାଙ୍କୁ ''ସୌଖୀନ ବିଧବା'' ଭାବେ ଦେଖୁଥିଲେ । କାହାରି ହେଲେ ସାମାନ୍ୟତମ ସାମାଜିକ ସମବେଦନା ନ ଥିଲା । କେବଳ ଧନୀ ଓ ପ୍ରସନ୍ନମୟୀ ଠାକୁର ଶ୍ରୀ ରାମକୃଷ୍ଣଙ୍କ ସହିତ ସଂପର୍କ ହେତୁ ତାଙ୍କ ପ୍ରତି ସଦୟ ଚିତ୍ତ ଥିଲେ । ଦାରିଦ୍ର୍ୟ ଓ ଏକାକୀତ୍ୱ ତାଙ୍କ ମନକୁ ନିଜ ଭବିଷ୍ୟତ ସଂପର୍କରେ ଚିନ୍ତିତ କରି ପକାଉଥିଲା କିନ୍ତୁ ଠାକୁରଙ୍କର ମାର୍ଗଦର୍ଶନ ଓ ସୁରକ୍ଷା ଫଳରେ ସେ ଏହି ଦୁଃଖଦ ସ୍ଥିତିକୁ ମୁକାବିଲା କରିପାରିଥିଲେ । କାମାରପୁକୁରରେ ଏକାକୀ ଥିବା ବେଳେ ସେ ସମୟର ଅବସ୍ଥାକୁ ଉଲ୍ଲେଖ କରି ସେ କହୁଥିଲେ, "ମୁଁ ନିଜ ଭିତରେ ଭାବିଲି, 'ମୋର ତ ପିଲା ନାହିଁ । ଏହି ସଂସାରରେ ମୋର କେହି ନାହିଁ ଯାହାକୁ ମୁଁ ନିଜର ବୋଲି କହିବି । ମୋର କ'ଣ ହେବ ?' ତା'ପରେ ଠାକୁର ମୋ ଆଗରେ ଉଭା ହେଲେ ଏବଂ କହିଲେ, 'ଠିକ୍ ଅଛି, ତୁମର ପୁଅଟିଏ ଦରକାର । ମୁଁ ତୁମକୁ ଅନେକ ଗୁଡ଼ିଏ ଶୁଦ୍ଧ ସୁବର୍ଣ୍ଣ ପୁତ୍ର ଦେଇଛି । ଏବଂ ସମୟକ୍ରମେ ବହୁଲୋକ ତୁମକୁ 'ମା' ଡାକୁଥିବାର ଶୁଣିବ ।" ଏହିପରି ଅନୁଭବ ହେତୁ ଶ୍ରୀମା' ସାରଦା ଠାକୁରଙ୍କ ସଦାସର୍ବଦା ଉପସ୍ଥିତି ଓ ତାଙ୍କ ମାଧ୍ୟମରେ କାର୍ଯ୍ୟ କରିବାର ଆବଶ୍ୟକତାକୁ ହୃଦୟଙ୍ଗମ କରି ଦୁଃଖକୁ ଗ୍ରହଣ କରି ରହିପାରିଥିଲେ ।

ଶ୍ରୀମା' ଙ୍କର ଦୁଃଖଦ ଜୀବନ ଲୁଚି ରହିଲା ନାହିଁ । ତାହା ଯାଇ ଗୋଲାପମା'ଙ୍କ କାନରେ ପଡ଼ିଲା । ଗୋଲାପ ମା' ଠାକୁରଙ୍କର ଗୃହୀ ଭକ୍ତ ଓ ସନ୍ନ୍ୟାସୀ ଶିଷ୍ୟମାନଙ୍କୁ ଏହା ଅବଗତ କରାଇଲେ । ସେମାନେ ଶ୍ରୀମା'ଙ୍କୁ କଲିକତା ଆସିବାକୁ ଅନୁରୋଧ କରି ପତ୍ର ଲେଖିଲେ । ଶ୍ରୀମା' ଚିନ୍ତାରେ ପଡ଼ିଗଲେ, କ'ଣ କରିବେ ? ୩୪ ବର୍ଷର ବିଧବା ବ୍ରାହ୍ମଣୀ କଲିକତାରେ ଅଜଣା ଲୋକଙ୍କର ସାହାଯ୍ୟରେ ରହିବେ ଏହା କ'ଣ ସମ୍ଭବ ? ପ୍ରସନ୍ନମୟୀ କିନ୍ତୁ ତାଙ୍କୁ ସାହସ ଓ ଆଶ୍ୱାସନା ଦେଇ କହିଲେ, ଗଦାଇର ସ୍ତ୍ରୀ ସଂପର୍କରେ ଏଇ ଗାଁ ଲୋକମାନେ କ'ଣ ଜାଣନ୍ତି ? ଗଦାଇର ଭକ୍ତମାନେ ତା'ର

ସନ୍ତାନ । ସେମାନଙ୍କର ନିମନ୍ତ୍ରଣ ଅନୁରୋଧ ରକ୍ଷା କରିବା ଠିକ୍ ହେବ ।' ତାଙ୍କ ମା' ଶ୍ୟାମାସୁନ୍ଦରୀ ଦେବୀ ମଧ ଏଥିରେ ରାଜି ହେଲେ । ଦୀର୍ଘ ୯ମାସ କାଳ କାମାରପୁକୁରରେ ଦୁଃଖଦ ଜୀବନ କଟାଇ ଶ୍ରୀମା' ସାରଦା ଯାତ୍ରା କଲେ କଲିକତା ଅଭିମୁଖେ ।

୧୮୮୮ ମସିହାଠାରୁ ୧୯୨୦ ମସିହାରେ ତାଙ୍କର ତିରୋଧାନ ପର୍ଯ୍ୟନ୍ତ ଶ୍ରୀମା' ସାରଦା ଦେବୀଙ୍କ ଜୀବନ ଶ୍ରୀରାମକୃଷ୍ଣଙ୍କ ଭକ୍ତ ଓ ସନ୍ନ୍ୟାସୀ ଶିଷ୍ୟଙ୍କ ମଧ୍ୟରେ କଟିଥିଲା, ଯଦିଓ ମଝିରେ ମଝିରେ ସେ ନିଜର ଜନ୍ମମାଟି ଜୟରାମବାଟୀକୁ ଯାତ୍ରା କରୁଥିଲେ । ୧୯୦୭ ମସିହାରେ ସ୍ୱାମୀ ସାରଦାନନ୍ଦଙ୍କ ଦ୍ୱାରା ବାଗ୍‌ବଜାର ଠାରେ ଉଦ୍‌ବୋଧନ ଅଫିସ୍ ନିର୍ମାଣ ହେଲା ଓ ସେଠାରେ ଶ୍ରୀମା' ଅବସ୍ଥାନ କଲେ । କେବେ କେବେ ଭକ୍ତ ବଳରାମ ବସୁ ଏବଂ ମାଷ୍ଟର ମହାଶୟ (ମହେନ୍ଦ୍ର ନାଥଗୁପ୍ତ)ଙ୍କ ଘରେ ମଧ ରହୁଥିଲେ । କିଛିଦିନ ନୀଳାମ୍ବର ମୁଖାର୍ଜୀଙ୍କର ବଗିଚା ଘରେ ଥିବା ବେଳେ ସେ ପଞ୍ଚତପା ବ୍ରତ ପାଳନ କରିଥିଲେ ।

ପଞ୍ଚତପା ବ୍ରତର ଅର୍ଥ ହେଉଛି ୭ଫୁଟ ଦୂରତ୍ୱରେ ଚାରିକୋଣରେ ଚାରିଗୋଟି ଅଗ୍ନି ପ୍ରଜ୍ୱଳିତ କରି, ଉର୍ଦ୍ଧ୍ୱରେ ସୂର୍ଯ୍ୟଙ୍କର ତାପକୁ ସହ୍ୟ କରି ତା' ମଧ୍ୟରେ ବସି ପ୍ରାର୍ଥନା ଓ ଧ୍ୟାନ କରିବା । ଶ୍ରୀମା'ବୋଧହୁଏ ନିଜର ମାନସିକ ଉଦ୍‌ବେଳନକୁ ଦୂର କରିବା ପାଇଁ ଏପରି ବ୍ରତ ପାଳନ କରିଥିଲେ । ସେ ବନାରସରେ ଥିବାବେଳେ ଏହିପରି ତପଶ୍ଚର୍ଯ୍ୟା କରିବାକୁ ତାଙ୍କୁ ଜଣେ ନେପାଳୀ ସନ୍ନ୍ୟାସିନୀ ବତାଇଥିଲେ । ଏଥିପାଇଁ ଅନ୍ୟ ଏକ ପ୍ରେରଣା ମଧ ଥିଲା । କାମାରପୁକୁରରେ ଥିବାବେଳେ ଗୋଟିଏ ଏଗାର ବାର ବର୍ଷ ବାଳିକାର ମୂର୍ତ୍ତି ସବୁବେଳେ ତାଙ୍କ ସହିତ ଥିବାର ସେ ଦେଖୁଥିଲେ । କେବେକେବେ ଦାଢ଼ି ରଖିଥିବା ଜଣେ ସନ୍ନ୍ୟାସୀର ମୂର୍ତ୍ତି ମଧ ଦେଖାଯାଉଥିଲା ଯେକି ତାଙ୍କୁ ପଞ୍ଚତପାବ୍ରତ କରିବାକୁ ପ୍ରବର୍ତ୍ତାଉଥିଲେ । ଏହି ଦୃଶ୍ୟ ଯାହା ହେଉନା କାହିଁକି ସେ ଯୋଗୀନ୍‌ମା'ଙ୍କ ସହିତ ଏ ବିଷୟରେ ପରାମର୍ଶ କଲେ ଏବଂ ଏହା କରିବାକୁ ସ୍ଥିର କଲେ । ଏହି ତପଶ୍ଚର୍ଯ୍ୟା ସଂପର୍କରେ ଶ୍ରୀମା' ସାରଦା କହୁଥିଲେ, "ଗୋବର ଘଷିରେ ଚାରିକଡ଼ରେ ନିଆଁ ପ୍ରସ୍ତୁତ ହୁଏ ଏବଂ ଉପରେ ସୂର୍ଯ୍ୟଙ୍କର ରୌଦ୍ରତାପ । ସକାଳେ ଗାଧୋଇ ସାରି ମୁଁ ନିଆଁ ପାଖକୁ ଆସେ ଏବଂ ଦେଖେ ଏହା ଖୁବ୍ ଉତ୍ତପ୍ତ ଭାବରେ ଜଳୁଛି । ମୁଁ ଭୟ ପାଇଯାଏ । ମୁଁ କିପରି ଏହା ଭିତରକୁ ପ୍ରବେଶ କରି ସଂଧ୍ୟା ପର୍ଯ୍ୟନ୍ତ ବସି ରହିବି ଭାବି ଚିନ୍ତିତ ହୁଏ । କିନ୍ତୁ ଠାକୁରଙ୍କ ନାମ ଜପ କରି ତା' ଭିତରେ ବସିଯିବା ପରେ, ମୁଁ ଅନୁଭବ କରେ ଯେ ନିଆଁର ତାପ ଆଉ ନାହିଁ । ମୁଁ ଏହିପରି ସାତଦିନ ଅଭ୍ୟାସ କଲି । ମୋର ଶରୀର ପାଉଁଶର ରଙ୍ଗ ଧାରଣ କଲା ।

ଏହା ପରେ ମୁଁ ଆଉ ସେଉ ଝିଅ ବା ସନ୍ନ୍ୟାସୀର ମୂର୍ତ୍ତି ଦେଖି ନାହିଁ ।" ଏହି ସମୟରେ ସେ ଅନ୍ୟ ଏକ ଅସାଧାରଣ ଦୃଶ୍ୟ ଦେଖିଥିଲେ । ସେ ଦେଖିଲେ ଶ୍ରୀରାମକୃଷ୍ଣ ଗଙ୍ଗାମଧ୍ୟକୁ ପ୍ରବେଶ କରୁଛନ୍ତି ଏବଂ ନଦୀର ପବିତ୍ର ଜଳଦ୍ୱାରା ତାଙ୍କର ସମଗ୍ର ଶରୀର ଆଛନ୍ନ ହୋଇଯାଉଛି । ନରେନ୍ଦ୍ର (ସ୍ୱାମୀ ବିବେକାନନ୍ଦ) ସେହି ପବିତ୍ର ଜଳକୁ ନେଇ ଅସଂଖ୍ୟ ଲୋକମାନଙ୍କ ଉପରେ ସିଞ୍ଚୁଛନ୍ତି ଏବଂ ସମବେତ ସ୍ୱରରେ 'ଜୟ ଶ୍ରୀରାମକୃଷ୍ଣଙ୍କର ଜୟ' ଧ୍ୱନି ହେଉଛି । ଏହି ଦୃଶ୍ୟ ତାଙ୍କ ମନରେ ଏପରି ଛାପ ପକାଇଥିଲା ଯେ ସେ ବହୁଦିନ ଧରି ନଦୀରେ ଗାଧୋଇବାକୁ ପ୍ରବେଶ କରି ନଥିଲେ । ଏହା ମଧ୍ୟ ତାଙ୍କ ବଞ୍ଚିବାର ଉଦ୍ଦେଶ୍ୟକୁ ସ୍ଥିର କରିବାରେ ସାହାଯ୍ୟ କରିଥିଲା । ସେ ହୃଦୟଙ୍ଗମ କରିଥିଲେ ଯେ ଠାକୁର ଶାରିରୀକ ଭାବରେ ବିଦ୍ୟମାନ ନଥିଲେ ମଧ୍ୟ ସେ ଅଛନ୍ତି । ସେ ତେଣୁ ଅନୁଭବ କଲେ ତାଙ୍କର ବଞ୍ଚିରହିବା ହେଉଛି ଠାକୁରଙ୍କର ଉଦ୍ଦେଶ୍ୟକୁ ପୂରଣ କରିବା । ପରବର୍ତ୍ତୀ ସମୟରେ ଶ୍ରୀମା' ସାରଦା ଆଧ୍ୟାତ୍ମିକ ପିପାସୁ ଭକ୍ତମାନଙ୍କର କେନ୍ଦ୍ରବିନ୍ଦୁ ହୋଇଛନ୍ତି ।



# ଘରୋଇ ଜୀବନର ଘଟଣାବଳୀ

କାମାରପୁକୁରରୁ କଲିକତା ଆସିବା ପରେ, ସେ ଜୟରାମବାଟୀକୁ ବହୁ ସମୟ ଯାଇ ସେଠାରେ ରହିଛନ୍ତି ଏବଂ ତାହା ତାଙ୍କ ଗ୍ରାମ୍ୟ ଜୀବନର ଆଶ୍ରୟ ସ୍ଥଳ ହୋଇଛି । କିନ୍ତୁ କାମାରପୁକୁର ପ୍ରତି ତାଙ୍କର ସମ୍ମାନ ଅତୁଟ ଥିଲା । ଠାକୁର ଥରେ କହିଥିଲେ, 'ହୁଏତ ଜଣେ ଅନ୍ୟଠାରୁ ଭିକ୍ଷାକରି ଖାଦ୍ୟ ଖାଇ ପାରେ, କିନ୍ତୁ ଅନ୍ୟ ଗୃହରେ ବାସ କରିବା ଠିକ୍ ହେବନାହିଁ । ତୁମକୁ ଭକ୍ତମାନେ ଯେତେ ସମ୍ମାନର ସହିତ ନେଇ ଅନ୍ୟ ସ୍ଥାନରେ ରଖିଲେ ମଧ କାମାରପୁକୁର ଠାରେ ଥିବା ତୁମର ଛୋଟ ଘରଟିକୁ ଭାଙ୍ଗି ଦେବ ନାହିଁ ।' ଶ୍ରୀମା' କାମାର ପୁକୁର ଘରର ବିଶେଷ ଯତ୍ନ ନେଉଥିଲେ । ଜୟରାମବାଟୀରେ ବହୁ ସମୟ ରହିବାର କାରଣ ତାଙ୍କ ପିତୃଗୃହରେ ଥିବା ସଦସ୍ୟମାନଙ୍କ ସହିତ ତାଙ୍କର ନିବିଡ଼ ସଂପର୍କ । ତାଙ୍କର ଚାରିଭାଇ ପ୍ରସନ୍ନ କୁମାର, ବରଦା ପ୍ରସାଦ, କାଳୀକୁମାର ଓ ଅଭୟ ଚରଣ ଶ୍ରୀମା' ସାରଦାଦେବୀଙ୍କ ଠାରୁ ଥିଲେ ବୟସରେ ସାନ । ଶ୍ରୀମା' ଏହି ଭାଇମାନଙ୍କର ଦାୟିତ୍ୱ ପିଲାବେଳୁ ଗ୍ରହଣ କରିଥିଲେ । ତେଣୁ ତାଙ୍କର ଏହି ଭାଇମାନଙ୍କ ସହିତ ଥିଲା ଆତ୍ମିକ ସଂପର୍କ । କୌଣସି ଭାଇମାନଙ୍କର ଆଧାତ୍ମିକ ଶକ୍ତିର ଉନ୍ମେଷ ଘଟି ନଥିଲା ଏବଂ ସେମାନେ ସାଧାରଣ ଜୀବନଯାପନ କରିଥିଲେ । ଆର୍ଥିକ ଅଭାବରେ ଚଳୁଥିବା ଶ୍ରୀମା'ଙ୍କର ଭାଇମାନେ ଶ୍ରୀମା'ସାରଦାଙ୍କ ଉପରେ ଅର୍ଥ ପାଇବା ପାଇଁ ସବୁ ପ୍ରକାର ଚାପ ସୃଷ୍ଟି କରିବା ସହିତ ନିଜ ନିଜ ମଧରେ ମଧ କଳିକରୁଥିଲେ ଏବଂ ତାହା ହିଁ ଥିଲା ଶ୍ରୀ ମା' ସାରଦାଙ୍କର ଚିନ୍ତାର କାରଣ । ଯଦିଓ ସେ ନୀରବରେ ଏସବୁ ସହ୍ୟ କରୁଥିଲେ ।

ସେ ଜୟରାମବାଟୀରେ ଥିବାବେଳେ ତାଙ୍କ ମା' ଶ୍ୟାମାସୁନ୍ଦରୀ ଦେବୀଙ୍କୁ କୌଣସି କାର୍ଯ୍ୟ କରାଇ ଦେଉନଥିଲେ ଏବଂ ତାଙ୍କର ଭାଉଜମାନେ ଅଳ୍ପ ବୟସ୍କା ଥିବାରୁ ଦାୟିତ୍ୱ ନେବାକୁ ସକ୍ଷମ ନଥିଲେ । ତେଣୁ ସେ ଧାନ ଉଁସୋଉ ଥିଲେ, କୁଟୁ ଥିଲେ । ସେମାନଙ୍କ ପାଇଁ ରୋଷେଇ କରୁଥିଲେ ଏବଂ ସେମାନଙ୍କର ପିଲାମାନଙ୍କର ଯତ୍ନ ନେଉଥିଲେ । ଏହାକୁ ଲକ୍ଷ୍ୟ କରି ଗିରିଶ ଘୋଷ କହିଥିଲେ ଯେ ଶ୍ରୀମା'ଙ୍କର ଭାଇମାନେ ବହୁପୁଣ୍ୟ କରିଥିବାରୁ ତାଙ୍କର ଦିବ୍ୟ ଭଗିନୀ ସେମାନଙ୍କର ଏତେ ଯତ୍ନ ନେଉଛନ୍ତି ।

୧୯୦୬ ମସିହାରେ ଶ୍ୟାମାସୁନ୍ଦରୀ ଦେବୀଙ୍କର ମୃତ୍ୟୁ ହେବା ପରେ ଶ୍ରୀମା' ସାରଦା ବସ୍ତୁତଃ ମୁରବୀ ହୋଇଗଲେ । କିନ୍ତୁ ଭାଇମାନଙ୍କ ମଧ୍ୟରେ ନିଜର ବ୍ୟକ୍ତିଗତ ସ୍ୱାର୍ଥବୃଦ୍ଧି ପାଇବା ହେତୁ, ସେମାନଙ୍କ ମଧ୍ୟରେ କଳିତକରାଳ ଲାଗି ରହିଲା । ତେଣୁ ଶ୍ରୀମା' ସ୍ୱାମୀ ସାରଦାନନ୍ଦଙ୍କୁ ଡକାଇ ପଠାଇ ପୈତୃକ ସମ୍ପତ୍ତି ଭାଇମାନଙ୍କ ମଧ୍ୟରେ ବାଣ୍ଟି ସେମାନଙ୍କୁ ପୃଥକ୍ ପୃଥକ୍ କରିବାର ବ୍ୟବସ୍ଥା କଲେ । ଶ୍ରୀମା'ଙ୍କର ଜୟରାମବାଟୀରେ ରହିବା ସଂପର୍କରେ ପ୍ରଶ୍ନ ହେବାରୁ ସେ କହିଥିଲେ, "ଠାକୁର କୁହନ୍ତି, 'ମୂଷାମାନେ ଗାତ କରି ସାପ ମାନଙ୍କର ରହିବାର ବ୍ୟବସ୍ଥା କରନ୍ତି ।' ମୁଁ କିଛି ଦିନ ପ୍ରସନ୍ନ ସହିତ, କାଳୀ ସହିତ ଏବଂ ଅନ୍ୟମାନଙ୍କ ସହିତ ରହିବି ।" ବାସ୍ତବିକ୍ ସେ ପ୍ରସନ୍ନଙ୍କ ସହିତ ରହି ତାଙ୍କର ଛୋଟ ଝିଅ ଦୁଇଟିଙ୍କର ଦାୟିତ୍ୱ ଗ୍ରହଣ କରିଥିଲେ । ଅବଶ୍ୟ ତାଙ୍କ ପାଇଁ ଅନ୍ୟ ଏକ ମାଟିକାନ୍ଥ ଓ ଚାଳ ଛପର ଘର ନିର୍ମାଣ କରାଯାଇଥିଲା । ତଥାପି ଭାଇମାନଙ୍କ ମଧ୍ୟରେ କଳି ତୁଟି ନଥିଲା । ଶ୍ରୀମା'ଙ୍କୁ ସେମାନେ ନିଜର କୋଠ ସମ୍ପତ୍ତି ବୋଲି ବିଚାର କରି, ତାଙ୍କଠାରୁ ଅର୍ଥ ଆଦାୟ କରିବାକୁ ଚେଷ୍ଟା କରୁଥିଲେ । ଭାଇମାନଙ୍କର ଅର୍ଥ ପାଇଁ ଏହି ପ୍ରକାର ଲୋଭ ଦେଖି ଶ୍ରୀମା' ମନ୍ତବ୍ୟ ଦେଇ କହିଥିଲେ, 'ସେମାନେ ସବୁବେଳେ ଟଙ୍କା ମାଗିବାରେ ବ୍ୟସ୍ତ । ସେମାନେ କେବେ ହେଲେ ଏପରିକି ଅଜାଣତରେ ମଧ୍ୟ ଜ୍ଞାନ ଓ ଭକ୍ତି ମାଗି ନାହାନ୍ତି ।'

ତାଙ୍କର ସାନଭାଇ ଅଭୟ ଚରଣର ମୃତ୍ୟୁପରେ ଶ୍ରୀମା' ଅଭୟ ଚରଣର ସ୍ତ୍ରୀ ସୁରବାଳାର ଦାୟିତ୍ୱ ଗ୍ରହଣ କରିଥାନ୍ତି । ସୁରବାଳା ସେତେବେଳକୁ ଗର୍ଭବତୀ । ସ୍ୱାମୀର ଅକାଳ ମୃତ୍ୟୁ ସୁରବାଳାଙ୍କର ମାନସିକ ସନ୍ତୁଳନକୁ ବ୍ୟାହତ କରିଥାଏ । ସେହି ମାନସିକ ଅବସ୍ଥାରେ ସେ ଏକ କନ୍ୟା ସନ୍ତାନ ଜନ୍ମ ଦେଲେ ଯାହାର ନାମ ରଖାଗଲା ରାଧାରାଣୀ । ପରିବାରରେ ସମସ୍ତେ ଡାକିଲେ ରାଧୁ ବା ରାଧି । ସୁରବାଳାଙ୍କର ଦାରୁଣ ମାନସିକ ଅବସ୍ଥା ହେତୁ ଶ୍ରୀମା'ଙ୍କୁ ରାଧୁର ଦାୟିତ୍ୱ ନେବାକୁ ହୋଇଥିଲା । ରାଧୁ ସହିତ ତାଙ୍କର ବନ୍ଧନ ଏତେ ନିବିଡ଼ ହୋଇ ଯାଇଥିଲା ଯେ ରାଧୁର ସମସ୍ତ ପ୍ରକାର ଦୌରାତ୍ମ୍ୟକୁ ସେ ସହ୍ୟ କରୁଥିଲେ । ମୃତ୍ୟୁର କିଛିଦିନ ପୂର୍ବରୁ ସେହି ବନ୍ଧନ ନିଜର ଶକ୍ତି ବଳରେ ଛିନ୍ନ କରିଥିଲେ ।

ରାଧୁ ଓ ତାର ମା' ସୁରବାଳା ବ୍ୟତୀତ ପ୍ରସନ୍ନ କୁମାରଙ୍କ ଝିଅ ନଳିନୀ ଓ ମାକୁ (ସୁଶୀଳା) ମଧ୍ୟ ଶ୍ରୀମା'ଙ୍କର ଉପରେ ନିର୍ଭର କରୁଥିଲେ ଏବଂ ଶ୍ରୀମା'ଙ୍କ ନିକଟରେ ରହୁଥିଲେ । ଭାଇମାନଙ୍କର ସ୍ୱାର୍ଥପରତା, ଭାଉଜମାନଙ୍କର ପରସ୍ପର ମଧ୍ୟରେ ବୈରୀଭାବ, ନଳିନୀ ଦେବୀଙ୍କର ସବୁ କଥାରେ ଛୁଆଁଭାବ, ରାଧୁର

ଏକଜିଦିଆ ସ୍ୱଭାବ ଓ ରାଧୁର ପାଗିଳୀ ମା' ସୁରବାଳା ଇତ୍ୟାଦିଙ୍କୁ ନେଇ ଶ୍ରୀମା' ସାରଦାଦେବୀଙ୍କର ପାରିବାରିକ ବାତାବରଣ ଥିଲା ଅସହ୍ୟ । କିନ୍ତୁ ଶ୍ରୀମା' ସାରଦା ଅସୀମ ଧୈର୍ଯ୍ୟ ଓ ସହନଶୀଳତାକୁ ହୃଦୟରେ ବହନ କରି ନିଜର କର୍ତ୍ତବ୍ୟ ସଂପାଦନ କରି ଚାଲିଥିଲେ। ଏହି ପରିସ୍ଥିତି ମଧ୍ୟରେ ରହି ମଧ ସେ ଶହ ଶହ ଭକ୍ତମାନଙ୍କର ଆଶା ଓ ଆଶ୍ୱାସନାର ମାଧମ ହୋଇଥିଲେ ଏବଂ ସେମାନଙ୍କୁ ପଥ ପ୍ରଦର୍ଶନ କରୁଥିଲେ ।

ସାଧାରଣ ପାଠକ ମନରେ ପ୍ରଶ୍ନ ଉଠିପାରେ ଆଧାତ୍ମିକ ଶକ୍ତି ସମ୍ପନ୍ନ ଶ୍ରୀମା' ସାରଦା କାହିଁକି ତାଙ୍କର ପାରିବାରିକ ବନ୍ଧନକୁ ମୃତ୍ୟୁର ଶେଷ ସମୟ ପର୍ଯ୍ୟନ୍ତ ରଖିଥିଲେ ? ଆଉ ତାଙ୍କର ଏହି ବନ୍ଧନ ଯୁକ୍ତ ଅବସ୍ଥାକୁ ତାଙ୍କର ଉତ୍ତୁଙ୍ଗ ଆଧାତ୍ମିକତା ସହିତ ଆମେ କିପରି ମାପି ପାରିବା ? କାରଣ ଜଣେ ଆଧାତ୍ମିକ ଶକ୍ତି ସମ୍ପନ୍ନ ବ୍ୟକ୍ତି ବିଶେଷଙ୍କର କୌଣସି ବନ୍ଧନ ରହେ ନାହିଁ । ତେଣୁ ଶ୍ରୀମା'ଙ୍କର ପାରିବାରିକ ଜୀବନ ଅନୁଧାନ କଲେ ଏହିପରି ଅନେକ ପ୍ରଶ୍ନ ଆସିବା ସ୍ୱଭାବିକ । ତେଣୁ ଶ୍ରୀମା'ଙ୍କ ଜୀବନରୁ ପ୍ରତ୍ୟେକ ଘଟଣାକୁ ପରୀକ୍ଷା କରି ଏହାର ବିଶେଷତ୍ୱକୁ ଜାଣିବା ଦରକାର ।

ଭରତୀୟ ପରମ୍ପରାରେ କେବଳ ସନ୍ନ୍ୟାସୀ ମାନେ ପରିବାର ସହିତ କୌଣସି ସଂପର୍କ ରକ୍ଷା କରନ୍ତି ନାହିଁ । ଶ୍ରୀମା' ସାରଦା ସନ୍ନ୍ୟାସୀ ସଂପ୍ରଦାୟ ଭୁକ୍ତ ନଥିଲେ ଯଦିଓ ତାଙ୍କର ଜୀବନ ସନ୍ନ୍ୟାସୀ ଜୀବନ ପରି ଅତ୍ୟନ୍ତ ତ୍ୟାଗପୂତ ଓ ପବିତ୍ର । ତାଙ୍କର ଆଧାତ୍ମିକ ଜୀବନର ବିକାଶ ଥିଲା ସ୍ୱତଃସ୍ଫୂର୍ତ୍ତ । ସେ ଅନ୍ୟ ସ୍ତ୍ରୀଲୋକମାନଙ୍କ ପରି ସମ୍ପର୍କୀୟ ମାନଙ୍କ ଗହଣରେ ବଢ଼ି ଉଠିଥିଲେ । ବିବାହ ପରେ ସ୍ୱାମୀଙ୍କ ପରିବାର ସହିତ ସଂପୃକ୍ତ ହେଲେ । ନିଜ ପ୍ରତି କୌଣସି ପ୍ରକାର ଆସକ୍ତି ନରଖି ଅନ୍ୟ ମାନଙ୍କର ସେବାରେ ନିଜକୁ ନିୟୋଜିତ କଲେ । ନିଜର ସହଜାତ ଗୁଣ ଯୋଗୁଁ ତାଙ୍କର ଦେବୋପମ ସ୍ୱାମୀଙ୍କର ସାହାଚର୍ଯ୍ୟ ଫଳରେ ପାରିବାରିକ ଜଞ୍ଜାଳ ମଧରେ ରହି ମଧ ଆଧାତ୍ମିକ ସାଧନା କ୍ଷେତ୍ରରେ ଅଗ୍ରସର ହେଲେ । ତେଣୁ ତାଙ୍କ ଜୀବନରେ ପାରିବାରିକ ଜୀବନ ଓ ଆଧାତ୍ମିକ ଜୀବନ ମଧରେ କୌଣସି ପ୍ରାଚୀର ନଥିଲା । ପରିବାରର ସଦସ୍ୟ ଭାବେ ସେ ତାଙ୍କର ଦରିଦ୍ର ସଂପର୍କୀୟ ମାନଙ୍କୁ ସାହାଯ୍ୟ କରିଥିଲେ ।

ଏପରିକି ତାଙ୍କର ସାଂସାରିକ କାର୍ଯ୍ୟକଳାପକୁ ଆଧାତ୍ମିକ ପରିପ୍ରକାଶ ଭାବରେ ଦେଖାଯାଇପାରେ । ସାଧାରଣତଃ ସଂସାରରେ କେହି କାହାକୁ ଭଲ ପାଇଲେ ପ୍ରତ୍ୟାଶା ଆଶା କରେ । କେବଳ ମା' କ୍ଷେତ୍ରରେ ସେ କୌଣସି ପ୍ରତ୍ୟାଶା ନ ରଖି ସନ୍ତାନକୁ ଭଲ ପାଏ । ତଥାପି ମା' ଚାହେଁ ପିଲାମାନେ ବାର୍ଦ୍ଧକ୍ୟରେ ବା ତା'ର ଅସହାୟ ଅବସ୍ଥାରେ ତା'ର ଯତ୍ନ ନିଅନ୍ତୁ । କୌଣସି ଲୋକଠାରୁ କିଛି ପ୍ରତ୍ୟାଶା ନ ରଖି ଭଲ ପାଇବା ଏ ସଂସାରରେ ବିରଳ । ଏବଂ ଯଦି ଭଲ ପାଉଥିବା ବ୍ୟକ୍ତିକୁ ଅସହ୍ୟ ଗାଳି ଓ

ନିର୍ଯ୍ୟାତନାର ଶିକାର ହେବାକୁ ପଡୁଥାଏ, ତଥାପି ସେ ଭଲ ପାଏ, ତେବେ ସେପରି ଭଲ ପାଇବା ଦୁର୍ଲଭ । ଏପରି ସମ୍ଭବ ହୁଏ, ଯେଉଁଠି ସେହି ବ୍ୟକ୍ତି ମଧ୍ୟରେ ଆଧ୍ୟାତ୍ମିକ ସତ୍ତାର ପୂର୍ଣ୍ଣ ଉନ୍ମେଷ ଘଟିଥାଏ । ଶ୍ରୀମା'ଙ୍କର ଏହା ସବୁଠାରୁ ଶ୍ରେଷ୍ଠ ଆବେଗିକ ପରିପ୍ରକାଶ ବୋଲି କହିବାକୁ ହେବ ।

ନିଜ ପୈତୃକ ପରିବାରର ଦେଖାଶୁଣା କରିବାର ଦାୟିତ୍ୱ ନେବା ତାଙ୍କ ପାଇଁ ବାଧ୍ୟବାଧକତା ନଥିଲା । କେବଳ ନିଜର ଭଲ ପଣିଆ ଓ ଦୟାର୍ଦ୍ର ଚିତ୍ତ ଯୋଗୁଁ ସେ ସେମାନଙ୍କର ସେବାଯତ୍ନ କରିବାକୁ ସ୍ଥିର କଲେ । ତାଙ୍କର ଏହି ସେବା ଓ ଭଲ ପାଇବା ପଛରେ କୌଣସି ସ୍ୱାର୍ଥ ନଥିଲା । ତାଙ୍କର ଭାଇମାନଙ୍କ ଠାରୁ, ପାଗିଳୀ ଭାଉଜ ଠାରୁ, ରାଧୁ ଠାରୁ ଏ ଜନ୍ମରେ ବା ପର ଜନ୍ମରେ ମଧ୍ୟ କିଛି ପାଇବାର ନଥିଲା । ତଥାପି ସେ ନିଜର କର୍ତ୍ତବ୍ୟ ଅତ୍ୟନ୍ତ ଶାନ୍ତଭାବରେ କ୍ଷମାଶୀଳା ହୋଇ, ଶ୍ରଦ୍ଧାର ସହିତ, ପାଳନ କରିଥିଲେ । ଏହାକୁ ଆଧ୍ୟାତ୍ମିକ ଜୀବନର ପ୍ରକୃତ ଅର୍ଥ କୁହାଯାଇପାରେ । ପାରିବାରିକ ଜୀବନରେ ଶାନ୍ତି ଓ ସ୍ଥିରତା ପାଇଁ ଏହାର ଆବଶ୍ୟକତା ବହୁତ ବେଶୀ ।

ତେଣୁ ଶ୍ରୀମା' ସାରଦାଦେବୀଙ୍କ ଜୀବନରେ ଏହି ନିଃସ୍ୱାର୍ଥ ସେବାଭାବର ସମ୍ପୂର୍ଣ୍ଣ ପରିପ୍ରକାଶ ମନୁଷ୍ୟ ସମାଜ ପାଇଁ ବିଶେଷ ବାର୍ତ୍ତା ବହନ କରେ । ଘୋର ସାଂସାରିକ ଜଞ୍ଜାଳ ମଧ୍ୟରେ ଶ୍ରୀମା'ଙ୍କର ପବିତ୍ରତା ଓ ନିଃସ୍ୱାର୍ଥପରତା ସନ୍ନ୍ୟାସୀମାନଙ୍କ ପାଇଁ ମଧ୍ୟ ଶିକ୍ଷଣୀୟ ।

ଶ୍ରୀମା'ଙ୍କର ରାଧୁ ପ୍ରତି ଆସକ୍ତି ସଂପର୍କରେ ଆଲୋଚନା କରାଯାଇପାରେ । ଶ୍ରୀରାମକୃଷ୍ଣଙ୍କର ଦେହତ୍ୟାଗ ପରେ ଶ୍ରୀମା' ସାରଦାଦେବୀଙ୍କର ମନ ଅତ୍ୟନ୍ତ ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥାରେ ଘୂରୁଥିଲା । ସେ କେବଳ ଠାକୁରଙ୍କ ବ୍ୟତୀତ ଅନ୍ୟ କିଛି ଚାହୁଁ ନଥିଲେ । ତେଣୁ ଠାକୁରଙ୍କର ମହାସମାଧି ପରେ ସେ ନିଜ ଜୀବନର ଯେ କିଛି ମୂଲ୍ୟ ରହିଛି ତାହା ଭାବି ପାରୁ ନଥିଲେ । ମଣିଷର ମନ କୌଣସି ଇଚ୍ଛା ବ୍ୟତୀତ ଅଧିକ ଦିନ କାର୍ଯ୍ୟକ୍ଷମ ହୋଇରହି ପାରେ ନାହିଁ । ସୁନାରେ ଅଳ୍ପ ପରିମାଣ ଖାଦ ମିଶାଇଲେ ଅଳଙ୍କାର ପ୍ରସ୍ତୁତ ହେବା ପରି ଶରୀର ରଖିବାକୁ ହେଲେ ମନ ମଧ୍ୟରେ କିଛି ସାଂସାରିକ ଇଚ୍ଛାକୁ ଜାଗ୍ରତ ରଖିବାକୁ ହୁଏ ଯାହା ଫଳରେ ମନ ଶାରିରୀକ ସ୍ତରରେ ରହି ପାରିବ । ନଚେତ୍ ଏହା ଚିରନ୍ତନ ସମାଧିରେ ମଗ୍ନ ହୋଇ ରହିବ ଏବଂ ଶରୀର ଚର୍ଯ୍ୟା ସଠିକ୍ ଭାବରେ ନ ହେବା ଫଳରେ ଶରୀର ଭାଙ୍ଗିପଡ଼ିବ । ତେଣୁ ଶ୍ରୀ ରାମକୃଷ୍ଣ ନିଜ ଜୀବନର ଉଦ୍ଦେଶ୍ୟକୁ ପୂରଣ କରିବା ପାଇଁ, ଶରୀର ରକ୍ଷା କରିବା ପାଇଁ ବିଭିନ୍ନ ପବିତ୍ର ବ୍ୟକ୍ତିମାନଙ୍କ ସହିତ ସଂପର୍କ, କଥୋପକଥନ ଏପରିକି ଭଲ ଭଲ ମିଷ୍ଟାନ୍ନ ଖାଇବାର ଆଗ୍ରହ ରଖିଥିଲେ । ଶ୍ରୀମା' ସାରଦା ଠାକୁରଙ୍କ ମୃତ୍ୟୁ

ପରେ ମଧ୍ୟ ଏହି ଇଚ୍ଛା ପୋଷଣ କରିଥିଲେ । ଯୋଗୀନ୍‌ମା' ଓ ଗୋଲାପମା' ଲକ୍ଷ୍ୟ କରି ଦେଖି ଥିଲେ ଯେ ଶ୍ରୀ ମା'ଙ୍କର ମୁହୁର୍ମୁହୁଃ ସମାଧି ଲାଭ ହେଉଛି । ଏବଂ ସେପରି ଅବସ୍ଥାରେ ଯଦି ତାଙ୍କର ମନ ସଂସାର ଆଡ଼କୁ ଢଳି ନ ଥାନ୍ତା, ତେବେ ସେ ଶରୀର ଧାରଣ କରି ରହି ପାରିନଥାନ୍ତେ । ତାଙ୍କ ଜୀବନରେ ରାଧୁର ଆବିର୍ଭାବ ତାଙ୍କୁ ସଂସାର ବନ୍ଧନରେ ବାନ୍ଧି ରଖିବା ହେତୁ ସେ ପାର୍ଥିବ ଶରୀର ଧାରଣ କରି ରହି ପାରିଲେ ଏବଂ ଠାକୁରଙ୍କର ଉଦ୍ଦେଶ୍ୟ ଓ ସଂକଳ୍ପକୁ କାର୍ଯ୍ୟରେ ପରିଣତ କଲେ ।

ଶ୍ରୀମା' ନିଜେ ରାଧୁ ସଂପର୍କରେ କହିଛନ୍ତି ''ରାଧୁ ମାଧ୍ୟମରେ ମୋତେ କିପରି ଠାକୁର ଛନ୍ଦି ଦେଇ ଯାଇଛନ୍ତି ? ଠାକୁରଙ୍କର ତିରୋଧାନ ପରେ, ମୋର ଜୀବନପ୍ରତି ସମ୍ପୂର୍ଣ୍ଣ ବିତୃଷ୍ଣା ଆସି ଯାଇଥିଲା । ମୁଁ ସଂସାରର ଜିନିଷ ପ୍ରତି ସମ୍ପୂର୍ଣ୍ଣ ଅବହେଳା ଦେଖାଉଥିଲି ଏବଂ ପ୍ରାର୍ଥନା କରୁଥିଲି, ''ମୁଁ ଏହି ସଂସାରରେ ରହି କ'ଣ ପାଇବି । ସେ ସମୟରେ ଦେଖିଲି ଦଶ / ବାର ବର୍ଷର ଝିଅଟିଏ ନାଲି ଫ୍ରକ୍ ପିନ୍ଧି ମୋ ଆଗେ ଆଗେ ଯାଉଛି । ଠାକୁର ମୋତେ ତାଙ୍କୁ ଦେଖାଇ ଦେଇ କହିଲେ, 'ଏହାକୁ ସାହାକରି ଯୋଡ଼ି ହୋଇ ରୁହ । ବହୁତ ସନ୍ତାନ (ଭକ୍ତ) ତୁମ ପାଖକୁ ଆସିବେ ।' ତାପରେ ସେ କୁଆଡ଼େ ଉଭେଇ ଗଲେ । ମୁଁ ସେହି ଝିଅଟିକୁ ଆଉ ଦେଖିବାକୁ ପାଇଲି ନାହିଁ । ପରେ ମୁଁ ଏହି ଜାଗାରେ (ଜୟରାମବାଟୀର ତାଙ୍କ ଘରେ) ବସିଦେଖିଲି । ସେ ସମୟରେ ରାଧୁର ମା' ସମ୍ପୂର୍ଣ୍ଣ ପାଗଳିନୀ । ସେ କେତେଖଣ୍ଡ ଛିଣ୍ଡା କନାକୁ କାଖରେ ଜାକି ଘୋଷାରି ଘୋଷାରି ନେଉଥାଏ ଏବଂ ରାଧୁ ତା ପଛେ ପଛେ କାନ୍ଦି କାନ୍ଦି ଗଡ଼ି ଗଡ଼ି ଚାଲିଥାଏ । ତାକୁ ଦେଖି ମୁଁ ମୋ ହୃଦୟରେ ଅଦ୍ଭୁତ ସମବେଦନା ଅନୁଭବ କଲି । ମୁଁ ରାଧୁ ନିକଟକୁ ଦୌଡ଼ିଗଲି ଏବଂ କାଖେଇ ପକାଇଲି । ମୁଁ ମୋ ନିଜକୁ କହିଲି, ''ଠିକ୍ ଅଛି, ମୁଁ ଯଦି ଏହି ପିଲାଟିର ଯତ୍ନ ନ ନେଉଛି, ତେବେ କିଏ ତାର ଯତ୍ନ ନେବ ? ତାର ବାପା ନାହିଁ, ମା' ପାଗିଳୀ । ମୁଁ ଯେମିତି ତାକୁ ମୋ କାଖକୁ ନେଇଛି, ତତ୍‌କ୍ଷଣାତ୍ ଠାକୁରଙ୍କୁ ଦେଖିବାକୁ ପାଇଲି । ସେ ମୋତେ କହିଲେ,''ଏହି ହେଉଛି ସେଇ ଝିଅ । ତୁମେ ତାହାକୁ ତୁମର ସାହା କରି ଯୋଡ଼ି ହୋଇ ରୁହ । ସେ ହେଉଛନ୍ତି ଯୋଗମାୟା ।''

ଶ୍ରୀମା' ବଞ୍ଚିଥିବା ବେଳେ ବହୁ ଭକ୍ତ ରାଧୁଙ୍କୁ ଜାବୋଡ଼ି ଧରିବା ଏବଂ ଆଧ୍ୟାତ୍ମିକ ଗୁରୁ ଭାବରେ ଦେଖା ଦେଇଥିବା ଦ୍ୱନ୍ଦ୍ୱ ସମ୍ପର୍କରେ ଅବଗତ ହୋଇଛନ୍ତି । ଦିନେ ଜଣେ ଶିଷ୍ୟ ତାଙ୍କର ଏହି ସନ୍ଦେହକୁ ଦୂର କରିବା ପାଇଁ ଶ୍ରୀମା'ଙ୍କୁ ପ୍ରଶ୍ନ କଲେ,"ମା ! ଆପଣ କାହିଁକି ଏତେ ଆସକ୍ତ ହୋଇ ଦିନରାତି ରାଧୁ ସେବାରେ ଲାଗିଛନ୍ତି । ଯେପରି ଜଣେ ସଂସାର ଭିତରେ ବୁଡ଼ିରହେ ।'' ଏହି ପ୍ରଶ୍ନର ଉତ୍ତର

ଶ୍ରୀମା' ପୂର୍ବରୁ କହିଥିବା କଥାକୁ ଦୋହରାଇ କହିଲେ "ତୁମେ ଦେଖ, ଆମେ ହେଲୁ ସ୍ତ୍ରୀ ଲୋକ । ପିଲାଙ୍କୁ ଭଲପାଇବା ଆମର ପ୍ରବୃତ୍ତି ।" ପୁଣି ଥରେ ଶିଷ୍ୟଠାରୁ ସେହି ପ୍ରଶ୍ନ ଶୁଣି ସେ ଉତ୍ତେଜିତ ହୋଇ କହିଲେ, "ତୁମେ ମୋ ପରି ଆଉ କେଉଁଠି କାହାକୁ ପାଇବ ? ପାଇବାକୁ ଚେଷ୍ଟା କର ତ ଦେଖି । ଯେଉଁମାନେ ଗଭୀର ଭାବରେ ଧ୍ୟାନ କରନ୍ତି ନିର୍ଗୁଣ ବ୍ରହ୍ମ ସମ୍ପର୍କରେ ସେମାନେ ଅତି ସୂକ୍ଷ୍ମ ଓ ପବିତ୍ର ମନ ନେଇ ଥାଆନ୍ତି । ସେହି ମନରେ ସେମାନେ ଯାହା ଭାବନ୍ତି, ସେମାନେ ଗଭୀର ଭାବରେ ଭାବନ୍ତି । ଏହା ଅନ୍ୟମାନଙ୍କୁ ବନ୍ଧନ ସଦୃଶ ପ୍ରତୀୟମାନ ହୁଏ । ଯେତେବେଳେ ଆଲୋକ ରଶ୍ମି ସମ୍ପାତ କରେ, ତାହା କାଚ ଝରକାରେ ପ୍ରତିଫଳିତ ହୁଏ । କାଠ ଝରକାରେ ନୁହେଁ ।"

ଥରେ ଯୋଗୀନ୍‌ମା' ମଧ୍ୟ ଶ୍ରୀମା'ଙ୍କ ସମ୍ବନ୍ଧରେ ଏହି ପ୍ରକାର ସନ୍ଦେହରେ ପଡ଼ିଥିଲେ । ସେ ଭାବିଲେ, 'ଠାକୁର ତ୍ୟାଗର ମୂର୍ତ୍ତି କିନ୍ତୁ ଆମେ ଦେଖୁଛୁ ଶ୍ରୀମା' ସାଧାରଣ ସଂସାରୀ ମଣିଷମାନଙ୍କ ପରି ବ୍ୟବହାର କରୁଛନ୍ତି । ଦିନରାତି ସେ ତାଙ୍କର ଭାଇ, ପୁତୁରା ଓ ଝିଆରୀ ମାନଙ୍କ ପାଇଁ ବ୍ୟସ୍ତ । ମୁଁ ଏହା କ'ଣ ବୁଝି ପାରୁନାହିଁ ?' ତାଙ୍କ ମନରେ ଏହି ପ୍ରକାର ଭାବନା ଉଠିବାପରେ, ଦିନେ ସେ ଗଙ୍ଗାକୂଳରେ ବସି ଧ୍ୟାନ କରୁଛନ୍ତି । ସେ ଠାକୁର ତାଙ୍କ ସମ୍ମୁଖରେ ଛିଡ଼ା ହୋଇଥିବାର ଦୃଶ୍ୟ ଦେଖିଲେ ଏବଂ ଠାକୁର କହୁଥିଲେ, 'ସେଆଡ଼େ ଚାହଁ । ତୁମେ ଗଙ୍ଗାରେ କ'ଣ ଭାସିଯାଉଛି, ତାକୁ ଦେଖୁନାହଁ ?' ସେ ଦେଖିଲେ ଗୋଟିଏ ସଦ୍ୟଜାତ ଶିଶୁ ସ୍ରୋତରେ ଭାସି ଭାସି ଯାଉଛି । ଠାକୁର ପୁନଶ୍ଚ ତାଙ୍କୁ କହିଲେ, 'ଗଙ୍ଗାକୁ କେହି କ'ଣ କେବେ ଅପବିତ୍ର କରିପାରେ ? ଶ୍ରୀମା'ଙ୍କୁ ଠିକ୍ ସେହିପରି ସମ୍ମାନ କର ।'

ହିନ୍ଦୁ ବିଶ୍ୱାସ ଅନୁସାରେ ଗଙ୍ଗାନଦୀରେ ଯେତେ ମଇଳା ଓ ଆବର୍ଜନା ପକାଇଲେ ମଧ୍ୟ ତାହା ସବୁ ଅବସ୍ଥାରେ ପବିତ୍ର । କଲିକତାର ହୁଗୁଳି, ଯେଉଁଠି ଗଙ୍ଗା ସବୁଠାରୁ ବେଶୀ ଅପରିଷ୍କାର, ସେଠାରୁ ପାଣି ନେଇ ବହୁ ବର୍ଷ ସାଇତି କରି ରଖାଯାଇପାରେ । ଏହା ସାଧାରଣ ପାଣି ପରି ଅଳ୍ପ ଦିନରେ ନଷ୍ଟ ହେବନାହିଁ । ତୀର୍ଥଯାତ୍ରୀ ମାନେ ଯେଉଁମାନେ ଗଙ୍ଗାପାଣିକୁ ତୀର୍ଥଜଳ ଭାବରେ ନିଅନ୍ତି, ସେମାନେ ବହୁ ବର୍ଷ ଏହାକୁ ସାଇତି ରଖନ୍ତି । ରାସାୟନିକ ପରୀକ୍ଷା ଦ୍ୱାରା ଦେଖାଯାଇଛି ଯେ ଖୁବ୍ ଅଳ୍ପ ସମୟ ମଧ୍ୟରେ ଗଙ୍ଗାଜଳରେ ଥିବା ଔଷଧୀୟ ଗୁଣ ବିଭିନ୍ନ କୀଟମାନଙ୍କୁ ନଷ୍ଟ କରିପକାଏ ।

ଠାକୁର କହିଲେ, 'ତୁମେ ଜାଣ ଯେ ସେ ଓ ମୁଁ ଏକ ଓ ଅଭିନ୍ନ ।' ତେଣୁ ଶ୍ରୀମା' ସଂସାର ବନ୍ଧନରେ ବାହ୍ୟ ଦୃଷ୍ଟିରୁ ବାନ୍ଧି ହୋଇଥିଲେ ମଧ୍ୟ ଥିଲେ ସଂପୂର୍ଣ୍ଣ

ମୁକ୍ତ । ଯେଉଁ ଭକ୍ତମାନେ ତାଙ୍କ ନିକଟକୁ ଯାଉଥିଲେ, ସେମାନେ ତାଙ୍କ ସାନ୍ନିଧ୍ୟରେ ସମସ୍ତ ସଂସାରିକ ବନ୍ଧନରୁ ମୁକ୍ତ ହୋଇ ଶାନ୍ତିଲାଭ କରୁଥିଲେ । ସେମାନଙ୍କ ମଧ୍ୟରୁ ଅନେକ ମଧ୍ୟ ସାଧୁସନ୍ନ୍ୟାସୀ ହେଉଥିଲେ । ଯଦି ସେ ସଂସାର ମଧ୍ୟରେ ବାନ୍ଧିହୋଇ ରହିଥିଲେ, ତେବେ କେଉଁ ଶକ୍ତି ବଳରେ ସେ ଅନ୍ୟମାନଙ୍କ ମଧ୍ୟରେ ତ୍ୟାଗ ଭାବନାକୁ ପ୍ରବେଶ କରାଇ ପାରୁଥିଲେ ? ଶ୍ରୀମା' ଥିଲେ ପ୍ରେମର, ତ୍ୟାଗର ପ୍ରତୀକ । ତାଙ୍କର ପ୍ରେମ ବାରିଧାରା ସମସ୍ତଙ୍କୁ ଶିତଳତା ପ୍ରଦାନ କରୁଥିଲା । ତାଙ୍କର ପ୍ରେମ ସାଗର ପରି ଥିଲା ବ୍ୟାପ୍ତ । କୌଣସି ବ୍ୟକ୍ତି ପ୍ରତି ବନ୍ଧନ ଯୁକ୍ତ ମନ କ'ଣ ଏପରି ସର୍ବବ୍ୟାପକ ପ୍ରେମ ପ୍ରଦାନ କରିବାକୁ ସକ୍ଷମ ? ସାଧାରଣ ଭାବରେ ଦେଖାଯାଏ ଯେ ଆସକ୍ତି ଯେତେ ଦୃଢ଼ ହୁଏ, ଅନାସକ୍ତ ଭାବ ସେତେ କମିଯାଏ । ଏହା ପ୍ରାୟ ସବୁ ସଂସାରୀ ଲୋକମାନଙ୍କ ପାଖରେ ଦେଖାଯାଏ । କିନ୍ତୁ ଆଧ୍ୟାତ୍ମିକ ଶକ୍ତି ସମ୍ପନ୍ନ ବ୍ୟକ୍ତି ବିଶେଷ ଆସକ୍ତି ଓ ଅନାସକ୍ତିକୁ ସମାନ ଭାବରେ ଦେଖନ୍ତି । ଯେହେତୁ ସେହି ବ୍ୟକ୍ତିବିଶେଷଙ୍କର ମନ ପବିତ୍ର, ସେମାନେ ଯେଉଁ କାର୍ଯ୍ୟକୁ ଗ୍ରହଣ କରନ୍ତି, ତାହାକୁ ନିଷ୍ଠାର ସହ କରନ୍ତି ଏବଂ ଦରକାର ପଡ଼ିଲେ ସେହି କାର୍ଯ୍ୟକୁ ଅତି ସହଜରେ ତ୍ୟାଗ କରିଦେଇ ପାରନ୍ତି । ଶ୍ରୀମା'ଙ୍କ ନିକଟରେ ଏହି ପ୍ରକାରର ଗଭୀର ଅନାସକ୍ତ ଭାବ ଥିଲା ।

ରାଧୁ ସହିତ ତାଙ୍କର ଆସକ୍ତିର ବନ୍ଧନ ଥିଲା ଅତି ଗଭୀର । କିନ୍ତୁ ଶେଷ ସମୟକୁ ସେ ସଂପୂର୍ଣ୍ଣ ଭାବରେ ଏହି ବନ୍ଧନକୁ ଛିନ୍ନ କରିଥିଲେ । ସେ ବାରମ୍ବାର କହୁଥିଲେ, ''ମୋର ରାଧୁ ସହିତ ଏହି ବଂଧନ ଏକ ପ୍ରହେଳିକା ଯାହାକୁ ମୁଁ ନିଜ ଉପରେ ନିଜେ ଲଦି ଦେଇଛି ।''

''ମୋର ମନ ସାମାନ୍ୟ ମାତ୍ର ରାଧୁ ଉପରେ ନଥାଏ । ମୁଁ ମନକୁ ଜୋରକରି ରାଧୁ ଉପରେ ଲଦିଦିଏ । ମୁଁ ଠାକୁରଙ୍କୁ ବାରମ୍ବାର ପ୍ରାର୍ଥନା କରେ, 'ହେ ପ୍ରଭୁ ! ମୋର ମନକୁ ଟିକିଏ ରାଧୁ ଆଡ଼କୁ ମୁହାଁଇ ଦିଅ । ନଚେତ୍ କିଏ ତା'ର ଦେଖାଶୁଣା କରିବ ?'' ତାଙ୍କର ବାରମ୍ବାର ଏହା କହିବାର ସତ୍ୟତା ତାଙ୍କ ମୃତ୍ୟୁ ଶଯ୍ୟା ସମୟରେ ଦେଖାଯାଇଥିଲା । ସାଧାରଣତଃ ମୃତ୍ୟୁ ସମୟରେ ସଂସାରର ବନ୍ଧନମାନ ବେଶୀଭାବରେ ମନୁଷ୍ୟକୁ ଆଚ୍ଛନ୍ନ କରେ ।

ମୃତ୍ୟୁର କିଛିଦିନ ପୂର୍ବରୁ ସେ ରାଧୁ ସଂପର୍କରେ ଆଦୌ ପଚାରିଲେ ନାହିଁ ଯଦିଓ ରାଧୁ ସଦାସର୍ବଦା ତାଙ୍କ ପାଖରେ ରହୁଥିଲା । ଦିନେ ସେ ରାଧୁକୁ କହିଲେ, 'ସଙ୍ଗେ ସଙ୍ଗେ ଜୟରାମବାଟୀକୁ ଚାଲିଯାଅ । ଏଠାରେ ଆଦୌ ରୁହ ନାହିଁ ।' ନିକଟରେ ଠିଆ ହୋଇ ଥିବା ଭକ୍ତ ସରଳା ଏହା ଶୁଣି କହିଲେ, 'ମା', ଆପଣ ଏପରି କ'ଣ କହୁଛନ୍ତି ? ଆପଣ ରାଧୁ ବିନା ମୁହୂର୍ତ୍ତେ ବଞ୍ଚି ପାରିବେ ନାହିଁ ।' ଭକ୍ତ ସରଳା

ଏହି କଥା ଯାଇ ଯୋଗୀନ୍ ମା' ଓ ସ୍ୱାମୀ ସାରଦାନନ୍ଦଙ୍କୁ ମଧ୍ୟ ଜଣାଇଲେ । ଯୋଗୀନ୍ ମା'ଶ୍ରୀମା'ଙ୍କ ନିକଟରେ ପହଞ୍ଚି ତାଙ୍କୁ ପଚାରିଲେ, 'ମା', ଆପଣ କାହିଁକି ରାଧୁକୁ ଚାଲିଯିବାକୁ କହୁଛନ୍ତି ?' ଏହାଶୁଣି ଶ୍ରୀମା' କହିଲେ, 'ଯୋଗୀନ୍, ଏହାପରଠାରୁ ସେ ଯାଇ ଜୟରାମବାଟୀରେ ରହିବ । ତୁମେ ତାଙ୍କୁ ସେଠାକୁ ପଠାଇ ଦିଅ । ମୁଁ ତା'ଉପରୁ ମୋର ମନକୁ ପ୍ରତ୍ୟାହାର କରି ନେଇଛି । ମୁଁ ତାକୁ ଏଠାରେ କ୍ଷଣେ ମାତ୍ର ଚାହେଁ ନାହିଁ ।' ଯୋଗୀନ୍‌ମା' ଏହା ଶୁଣି ପୁଣି କହିଲେ, 'ମା' ତୁମେ ସେପରି କାହିଁକି କହୁଛ ? ତୁମେ ଯଦି ରାଧୁ ଉପରୁ ତୁମ ମନକୁ ପ୍ରତ୍ୟାହାର କରିନେଇଛ, ତେବେ ଆମେ କିପରି ବଞ୍ଚିବୁ ?' ଯୋଗୀନ୍‌ମା'ଙ୍କର ଏହି ଅନୁରୋଧ ପୂର୍ଣ୍ଣ ବିନତି ଶୁଣି ଶ୍ରୀମା' କହିଲେ, 'ଯୋଗୀନ୍, ମୋର ତା' ସହିତ ଥିବା ସମସ୍ତ ବନ୍ଧନକୁ ମୁଁ ଛିନ୍ନ କରିଦେଇଛି, ଆଉ ସେ ସବୁର ଆବଶ୍ୟକତା ନାହିଁ ।'

ଏହି କଥୋପକଥନ ଯୋଗୀନ୍‌ମା' ଯାଇ ସ୍ୱାମୀ ସାରଦାନନ୍ଦଙ୍କୁ ଜଣାଇବାରୁ ସ୍ୱାମୀ ସାରଦାନନ୍ଦ କହିଲେ, ତାହାହେଲେ ଆମେ ମା'ଙ୍କୁ ଆମ ଗହଣରେ ବେଶୀ ଦିନ ରଖି ପାରିବା ନାହିଁ, ତାଙ୍କ ଜୀବନର ଆଉ ଆଶା ନାହିଁ । କାରଣ ସେ ତାଙ୍କର ମନକୁ ରାଧୁ ଠାରୁ ଉଠାଇ ନେଇଯାଇଛନ୍ତି ।'



# ଆଧ୍ୟାତ୍ମିକ ଶକ୍ତିର ବିତରଣ

ପ୍ରତ୍ୟେକ ଆଧ୍ୟାତ୍ମିକ ସାଧକ ମନୁଷ୍ୟତ୍ୱ ଓ ଦେବତ୍ୱର ସୀମାରେଖା ଚିହ୍ନିତ କରାଏ । ମାନବଜୀବନ ମଧ୍ୟଦେଇ ତାଙ୍କ ଦେବତ୍ୱର ପରିପ୍ରକାଶ ଘଟେ । ଈଶ୍ୱର ସେହି ମନୁଷ୍ୟ ଶରୀର ମଧ୍ୟରେ ତାଙ୍କର ଲୁଚୁକାଳି ଖେଳ ଖେଳନ୍ତି । ଏହିପରି ମଣିଷମାନଙ୍କର ଚରିତ୍ର ଓ କର୍ମ ମଧ୍ୟରେ ଦୁଇଟି ପର୍ଯ୍ୟାୟ ରହିଛି । କିନ୍ତୁ ଏହି ଦୁଇ ପର୍ଯ୍ୟାୟ ସମୟ ଓ ପରିସ୍ଥିତି ମଧ୍ୟଦେଇ ବାଛି ହୋଇଯାଏ । ଏକ ପକ୍ଷରେ ଏହା ସମ୍ପୂର୍ଣ୍ଣ ମନୁଷ୍ୟ ଜନୋଚିତ ହୋଇ ସଂସାରୀ ଲୋକଙ୍କର କାର୍ଯ୍ୟପରି ଦେଖାଯାଏ । କିନ୍ତୁ ଆଉ ଏକ ପର୍ଯ୍ୟାୟ ଜୀବନ ତାଙ୍କର ଆଧ୍ୟାତ୍ମିକ ଆଲୋକକୁ ଏପରି ପ୍ରକାଶ କରେଯେ, ତାହା ତାଙ୍କ ସଂପର୍କରେ ଆସୁଥିବା ବ୍ୟକ୍ତିର ସମସ୍ତ ପ୍ରକାର ଅଜ୍ଞତା ରୂପକ ଅନ୍ଧକାରକୁ ଦୂର କରି ପକାଏ । ମହାପୁରୁଷମାନଙ୍କ ଜୀବନରେ ଏହି ଆପାତତଃ ଦ୍ୱନ୍ଦ୍ୱ ଓ ବିରୋଧାଭାସ ଅତି ସୁସଂହତ ଭାବରେ ଅବସ୍ଥାନ କରେ ।

ଶ୍ରୀମା'ଙ୍କ ଜୀବନରେ ଉପରୋକ୍ତ ବିଚାରର ପୂର୍ଣ୍ଣ ପ୍ରତିଫଳନ ଦେଖିବାକୁ ମିଳେ । ଏକ ପକ୍ଷରେ ତାଙ୍କର ପରିବାରର ସଦସ୍ୟମାନେ ଏବଂ ଅନ୍ୟ ପକ୍ଷରେ ତାଙ୍କର ଶିଷ୍ୟମାନେ । ଏହି ଦୁଇଟି ଗୋଷ୍ଠୀ ଭିନ୍ନ ଭିନ୍ନ ଉଦ୍ଦେଶ୍ୟ ରଖି ତାଙ୍କ ନିକଟକୁ ଆସନ୍ତି । ତାଙ୍କର ପରିବାରର ସମ୍ପର୍କୀୟ ମାନେ ଆସନ୍ତି ତାଙ୍କଠାରୁ ଯେତେପ୍ରକାର ସମ୍ଭବ ଆର୍ଥିକ ଓ ସାଂସାରିକ ସାହାଯ୍ୟ ପାଇବାପାଇଁ ଏବଂ ତାଙ୍କର ଶିଷ୍ୟମାନେ ଆସୁଥିଲେ ତାଙ୍କର ସେବା କରି, ତାଙ୍କ ସଂସ୍ପର୍ଶରେ ଆସି ଆଧ୍ୟାତ୍ମିକ ଉନ୍ନତିଲାଭ କରିବା ପାଇଁ ।

ଶ୍ରୀମା'ଙ୍କର ପରିବାର ସମ୍ପର୍କୀୟ ମାନଙ୍କ ସଂପର୍କରେ ପୂର୍ବ ଆଲୋଚନାରେ କୁହାଯାଇଛି । ବର୍ତ୍ତମାନ ଆଧ୍ୟାତ୍ମିକ ପିପାସୁ ଭକ୍ତ ଓ ଶିଷ୍ୟମାନଙ୍କ ସହିତ ତାଙ୍କ ନିବିଡ଼ ସଂପର୍କ ସମ୍ବନ୍ଧରେ ଅନୁଧ୍ୟାନ କରିବା ଏବଂ ଦେଖିବା ଏହି ଆପାତ ବିରୋଧିତା ସତ୍ତ୍ୱେ ଶ୍ରୀମା' କିପରି ନିଜର ଆଧ୍ୟାତ୍ମିକ ସାଧନାର ସଫଳ ପରିପ୍ରକାଶ କରି ପାରିଛନ୍ତି ।

ମାନବତ୍ୱ ଓ ଦେବତ୍ୱର ସମନ୍ୱୟ ଯେକୌଣସି ଅବତାର ପୁରୁଷଙ୍କର ବୈଶିଷ୍ଟ୍ୟ ଏବଂ ଶ୍ରୀମା' ସାରଦା ଏଥିର ବ୍ୟତିକ୍ରମ ନୁହଁନ୍ତି । ଶ୍ରୀରାମକୃଷ୍ଣ ଏ ସଂପର୍କରେ

କଥାମୃତରେ କହିଛନ୍ତି, 'ମନୁଷ୍ୟ ରୂପରେ ଯେତେବେଳେ ଈଶ୍ୱର ଅବତାର ଗ୍ରହଣ କରନ୍ତି, ସେ ଅନ୍ୟ ଯେ କୌଣସି ସାଧାରଣ ମନୁଷ୍ୟ ପରି ବ୍ୟବହାର କରନ୍ତି, ସେଇଥିପାଇଁ ତାଙ୍କୁ ଜାଣିବା କଷ୍ଟସାଧ ହୋଇପଡ଼େ । ସେମାନଙ୍କର ମନୁଷ୍ୟମାନଙ୍କ ପରି କ୍ଷୁଧା, ତୃଷା, ରୋଗ, ଶୋକ ଏବଂ ସମୟ ସମୟରେ ଭୟ ମଧ ରହେ । ଏହିପରି ଅବସ୍ଥା ମଧରେ ରହିସୁଦ୍ଧା ସେମାନେ ସେମାନଙ୍କର ଦେବତ୍ୱ ସଂପର୍କରେ ସଚେତନ ଥାଆନ୍ତି- କେତେବେଳେ ଝାପ୍‌ସା ଭାବରେ ଓ ଅନ୍ୟ କେତେବେଳେ ସମ୍ପୂର୍ଣ୍ଣ ପରିଷ୍କାର ରୂପେ । ନିଜର ଇଚ୍ଛାଶକ୍ତିକୁ ପ୍ରୟୋଗ କରି ଆଧ୍ୟାତ୍ମିକ ଆଗ୍ରହୀ ଭକ୍ତମାନଙ୍କୁ ତାହା ପ୍ରଦାନ କରି ସେମାନଙ୍କର ଚେତନା ଜାଗ୍ରତ କରନ୍ତି । ଶ୍ରୀମା' ସାରଦା ଦେବୀଙ୍କ ଜୀବନ ଆମକୁ ଏହି ସତ୍ୟକୁ ଭଲ ଭାବରେ ଚିହ୍ନିତ କରେ ।

ପ୍ରଶ୍ନ ଉଠେ, ଶ୍ରୀମା'ସାରଦା କ'ଣ ନିଜେ ନିଜର ଦେବତ୍ୱ ସଂପର୍କରେ ସଚେତନ ଥିଲେ ? ଯଦି ଥିଲେ, ତେବେ କେତେଦୂର ? ବହୁ ସମୟରେ ସେ ନିଜେ ବକ୍ତବ୍ୟ ଦେଇ କହିଛନ୍ତି, 'ମୋ ହାତ ମୁଠାରେ ଈଶ୍ୱରଙ୍କର ଜ୍ଞାନ ରହିଛି । ଯେତେବେଳେ ଚାହିଁବ, ସେତେବେଳେ ପାଇ ପାରିବ। ସଂସାରର ସମସ୍ତ କାର୍ଯ୍ୟ ମଧରେ, ଯେତେବେଳେ ଇଚ୍ଛା କରେ, ମୁଁ ଝଟକରେ ଜାଣିପାରେ ଯେ ଏହା ମହାମାୟାଙ୍କର ଖେଳ ବ୍ୟତୀତ ଅନ୍ୟ କିଛି ନୁହେଁ । ମୋତେ ତୁମର ସଂପର୍କୀୟ ବୋଲି ବିଚାର କରନାହିଁ । ମୁଁ ଇଚ୍ଛା କଲେ, ମୁହୂର୍ତ୍ତକ ମଧ୍ୟରେ ଶରୀର ଛାଡ଼ି ଦେଇପାରେ । ଯେ ପର୍ଯ୍ୟନ୍ତ ମୁଁ ବଞ୍ଚିଛି, କେହି ମୋର ପ୍ରକୃତ ସ୍ୱରୂପକୁ ଜାଣି ପାରିବେ ନାହିଁ ।'

ଏହା ସତ୍ତ୍ୱେ ତାଙ୍କ ଝିଆରୀ ନଳିନୀର ଶିଶୁପୁତ୍ର ନେଡ଼ାର ମୃତ୍ୟୁରେ ସେ ଅଧୈର୍ଯ୍ୟ ହୋଇ କାନ୍ଦିବାକୁ ଲାଗିଲେ । ଏହାକୁ ଦେଖି ମହୀଶ୍ୱରର ଭକ୍ତ ଶ୍ରୀ ନାରାୟଣ ଆୟଙ୍ଗାର ପଚାରିଲେ, 'ମା' ! ସାଧାରଣ ଜୀବ ନେଡ଼ାର ମୃତ୍ୟୁରେ ଆପଣ କାନ୍ଦୁଛନ୍ତି କାହିଁକି ?' ତା'ର ଉତ୍ତରରେ ସେ କହିଥିଲେ, 'ମୁଁ ଏହି ସଂସାରରେ ରହିଛି । ମୋତେ ସେହି ଗଛର ଫଳକୁ ଚାଖିବାକୁ ପଡ଼ିବ । ସେଇଥିପାଇଁ କାନ୍ଦୁଛି ।'

ପୁଣି ଥରେ କହିଲେ, 'ଲୋକେ ମୋତେ ଦେବୀ ବୋଲି କହୁଛନ୍ତି, ଏବଂ ମୁଁ ମଧ ନିଜକୁ ସେଇଆ ବୋଲି ଭାବୁଛି । ନଚେତ୍ ଯେଉଁ ଯେଉଁ ଆଶ୍ଚର୍ଯ୍ୟଜନକ ଘଟଣା ମୋ ଜୀବନରେ ଘଟୁଛି, ତୁମେ ତାହାକୁ କିପରି ବୁଝନ୍ତ ?'

ଥରେ ଜଣେ ବ୍ରହ୍ମଚାରୀ ଶ୍ରୀମାଙ୍କୁ ଚିଠିପଢ଼ି ଶୁଣାଉଥିଲେ । ସେହି ଚିଠି ମଧରୁ ଗୋଟିଏ ଚିଠିରେ ଜଣେ ମହିଳାଭକ୍ତ ଶ୍ରୀମା'ଙ୍କୁ ଦେବୀ ଭାବରେ ବର୍ଣ୍ଣନା କରି ପ୍ରଶଂସା କରିଥିଲେ । ଏହା ଶୁଣି ଶ୍ରୀମା' କହିଲେ, 'କେବେକେବେ ମୁଁ ଭାବେ ମୁଁ ରାମ ମୁଖାର୍ଜୀଙ୍କର ଝିଅ ଏବଂ ମୋ ପରି ଝିଅ ମାନେ ଜୟରାମବାଟୀରେ ମଧ୍ୟ ଅଛନ୍ତି ।

ମୁଁ ସେମାନଙ୍କ ଠାରୁ କିପରି ଭିନ୍ନ ହେଲି ? ଭକ୍ତମାନେ ବିଭିନ୍ନ ଅଜଣା ସ୍ଥାନରୁ ଏଠିକି ଆସି ସେମାନଙ୍କର ସମ୍ମାନ ପ୍ରଦର୍ଶନ କରନ୍ତି । ସେମାନଙ୍କୁ ପଚାରିଲେ ସେମାନେ ବଡ଼ ଗୁରୁତ୍ୱପୂର୍ଣ୍ଣ ଲୋକ ଯଥା:- ମାଜିଷ୍ଟ୍ରେଟ, ଓକିଲ ଇତ୍ୟାଦି ବୋଲି ପରିଚୟ ଦିଅନ୍ତି । ସେମାନେ କାହିଁକି ଏଠାକୁ ଆସନ୍ତି ?' ଏହା ଶୁଣି ବ୍ରହ୍ମଚାରୀ ଜଣକ ପ୍ରଶ୍ନ କଲେ, 'ମା, ସତରେ କ'ଣ ଆପଣ ନିଜ ସ୍ୱରୂପ ସଂପର୍କରେ ସବୁବେଳେ ଅବଗତ ନୁହଁନ୍ତି ?' ଏହାର ଉତ୍ତରରେ ଶ୍ରୀମା' କହିଲେ, 'ଏହା କ'ଣ ସବୁବେଳେ ସମ୍ଭବ ? କିନ୍ତୁ କାର୍ଯ୍ୟବ୍ୟସ୍ତତା ମଧ୍ୟରେ, ଯେତେବେଳେ ମୁଁ ଚାହିଁବି, ଟିକିଏ ମାତ୍ର ଚିନ୍ତା କଲେ ମୁଁ ପ୍ରେରଣା ପାଏ ଏବଂ ମାୟାର ଖେଳ ପରିଷ୍କାର ଭାବେ ଉନ୍ମୋଚିତ ହୁଏ ।'

ହିନ୍ଦୁ ଧର୍ମରେ ଶିଷ୍ୟ ଓ ଗୁରୁର ସଂପର୍କ ଅତ୍ୟନ୍ତ ନିବିଡ଼ ଓ ପବିତ୍ର । ଗୁରୁ ମାଧ୍ୟମରେ ଶିଷ୍ୟ ଦେବତ୍ୱର ପରିପ୍ରକାଶକୁ ଅନୁଭବ କରେ । ତେଣୁ ଗୁରୁବାକ୍ୟକୁ ସେ ବିଶ୍ୱାସ କରେ ଓ କୌଣସି ପ୍ରଶ୍ନ ନ କରି ତାହାକୁ ପାଳନ କରେ । ଶିଷ୍ୟର ଏହି ପ୍ରକାର ଆଚରଣ ଯୋଗୁଁ ଗୁରୁର ଦାୟିତ୍ୱ ଖୁବ୍ ବେଶୀ । ଗୁରୁ ସେଇଥିପାଇଁ ଅତ୍ୟୁଚ୍ଚ ଆଧ୍ୟାତ୍ମିକ ଶକ୍ତି ସମ୍ପନ୍ନ ହେବା ସହିତ ଶାସ୍ତ୍ରଜ୍ଞ ଏବଂ ପ୍ରେମପୂର୍ଣ୍ଣ ହେବା ଆବଶ୍ୟକ । ତାଙ୍କର ମାନବର ଦୁଃଖ ପ୍ରତି କରୁଣା ରହିବା ଅତ୍ୟନ୍ତ ଜରୁରୀ ଓ ତାଙ୍କ ମନରେ ବ୍ୟବସାୟିକ ମନୋବୃତ୍ତି ବାସ କରିବା ଉଚିତ ନୁହେଁ । ପରିବାରରେ ମା' ବାପା ଯେପରି କୌଣସି ପ୍ରତ୍ୟାଶା ନ ରଖି ସନ୍ତାନ ପାଇଁ ସବୁ କିଛି ଦାନ କରନ୍ତି, ଗୁରୁ ତତୋଽଧିକ ଅର୍ପଣ କରିଥାନ୍ତି ।

ଶ୍ରୀମା' ସାରଦା ଏହିପରି ଦାୟିତ୍ୱ ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରିଛନ୍ତି । ଶ୍ରୀରାମକୃଷ୍ଣଙ୍କ ନିକଟରେ ରହି ଏଥିପାଇଁ ସେ ନିଜକୁ ଉତ୍ତମ ଭାବେ ପ୍ରସ୍ତୁତ କରିଛନ୍ତି । ଫଳରେ ଗୁରୁ ହେବାର ଦାୟିତ୍ୱ ସୂଚାରୁରୂପେ ତୁଲାଇବାକୁ ସେ ସକ୍ଷମ ହୋଇପାରିଛନ୍ତି । ତାଙ୍କ ମଧ୍ୟରେ ଥିବା ମାତୃତ୍ୱର ପୂର୍ଣ୍ଣ ପ୍ରକାଶଘଟି ଦିବ୍ୟମାତୃତ୍ୱରେ ରୂପାନ୍ତରିତ ହୋଇଛି । ସେଥିଲାଗି ସେ ନିଃସ୍ୱାର୍ଥପର, କ୍ଷମାଶୀଳା ଓ ଦୟାର୍ଦ୍ରଚିତ୍ତ ହୋଇ ସେବା କରିବା ପାଇଁ ସଦାସର୍ବଦା ଆଗ୍ରହ ପ୍ରକାଶ କରିଛନ୍ତି । ତାହାହିଁ ତାଙ୍କୁ ବିଶ୍ୱର ଅନ୍ୟତମ ବରେଣ୍ୟ ଆଧ୍ୟାତ୍ମିକ ଗୁରୁର ଆସନ ପ୍ରଦାନ କରିଛି । ଯେ କୌଣସି ବ୍ୟକ୍ତିକୁ ଶିଷ୍ୟଭାବରେ ଦୀକ୍ଷା ଦେବା ସମୟରେ, ତାଙ୍କର ଦାୟିତ୍ୱ ସଂପର୍କରେ ସେ ନିଜେ କହିଛନ୍ତି, 'ଗୁରୁର ଶକ୍ତି ମନ୍ତ୍ର ସାହାଯ୍ୟରେ ଶିଷ୍ୟ ନିକଟକୁ ପ୍ରେରିତ ହୁଏ । ଗୁରୁଙ୍କୁ ସେଇଥିପାଇଁ ଦୀକ୍ଷା ଦେବା ସମୟରେ ନିଜ ଉପରକୁ ଶିଷ୍ୟର ପାପର ଦାୟିତ୍ୱ ନେବାକୁ ହୋଇଥାଏ । କିନ୍ତୁ ଜଣେ ଜଣେ ଉତ୍ତମ ଶିଷ୍ୟ ଗୁରୁଙ୍କୁ ସାହାଯ୍ୟ କରନ୍ତି । କେତେକ ଶିଷ୍ୟଙ୍କର ଖୁବ୍ ଶୀଘ୍ର ଉନ୍ନତି ହୁଏ ଏବଂ ଅନ୍ୟ କେତେକଙ୍କର ଅତ୍ୟନ୍ତ ମନ୍ଥର । ଜଣକର

ଅତୀତର କାର୍ଯ୍ୟ ତାର ଆଧ୍ୟାତ୍ମିକ ଅଗ୍ରଗତିକୁ ନିୟନ୍ତ୍ରଣ କରେ । ସେଇଥିପାଇଁ ରାଖାଲ (ସ୍ୱାମୀ ବ୍ରହ୍ମାନନ୍ଦ) ଦୀକ୍ଷା ଦେବାକୁ କୁଣ୍ଠାବୋଧ କରୁଥିଲେ । ଥରେ ସେ ମୋତେ କହିଲେ, ''ମା ! ମୁଁ କୌଣସି ଶିଷ୍ୟକୁ ଦୀକ୍ଷା ଦେବାମାତ୍ରେ ଶାରୀରିକ ଭାବେ ଅସୁସ୍ଥ ଅନୁଭବ କରେ । ମନ୍ତ୍ର କହିବା ମାତ୍ରକେ ମୋତେ ଜରୁଆ ଲାଗେ ।' ବୋଧହୁଏ ଏହି କାରଣରୁ ସ୍ୱାମୀ ବ୍ରହ୍ମାନନ୍ଦ ବହୁ ବିଚାର କରି ଦୀକ୍ଷା ଦିଅନ୍ତି । ତେଣୁ ଶ୍ରୀମା'ଙ୍କୁ ଅନେକ ଭକ୍ତଙ୍କୁ ଦୀକ୍ଷାଦେବାକୁ ହୋଇଥାଏ । ଯେଉଁମାନେ ତାଙ୍କ ନିକଟକୁ ଦୀକ୍ଷାଗ୍ରହଣ କରିବାକୁ ଯାଆନ୍ତି, ସେ କୌଣସି ପ୍ରକାର ଶାରିରୀକ କ୍ଳେଶ ପାଇବା କଥା ଚିନ୍ତା ନ କରି ଦୀକ୍ଷା ଦେଇଥାନ୍ତି । ଶ୍ରୀମା'ଙ୍କର ଏହି ଗୁଣକୁ ଲକ୍ଷ୍ୟ କରି ସ୍ୱାମୀ ପ୍ରେମାନନ୍ଦ କହିଥିଲେ, 'ଆମେ ଯେଉଁ ବିଷକୁ ଗ୍ରହଣ କରି ନ ପାରିବୁ, ତାହାକୁ ଶ୍ରୀମା'ଙ୍କ ପାଖକୁ ପଠାଇ ଦେଉଛୁ । ସେ ସମସ୍ତଙ୍କୁ ଆଶ୍ରୟ ଦେଉଛନ୍ତି । ସମସ୍ତଙ୍କର ପାପକୁ ହଜମ କରୁଛନ୍ତି ।' ଲୋକମାନଙ୍କର ତାଙ୍କ ପାଦକୁ ଅବାଧ ସ୍ପର୍ଶ ଯୋଗୁ ସେ ପାଦରେ ଜ୍ୱଳନ ଅନୁଭବ କରୁଥିଲେ । ୧୯୧୬ ମସିହାରେ ସେ ବେଲୁଡ଼ମଠରେ ଦୁର୍ଗାପୂଜା ଉତ୍ସବରେ ଅଂଶଗ୍ରହଣ କରିଥିଲେ । ବହୁ ଲୋକ ତାଙ୍କ ପାଦ ସ୍ପର୍ଶ କରି ତାଙ୍କୁ ପ୍ରଣାମ କରିଥିଲେ । କିଛି ସମୟପରେ ଯୋଗିନ୍‌ମା ଦେଖିଲେ ଯେ ସେ ତାଙ୍କର ପାଦକୁ ଗଙ୍ଗା ଜଳରେ ବାରମ୍ବାର ଧୋଉଛନ୍ତି । ସେ ତାଙ୍କୁ ପଚାରିଲେ, "ମା, ଆପଣ ଏ କ'ଣ କରୁଛନ୍ତି ? ଆପଣଙ୍କୁ ସର୍ଦ୍ଦି ହେବ ।" "ଏହା ଶୁଣି ଶ୍ରୀମା' ଉତ୍ତର ଦେଲେ, "ଠିକ୍ କଥା, ଯୋଗିନ୍ ! କିନ୍ତୁ ମୁଁ ତୋ ପ୍ରଶ୍ନର କ'ଣ ଉତ୍ତର ଦେବି ? କେତେକ ଲୋକ ମୋର ପାଦ ସ୍ପର୍ଶ କରନ୍ତି ଏବଂ ଅତି ଆଶ୍ଚର୍ଯ୍ୟଭାବେ ମୋତେ ଆରାମ ଲାଗେ । ପୁଣି ଅନ୍ୟ କେତେକ ଅଛନ୍ତି ଯେଉଁ ମାନଙ୍କର ସ୍ପର୍ଶରେ ମୋ' ପାଦ ପୋଡ଼ିଗଲା ପରି ଲାଗେ । ମୋତେ ବିରୁଡ଼ି ଦଂଶନ ପରି ଅନୁଭବ ହୁଏ । ଗଙ୍ଗାଜଳ ଲଗାଇବା ପରେ ମୁଁ ସୁସ୍ଥ ହୁଏ ।"

ଜୟରାମବାଟୀଠାରେ ଅନ୍ୟ ଏକ ଏହିପରି ଘଟଣା ସଂପର୍କରେ ଆଉ ଜଣେ ଭକ୍ତ ଉଲ୍ଲେଖ କରିଛନ୍ତି । ଶ୍ରୀମା'ଙ୍କ ସେବାରେ ନିଯୁକ୍ତ ଭକ୍ତ ଦିନେ ବାହାରକୁ ଯାଇଥିଲେ । ସେ ଫେରିଆସି ଦେଖିଲେ ଶ୍ରୀମା' ବାରଣ୍ଡାରେ ଛଣରେ ନିର୍ମିତ ସପ ଉପରେ ଶୋଇଛନ୍ତି । ଶ୍ରୀମା' ତାଙ୍କୁ କହିଲେ,''ଜଣେ ବୟସ୍କ ବ୍ୟକ୍ତି ଏଠାକୁ ଆସିଥିଲେ । ତାଙ୍କୁ ଦୂରରୁ ଦେଖି ମୁଁ ଘର ଭିତରକୁ ଚାଲିଗଲି ଏବଂ ବିଛଣାରେ ବସିଲି । ସେ ମୋର ପାଦସ୍ପର୍ଶ କରି ମୋତେ ପ୍ରଣାମ କରିବାକୁ ଭାରି ବ୍ୟସ୍ତ ହେଉଥିଲେ । ମୁଁ ତାଙ୍କର ପ୍ରଣାମ କରିବାକୁ ବିରୋଧ କରିବା ସତ୍ତ୍ୱେ ସେ ଜବରଦସ୍ତ ମୋର ପାଦସ୍ପର୍ଶ କଲେ । ସେହି ସମୟରୁ ମୁଁ ପାଦ ଓ ପେଟରେ ମରିଗଲାପରି ଅସହ୍ୟ ଯନ୍ତ୍ରଣା

ଭୋଗୁଛି । ମୁଁ ତିନିଚାରି ଥର ମୋର ପାଦକୁ ଧୋଇଲିଣି, ତଥାପି ପାଦର ପୋଡାଜଳାରୁ ମୁକ୍ତି ମିଳୁନି । ତୁମେ ଯଦି ଏଠାରେ ଥାଆନ୍ତ, ତେବେ ମୋର ଇଶାରାରୁ ବୁଝିପାରିଥାନ୍ତ ଏବଂ ତାଙ୍କୁ ପାଦସ୍ପର୍ଶ କରିବାରୁ ବାରଣ କରିଥାଆନ୍ତ ।'

ଏହା ସତ୍ତ୍ୱେ ମଧ ବହୁଲୋକ ତାଙ୍କ ନିକଟକୁ ଆସି ପାଦସ୍ପର୍ଶ କରି ପ୍ରଣାମ କରୁଥିଲେ । ତାଙ୍କର ଏହି କଷ୍ଟ ବିଷୟରେ ସ୍ୱାମୀ ସାରଦାନନ୍ଦଙ୍କୁ କହିବାକୁ ସେ ମନା କରିଥିଲେ କାରଣ ତାହା କଲେ ସ୍ୱାମୀସାରଦାନନ୍ଦ ଲୋକମାନଙ୍କୁ ତାଙ୍କ ପାଖକୁ ଆସିବାକୁ ମନା କରିବେ ।

ଶ୍ରୀମା' ଥିଲେ ଏହିପରି ଦୟାର୍ଦ୍ରଚିତ୍ତ । ମାତୃହୃଦୟ ହେତୁ ସେ ଅକାତରରେ ଭକ୍ତମାନଙ୍କର ଦୁଃଖକୁ ବହନ କରି ନିଜେ କ୍ଳେଶ ଅନୁଭବ କରୁଥିଲେ ।

ଥରେ କୋଆଲପଡ଼ା ଠାରେ, ଜଣେ ଭକ୍ତ ତାଙ୍କର ପାଦସ୍ପର୍ଶ କରିବାକୁ କୁଣ୍ଠାବୋଧ କରିବାରୁ ସେ ତାଙ୍କୁ କହିଲେ, 'ନାଁ, ପୁଅ, ଆମେ ଏଇଥି ପାଇଁ ଜନ୍ମ ହୋଇଛୁ । ଯଦି ଆମେ ଅନ୍ୟର ପାପ ଓ ଦୁଃଖକୁ ଗ୍ରହଣ ନ କରିବୁ, ତେବେ କିଏ ତାକୁ ଗ୍ରହଣ କରିବ ? ଦୁଃଖୀ ଏବଂ ପାପୀ ମାନଙ୍କର ଦାୟିତ୍ୱ କିଏ ବହନ କରିବ ?' ତାଙ୍କର ସ୍ୱାସ୍ଥ୍ୟ ଅବସ୍ଥା ଅତ୍ୟନ୍ତ ଖରାପ ଥିବା ସମୟରେ, ତାଙ୍କର ଯନ୍ତ୍ରଣାକୁ ଲକ୍ଷ୍ୟ କରି ସନ୍ନ୍ୟାସୀ ଭକ୍ତମାନେ ସ୍ଥିର କଲେ ଶ୍ରୀମା'ଙ୍କ ଦେହ ଭଲ ହୋଇଗଲେ, ତାଙ୍କୁ ଦୀକ୍ଷା ଦେବାରୁ ନିବୃତ କରିବେ । ଏହା ଶୁଣି ଶ୍ରୀମା' କହିଲେ, 'ତୁମେ ସେପରି କାହିଁକି କହୁଛ ? ତୁମେ କ'ଣ ଭାବୁଛ ଯେ ଠାକୁର କେବଳ ରସଗୋଲା ଖାଇବାକୁ ଆସିଥିଲେ ।'

ଅସହାୟ, ଦୁଃସ୍ଥ ଓ ରୁଗ୍ଣ ମାନଙ୍କର ସେବା କରିବା ତାଙ୍କ ହୃଦୟର ଦୟାର୍ଦ୍ର କର୍ମ ପ୍ରେରଣା ଥିଲା । ଏପରିକି ଦିନେ ଦିନେ ସେ ସ୍ୱଗତୋକ୍ତି କରି କହିବାର ଶୁଣାଯାଇଛି, 'ଆଜି ଦିନଟି ବିଫଳ ଗଲା । କେହି ଭକ୍ତ ଆସିଲେ ନାହିଁ ।' ଠାକୁରଙ୍କୁ ମନେ ପକାଇ କୁହନ୍ତି, 'ତୁମେ ପରା କହିଥିଲ ପ୍ରତ୍ୟେକ ଦିନ ମୋତେ କିଛି ନା କିଛି କାର୍ଯ୍ୟ କରିବାକୁ ହେବ ।' ଭକ୍ତମାନଙ୍କର ଆସିବାର ଦେଖିଲେ ତାଙ୍କ ମୁଖ ଉଜ୍ଜ୍ୱଳ ହୋଇ ଉଠୁଥିଲା ।

ଜୟରାମବାଟୀରେ ଶ୍ରୀମା' ମ୍ୟାଲେରିଆ ରୋଗରେ ପିଡ଼ିତ ଥିଲେ । ବରିଶାଲରୁ ଜଣେ ଭକ୍ତ ଦୀକ୍ଷା ନେବାକୁ ଆସିଥିଲେ । କିନ୍ତୁ ସ୍ୱାମୀ ସାରଦାନନ୍ଦଙ୍କ ନିର୍ଦ୍ଦେଶରେ ତାଙ୍କୁ ଶ୍ରୀମା'ଙ୍କୁ ସାକ୍ଷାତ୍ କରିବାକୁ ଦିଆଗଲା ନାହିଁ । ଶ୍ରୀମା' ଭକ୍ତ ସହିତ ଯୁକ୍ତିତର୍କ ଶୁଣି ଦ୍ୱାର ନିକଟକୁ ଆସି କହିଲେ, 'ଶରତ କିଏ ମନା କରିବ ?' ମୁଁ ଏଇଥି ପାଇଁ ଜନ୍ମ ନେଇଛି । ଆଜି କିଛି ଖାଇନିଅ । ମୁଁ ତୁମକୁ ଆସନ୍ତା କାଲି ଦୀକ୍ଷା ଦେବି ।'

କଲିକତାରେ ଶ୍ରୀମା' ଅତ୍ୟନ୍ତ ଅସୁସ୍ଥ ଅବସ୍ଥାରେ ଥିବାବେଳେ କୌଣସି ଭକ୍ତଙ୍କୁ ତାଙ୍କ ନିକଟକୁ ଛଡ଼ା ଯାଉ ନଥିଲା । ଏଥିରେ ବ୍ୟତିକ୍ରମ ଘଟିଥିଲା ଜଣେ ପାର୍ଶି ଯୁବକ ଭକ୍ତ ପାଇଁ । ସେହି ପାର୍ଶି ଯୁବକ ଜଣକ ବହୁଦୂରରୁ ଆସିଥିଲେ । ସେ ଆସି ଶ୍ରୀମା'ଙ୍କର ଆଶୀର୍ବାଦ ଭିକ୍ଷା କଲେ । ସେଠାରେ ଥିବା ଅନ୍ୟ ଶିଷ୍ୟଙ୍କୁ ଲକ୍ଷ୍ୟ କରି ଶ୍ରୀମା' କହିଲେ, 'ମୁଁ ତାଙ୍କୁ ଦୀକ୍ଷା ଦେବି ।' ଏଥିରେ ଶିଷ୍ୟ ଅଭିଯୋଗ କରି କହିଲେ, 'ଆପଣଙ୍କ ସ୍ୱାସ୍ଥ୍ୟର ଏପରି ଅବସ୍ଥାରେ ଦୀକ୍ଷାଦେବା ଠିକ୍ ହେବ ନାହିଁ । ଯଦି ଶରତ ମହାରାଜ ଶୁଣନ୍ତି ସେ କ'ଣ କହିବେ ?' ଶ୍ରୀମା' ଶିଷ୍ୟଙ୍କୁ ସ୍ୱାମୀ ସାରଦାନନ୍ଦଙ୍କୁ ପଚାରି ଆସିବାକୁ କହିଲେ । ସ୍ୱାମୀ ସାରଦାନନ୍ଦ କହିଲେ, 'ମୁଁ କ'ଣ କହିବି ? ଯଦି ଶ୍ରୀମା' ଜଣେ ପାର୍ଶି ଶିଷ୍ୟଙ୍କୁ ଚାହାଁନ୍ତି, ତେବେ ତାଙ୍କୁ ଦୀକ୍ଷା ଦିଅନ୍ତୁ । ତାଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କୁ କିଛି କହିବା ଉଚିତ୍ ନୁହେଁ ।' ଶିଷ୍ୟ ଫେରିଯାଇ ଦେଖିଲେ ଶ୍ରୀମା' ଦୀକ୍ଷା ଦେବାର ସମସ୍ତ ବନ୍ଦୋବସ୍ତ କରି ସାରିଛନ୍ତି । ପରବର୍ତ୍ତୀ ସମୟରେ ସେ ସେହି ଯୁବକଙ୍କର ଆଧ୍ୟାତ୍ମିକ ଉନ୍ନତିରେ ଅତ୍ୟନ୍ତ ଆନନ୍ଦ ପ୍ରକାଶ କରିଥିଲେ । ସେ ଥିଲେ ରୁସ୍ତମ୍ ସୋରାବ ମୋଦି ।

ବାତ୍ସଲ୍ୟ ମମତାସିକ୍ତ ଶ୍ରୀମା' ଏହି କାରଣରୁ ତାଙ୍କ ନିକଟକୁ ଯେଉଁମାନେ ଆସୁଥିଲେ ସେମାନଙ୍କୁ ଆଶୀର୍ବାଦ କରୁଥିଲେ ଓ ଦୀକ୍ଷା ଦେଉଥିଲେ । କାରଣ ସେ ମା' ହୋଇଥିବା ହେତୁ ସମସ୍ତଙ୍କର ଦୁଃଖ, ଶୋକ ଓ ପାପକୁ ନିଜ ଉପରେ ନିଃସଂକୋଚରେ ନେବାରେ ଆନନ୍ଦ ପାଉଥିଲେ । ତାଙ୍କର ଏହିପରି ଉଦାରତା ଓ ସେବା କରିବାର ମାତୃସୁଲଭ ଇଚ୍ଛା ହେତୁ ତାଙ୍କର ଦୀକ୍ଷିତ ଭକ୍ତଙ୍କ ସଂଖ୍ୟା ଅନେକ । ଏପରି ଅନେକ ଭକ୍ତ ଦୀକ୍ଷା ନେଉଥିଲେ, ଯେଉଁମାନଙ୍କ ନିକଟରେ କୌଣସି ବିଶେଷ ଯୋଗ୍ୟତା ନଥିଲା । ତେଣୁ ଦୀକ୍ଷା ନେବାପରେ ସେମାନଙ୍କର ସେପରି କିଛି ଆଧ୍ୟାତ୍ମିକ ଉନ୍ନତି ହେଉ ନଥିଲା । ଏହାକୁ ମନେ ରଖି ଦିନେ ଯୋଗୀନ୍ ମା' ତାଙ୍କୁ ମଜା କରିବା ପାଇଁ କହିଲେ, 'ତୁମେ ଠାକୁରଙ୍କର ଶିଷ୍ୟମାନଙ୍କୁ ଦେଖ । ସେମାନେ ପ୍ରତ୍ୟେକ ଜଣେ ଜଣେ ମହାନ୍ ଆଧ୍ୟାତ୍ମିକ ସାଧକ । କିନ୍ତୁ ତୁମର ଶିଷ୍ୟମାନେ କ'ଣ ମା' ?' ଏହା ଶୁଣି ଶ୍ରୀମା' କହିଲେ, 'ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ସେ ସବୁଠାରୁ ଶ୍ରେଷ୍ଠମାନଙ୍କ ମଧ୍ୟରୁ କେତେ ଯତ୍ନରେ ସେମାନଙ୍କୁ ନିର୍ବାଚିତ କରିଥିଲେ । ଏବଂ ମୋ ଆଡ଼କୁ ଏହି କ୍ଷୁଦ୍ର ଜୀବମାନଙ୍କୁ ଠେଲି ଦେଲେ, ପିମ୍ପୁଡି ଶହ ଶହ ସଂଖ୍ୟାରେ ଆସିବା ପରି । ତାଙ୍କର ଶିଷ୍ୟମାନଙ୍କ ସହିତ ମୋ ଶିଷ୍ୟମାନଙ୍କୁ ତୁଳନା କରନାହିଁ ।' ସେ ତାଙ୍କର ଦୀକ୍ଷାର ମହତ୍ତ୍ୱ ସଂପର୍କରେ ଜଣେ ଶିଷ୍ୟଙ୍କୁ କହିଥିଲେ, 'ଯାହା ମୋର ଦେବାର କଥା, ମୁଁ ଦୀକ୍ଷା ସମୟରେ ତାହାକୁ ଦେଇଦିଏ । ତୁମେ ଯଦି ତତ୍କ୍ଷଣାତ୍

ଶାନ୍ତି ଚାହଁ, ଯେଉଁ ଆଧ୍ୟାତ୍ମିକ ଶୃଙ୍ଖଳା ବତାଯାଉଛି, ତାହାକୁ ପାଳନ କର । ନଚେତ୍ ତୁମେ ଶରୀର ବିନାଶ ହେବା ପରେ ହିଁ ପାଇବ ।'

ଶ୍ରୀମା' ବୟସ ନିର୍ବିଶେଷରେ ଦୀକ୍ଷା ଦେଉଥିଲେ । ଏତେ ସଂଖ୍ୟାରେ ଭକ୍ତମାନଙ୍କୁ ଦୀକ୍ଷା ଦେଉଥିଲେ ଯେ ସେମାନଙ୍କୁ ମନେ ରଖିବା କଷ୍ଟକର ଥିଲା । ଏହାକୁ ଲକ୍ଷ୍ୟ କରି ଥରେ ଜଣେ ଭକ୍ତ କହିଲେ, 'ମା', ଆପଣ ବହୁ ଶିଷ୍ୟଙ୍କୁ ଦୀକ୍ଷା ଦେଉଛନ୍ତି । ଏପରିକି ସେମାନଙ୍କର କ'ଣ ହେବ ସେ ସଂପର୍କରେ କୌଣସି କଥା ଭାବୁ ନାହାଁନ୍ତି । ଗୁରୁ ଶିଷ୍ୟର ଆଧ୍ୟାତ୍ମିକ ଉନ୍ନତି ପ୍ରତି ଦୃଷ୍ଟି ଦେବା ଦରକାର । ତେଣୁ ଏହା ସବୁଠାରୁ ଭଲ ହେବ, ଯଦି ଆପଣ ଯେତେ ଭକ୍ତଙ୍କୁ ଦୀକ୍ଷା ଦେଉଛନ୍ତି, ସେମାନଙ୍କୁ ମନେ ରଖନ୍ତେ ।'

ଏହା ଶୁଣି ଶ୍ରୀମା' କହିଲେ, 'କିନ୍ତୁ ପୁଅ ମୋର, ଠାକୁର ଏହା ମୋତେ କରିବାକୁ ମନା କରିନାହାନ୍ତି । ସେ ମୋତେ ବହୁ ବିଷୟରେ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ଏ ବିଷୟରେ ମଧ୍ୟ ସେ କ'ଣ ମୋତେ କହି ପାରି ନଥାନ୍ତେ ? ମୁଁ ଠାକୁରଙ୍କୁ ମୋର ଭକ୍ତ ମାନଙ୍କର ଦାୟିତ୍ୱ ସମର୍ପଣ କରି ଦେଉଛି । ମୁଁ ତାଙ୍କୁ ସବୁଦିନେ ପ୍ରାର୍ଥନା କରି କହୁଛି, 'ସେମାନେ ଯେଉଁଠାରେ ଥାଆନ୍ତୁ ନା କାହିଁକି ସେମାନଙ୍କୁ ଦେଖିବ ।' ତା'ପରେ ମୁଁ ଏହି ମନ୍ତ୍ରମାନ ଠାକୁରଙ୍କ ନିକଟରୁ ପାଉଛି । ଏହାଦ୍ୱାରା ଜଣେ ନିଶ୍ଚୟ ପୂର୍ଣ୍ଣତା ଲାଭ କରିବ ।'

ଶ୍ରୀମା' ପ୍ରତ୍ୟେକ ଦିନ ଜପ କରନ୍ତି । ସେ ଭକ୍ତମାନଙ୍କର ମଙ୍ଗଳ ପାଇଁ ଏହା କରୁଥିବାର ବାରମ୍ବାର ସୂଚାଇ ଦେଇ ଯାଇଛନ୍ତି । ସେ ପ୍ରାୟ ପ୍ରତ୍ୟେକ ଦିନ ଭୋର ୩ଟା ବେଳୁ ଉଠି ଜପ କରନ୍ତି । ଏହାକୁ ଲକ୍ଷ୍ୟ କରି ଜଣେ ଭକ୍ତ ପଚାରିଲେ, ''ତାଙ୍କର କ'ଣ ରାତିରେ ଭଲ ନିଦ ହେଉନାହିଁ ?'' ତାଙ୍କର ଉତ୍ତର ଥିଲା, 'ସନ୍ତାନ ମୋର, କେମିତି ମୁଁ ଶୋଇପାରିବି । ଏହି ପିଲାମାନେ ମୋ ପାଖକୁ କେତେ ଆଶା ନେଇ ଆସନ୍ତି ଏବଂ ଦୀକ୍ଷା ନିଅନ୍ତି । କିନ୍ତୁ ସେମାନେ ନିୟମିତ ଜପ କରନ୍ତି ନାହିଁ । ନିୟମିତ କାହିଁକି ? ଏପରିକି ଆଦୌ କରନ୍ତି ନାହିଁ । ଯେହେତୁ ମୁଁ ସେମାନଙ୍କର ଦାୟିତ୍ୱ ନେଇଛି, ସେମାନଙ୍କର ମଙ୍ଗଳ କାମନା କରିବା ମୋର ଦାୟିତ୍ୱ ନୁହେଁକି ? ତେଣୁ ମୁଁ ସେମାନଙ୍କ ପାଇଁ ଜପ କରେ ଏବଂ ବାରମ୍ବାର ଠାକୁରଙ୍କୁ ପ୍ରାର୍ଥନା କରି କହେ, 'ହେ ପ୍ରଭୁ; ସେମାନଙ୍କର ଚେତନା ଶକ୍ତିକୁ ଜାଗ୍ରତ କର । ସେମାନଙ୍କୁ ମୁକ୍ତି ପ୍ରଦାନ କର । ଏହି ସଂସାରରେ ଅନେକ ଦୁଃଖ ଓ ଯନ୍ତ୍ରଣା । ସେମାନେ ଯେପରି ଆଉ ପୁନର୍ଜନ୍ମ ଲାଭ ନ କରନ୍ତୁ ।'

ଯେତେ ସଂଖ୍ୟକ ଲୋକ ତାଙ୍କୁ ଦୀକ୍ଷା ପାଇଁ ନିବେଦନ କରିଛନ୍ତି ସେ ପ୍ରାୟ

ପ୍ରତ୍ୟେକଙ୍କୁ ଦୀକ୍ଷା ପ୍ରଦାନ କରିଛନ୍ତି । ଖୁବ୍ କ୍ୱଚିତ ଲୋକଙ୍କୁ ଦୀକ୍ଷା ଦେବାକୁ ମନା କରିଛନ୍ତି । ଏହାର କାରଣ ହୁଏତ ସେମାନେ ମା'ଙ୍କର ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରି ନାହାଁନ୍ତି । ଥରେ ଜଣେ ଯୁବକ ମା'ଙ୍କଠାରୁ ଦୀକ୍ଷାନେବା ପାଇଁ ବାରମ୍ବାର ଜୟରାମବାଟୀ ଯାଇଛନ୍ତି କିନ୍ତୁ ଶ୍ରୀମା'ଙ୍କର ସ୍ୱାସ୍ଥ୍ୟ ଖରାପ ଥିବା ହେତୁ ତାଙ୍କର ସାକ୍ଷାତ୍ ପାଇ ନାହାଁନ୍ତି । ସେ ପରେ ଅଭିଯୋଗ କରି ପତ୍ର ଲେଖିଥିଲେ, 'ମୋତେ ଆଉ ମନା କରନ୍ତୁ ନାହିଁ । ମୁଁ ବହୁ କଷ୍ଟରେ ସେଠାକୁ ଯାଇଥିଲି । ମୁଁ ଜାଣିବାକୁ ଚାହୁଁଛି ଯଦି ମୁଁ ଆସେ ତେବେ ମୋତେ ଦୀକ୍ଷା ମିଳିବ କି ନାହିଁ ?' ଏହାର ଉତ୍ତରରେ ଶ୍ରୀମା' କହିଛନ୍ତି, 'ମୋର ଦେହ ଭଲ ନଥିଲେ ଯେ କେହି ବ୍ୟକ୍ତି ଫେରିଯିବା ଉଚିତ୍ । ମୁଁ ଭଲ ଥିଲେ ମଧ୍ୟ ଲୋକମାନେ ଦୀକ୍ଷା ନେବାକୁ ଆସିବାକୁ ମୁଁ ନିମନ୍ତ୍ରଣ କରି ପାରିବି ନାହିଁ ।"

'ମନୁଷ୍ୟ ନିଜର ଅତୀତ କର୍ମ ଯୋଗୁଁ ସୁବିଧା ଓ ସୁଯୋଗ ଲାଭ କରେ । ଜଣେ ବ୍ୟକ୍ତି ଏଠାକୁ ବହୁଥର ଆସୁଛି ଅଥଚ ମୋତେ ଦେଖିବାର ସୁଯୋଗ ପାଇ ନାହିଁ । କାରଣ ମୁଁ କେବେ ରୋଗରେ ପଡ଼ିଛି କିମ୍ବା ଅନ୍ୟ କୌଣସି କାରଣ ଥାଇପାରେ । ଏହା ତାହାର ମନ୍ଦଭାଗ୍ୟ । ମୁଁ କ'ଣ କରିପାରିବି ? ତୁମେ ହୁଏତ କହିପାର ଯେ ସେ ବହୁତ ଖର୍ଚ୍ଚାନ୍ତ ହେଉଛି ଏବଂ ସମସ୍ତଙ୍କ ପାଖରେ ଅର୍ଥ ନଥାଏ । କିନ୍ତୁ ଜଣେ ଗୁରୁ ଜଣେ ଶିଷ୍ୟକୁ ଦୀକ୍ଷା ନ ଦେଇ ବହୁଥର ଫେରେଇ ଦେଇପାରେ । ଯେ ଗୁରୁଙ୍କର ଆଶୀର୍ବାଦ ପାଇବାକୁ ବାସ୍ତବରେ ବ୍ୟାକୁଳ, ସେ ଏପରିକି ଭିକ୍ଷା ମାଗି ତାଙ୍କ ନିକଟକୁ ଆସିବ । ଏହା ହିଁ ସତ୍ୟ । ଯେ ଏହି ସଂସାର ସାଗରକୁ ଅତିକ୍ରମ କରିବାକୁ ବ୍ୟସ୍ତ, ସେ ତାହାର ବନ୍ଧନକୁ ଭାଙ୍ଗିଦେବ । କେହି ତାକୁ ବାନ୍ଧିକରି ରୋକି ପାରିବ ନାହିଁ । ଆର୍ଥିକ ଅସୁବିଧା, ଉତ୍ତରକୁ ଅପେକ୍ଷା, ଆଶା ପୂର୍ଣ୍ଣ ନହୋଇ ଫେରିଯିବାର ଭୟ ଏହା କେବଳ ଦୋଷ ଛଡ଼ାଇବା କାର୍ଯ୍ୟ ।'

ଏପରିକି କେହି କେହି ନିଜର ଭୟ ହେତୁ ଶ୍ରୀମା'ଙ୍କ ଠାରୁ ଦୀକ୍ଷା ପାଇବାରୁ ବଞ୍ଚିତ ହୋଇଛନ୍ତି । ଉଦ୍‌ବୋଧନ ଅଫିସରେ କାର୍ଯ୍ୟକରୁଥିବା ଶ୍ରୀ ଚନ୍ଦ୍ରମୋହନ ଦତ୍ତ ଶ୍ରୀମା'ଙ୍କ ନିକଟରେ ଥାଇ ମଧ୍ୟ ଦୀକ୍ଷା ପାଇ ପାରିନାହାନ୍ତି । ଦୀକ୍ଷା ପାଇବାକୁ ଆଗ୍ରହ ପ୍ରକାଶ କରି ଶ୍ରୀମା'ଙ୍କ ନିକଟକୁ ଯାଇ ପ୍ରସାଦ ମାଗିଛନ୍ତି ।

ଶ୍ରୀମା'ଙ୍କ ନିକଟରେ ସାର୍ବଜନୀନ ମାତୃତ୍ୱର ପ୍ରେମ ସମସ୍ତଙ୍କ ନିକଟକୁ ପ୍ରସାରିତ ହୋଇଛି । ସେ ଭକ୍ତମାନଙ୍କୁ ନିଜ ହାତରେ ରୋଷେଇ କରି ଖାଇବାକୁ ଦେଇଛନ୍ତି, ସେମାନଙ୍କର ଅଇଁଠା ବାସନ ଧୋଇଛନ୍ତି । ସେମାନଙ୍କର ବିଛଣାପତ୍ର ସଫା ମଧ୍ୟ କରିଛନ୍ତି । କେହି କେହି ଅଭିଯୋଗ କଲେ ସେ କହିଛନ୍ତି, 'ମୁଁ ତୁମ

ପାଇଁ କ'ଣ କରିଛି ଯେ ? ମୁଁ କ'ଣ ତୁମର ମା' ନୁହେଁ ? ସନ୍ତାନର ମଳମୂତ୍ର ନିଜ ହାତରେ ମା' ସଫା କରେ ନାହିଁକି ?' କେହି ଭକ୍ତ ରୋଗରେ ପଡ଼ିଲେ ମା' ତାଙ୍କର ସେବା ଶୁଶ୍ରୂଷା ମଧ୍ୟ କରିଛନ୍ତି ।

ଥରେ ଜଣେ ଶିଷ୍ୟ କୌଣସି କାର୍ଯ୍ୟ ପାଇଁ ନିକଟସ୍ଥ ଗ୍ରାମକୁ ଯାଇଥାନ୍ତି । ତାଙ୍କର ଫେରିବା ବିଳମ୍ବ ହୁଏ । ପ୍ରାୟ ଅପରାହ୍ନରେ ଲେଉଟନ୍ତି । ଯେହେତୁ ସେ ତାଙ୍କର ମଧ୍ୟାହ୍ନ ଭୋଜନ କରି ନଥାନ୍ତି, ଶ୍ରୀମା' ତାଙ୍କ ପାଇଁ ନିଜେ ନ ଖାଇ ଅପେକ୍ଷା କରିଥାନ୍ତି । ଶିଷ୍ୟ ଶ୍ରୀମା'ଙ୍କର ଏତାଦୃଶ କାର୍ଯ୍ୟରେ ଦୁଃଖିତ ହୋଇ ମା'ଙ୍କ ଦେହ ଭଲ ନାହିଁ; ଏପରି ଅପେକ୍ଷା ତାଙ୍କ ସ୍ୱାସ୍ଥ୍ୟ ପ୍ରତି ଖରାପ ବୋଲି କହିବାରୁ ଶ୍ରୀମା' ଉତ୍ତର ଦେଲେ, 'ତୁମେ ନଖାଇ ଓପାସରେ ଅଛ; ମୁଁ କିପରି ଖାଇଥାନ୍ତି ?' ଶିଷ୍ୟ ଶ୍ରୀମା'ଙ୍କର ଏପରି ଅହେତୁକ ପ୍ରେମପୂର୍ଣ୍ଣ ଶ୍ରଦ୍ଧା ନିଜ ଜନ୍ମିତ ମା'ଙ୍କ ଠାରୁ ବି ମିଳି ନଥାନ୍ତା ବୋଲି ଭାବିଛନ୍ତି । ବହୁ ସମୟରେ ଶ୍ରୀମା'ଙ୍କୁ ଭକ୍ତମାନଙ୍କର ଅତ୍ୟଧିକ କଠୋର ବ୍ୟବହାର ମଧ୍ୟ ସହିବାକୁ ପଡ଼ିଛି । ଦିନେ ଉଦ୍‌ବୋଧନ ଅଫିସ୍‌ଠାରେ ଶ୍ରୀମା' ନିଜର ଦୈନନ୍ଦିନ ପୂଜା ଶେଷ କରିଛନ୍ତି, ଜଣେ ଭକ୍ତ ହାତରେ କିଛି ଫୁଲ ଧରି ଆସି ପହଞ୍ଚିଲେ ଶ୍ରୀମା'ଙ୍କୁ ସାକ୍ଷାତ୍ କରିବାପାଇଁ । ଶ୍ରୀମା' ଏହି ଆଗନ୍ତୁକଙ୍କୁ ଦେଖି ଦେହ ଘୋଡ଼େଇ ହୋଇ ନିଜ ବିଛଣା ଉପରେ ବସି ପଡ଼ିଲେ । ଗୋଡ଼ ତାଙ୍କର ତଳକୁ ଲମ୍ବିଥାଏ । ଭକ୍ତ ତାଙ୍କ ପାଦ ନିକଟରେ ପୁଷ୍ପ ସମର୍ପଣ କରି ପ୍ରଣାମ କଲେ । ତା'ପରେ ସେ ତାଙ୍କ ସମ୍ମୁଖରେ ବସି ପ୍ରାଣାୟମ କରିବାକୁ ଲାଗିଲେ । ଆଶ୍ରମର ଅନ୍ୟ ମାନେ କାର୍ଯ୍ୟବ୍ୟସ୍ତ ଥିବାରୁ, ସେହି ସମୟରେ ଶ୍ରୀମା'ଙ୍କ ନିକଟରେ କେହି ନଥିଲେ । ଭକ୍ତ ମା'ଙ୍କ ସମ୍ମୁଖରେ ବସି ପ୍ରାଣାୟାମ କରୁଥାନ୍ତି । ଶ୍ରୀମା' ଅଶ୍ୱସ୍ତି ଅନୁଭବ କରୁଥାନ୍ତି । ଏହି ସମୟରେ ସେଠାରେ ଗୋଲାପ ମା' ଆସି ପହଞ୍ଚିଲେ । ସେ ସମସ୍ତ ଘଟଣା ତତ୍‌କ୍ଷଣାତ୍ ବୁଝିପାରି ସେହି ଲୋକଟିକୁ ଭର୍ତ୍ସନା କରି କହିଲେ, 'ତୁମେ କ'ଣ ଭାବୁଛ ଯେ ତୁମେ ଏକ କାଷ୍ଠ ପ୍ରତିମା ସମ୍ମୁଖରେ ବସିଛ ଏବଂ ପ୍ରାଣାୟାମ କରି ସେଥିରେ ଚେତନା ଜାଗ୍ରତ କରିବ ? ତୁମର କ'ଣ କିଛି ବିଚାର ନାହିଁ ? ମା' ଅସହ୍ୟ ଗରମ ଅନୁଭବ କରୁଛନ୍ତି ତାହା ତୁମେ କ'ଣ ଅନୁଭବ କରି ପାରୁ ନାହଁ ?'

ଆଉ ଦିନକର ଘଟଣା । ଜଣେ ଭକ୍ତ ଶ୍ରୀମା'ଙ୍କୁ ପ୍ରଣାମ କରିବାବେଳେ ତାଙ୍କ ପାଦର ବୁଢ଼ା ଆଙ୍ଗୁଠି ଉପରେ ମୁଣ୍ଡଟିକୁ ଲଦିଦେଲେ । ଏହା ତାଙ୍କୁ କଷ୍ଟ ଦେଲା ଏବଂ ସେ ଯନ୍ତ୍ରଣାରେ ଚିତ୍କାର କରି ଉଠିଲେ । ଯେଉଁମାନେ ତାଙ୍କ ନିକଟରେ ଥିଲେ, ସେମାନେ ସେହି ଭକ୍ତକୁ ଏପରି କାହିଁକି କଲ ବୋଲି ପଚାରିଲେ । ସେ ଉତ୍ତରରେ କହିଲେ ଯେ ସେ ଉଦ୍ଦେଶ୍ୟମୂଳକ ଭାବରେ ଏପରି କରିଛନ୍ତି ଫଳରେ ଯନ୍ତ୍ରଣା ହେତୁ

ଶ୍ରୀମା' ତାଙ୍କୁ ମନେ ରଖିବେ । ଥରେ ଜଣେ ଭକ୍ତ ତାଙ୍କ ଆଙ୍ଗୁଠିକୁ କାମୁଡି ପକାଇଲେ । ଅନ୍ୟ ଜଣେ ଭକ୍ତ ମା'ଙ୍କର ଗୋଡ଼କୁ ଟାଣି ତାଙ୍କ ଛାତି ପାଖରେ ରଖି ଆଶୀର୍ବାଦ ପାଇବାକୁ ଚାହିଁଲେ ।

ଭକ୍ତମାନଙ୍କର ଏହିପରି ପାଗଳ ବ୍ୟବହାର ପାଇଁ କେତେ ଧୈର୍ଯ୍ୟ ଓ କ୍ଷମା ଦରକାର ତାହା ସହଜରେ ଅନୁମାନ କରିହୁଏ । ଶ୍ରୀମା'ଙ୍କର ସେମାନଙ୍କଠାରୁ କିଛି ପାଇବାର ନଥାଏ । କିମ୍ବା ସେମାନଙ୍କର ଅଗାଧ ପ୍ରଶଂସା ତାଙ୍କ ମନ ଉପରେ କିଛି ପ୍ରଭାବ ପକାଏ ନାହିଁ । କାରଣ ସେ ଠାକୁର ଶ୍ରୀରାମକୃଷ୍ଣଙ୍କର ପ୍ରକୃତ ଦାୟାଦ ଯାହାଙ୍କ ପାଇଁ ଅର୍ଥ, ଯଶ ଓ ପ୍ରଶଂସାର କିଛି ମୂଲ୍ୟ ନଥିଲା । ଜଣେ ଆଧ୍ୟାତ୍ମିକ ଗୁରୁଭାବରେ ତାଙ୍କ ନିକଟରେ ଥିଲା କେବଳ ଅନାବିଳ ସ୍ନେହ ଯାହାକୁ ସେ ନିର୍ବିଚାରରେ ବିତରଣ କରି ଚାଲିଥିଲେ ।

ଶ୍ରୀମା' କିପରି ଭାବରେ ଭକ୍ତମାନଙ୍କୁ ଆଧ୍ୟାତ୍ମିକ ନିର୍ଦ୍ଦେଶ ଦେଇ ପରିଚାଳିତ କରୁଥିଲେ, ଏହା ବିଶେଷ ପ୍ରଣିଧାନ ଯୋଗ୍ୟ । ତାଙ୍କର ସମସ୍ତଙ୍କ ପ୍ରତି ଥିଲା ସମଦୃଷ୍ଟି । ସେ କାହା ଉପରେ ଶ୍ରୀରାମକୃଷ୍ଣଙ୍କ ଆଦର୍ଶକୁ ଥୋପି ଦେଉ ନଥିଲେ । ଜଣେ ଭକ୍ତକୁ ମନ୍ତ୍ରଦୀକ୍ଷା ଦେବା ପୂର୍ବରୁ ଭକ୍ତଙ୍କ ପରିବାରର ଧାର୍ମିକ ପରଂପରା ସଂପର୍କରେ ପଚାରି ବୁଝୁଥିଲେ ।

ସେମାନେ ବୈଷ୍ଣବ କି ଶାକ୍ତ କିମ୍ବା ଶୈବ ଏହା ପଚାରିବା ବ୍ୟତୀତ ତାଙ୍କର ଆଧ୍ୟାତ୍ମିକ ଆଗ୍ରହ କେଉଁଥି ପାଇଁ ରହିଛି ତାହା ମଧ୍ୟ ପଚାରି ବୁଝୁଥିଲେ । କେହି କେହି ବଂଶ ପରଂପରା ବା ନିଜର ନିର୍ଦ୍ଦିଷ୍ଟ କୌଣସି ଦେବଦେବୀ ନଥିବାର ମଧ୍ୟ ଉଲ୍ଲେଖ କରୁଥିଲେ ଏବଂ ତାଙ୍କ ଉପରେ ସମସ୍ତ ଭାର ଅର୍ପଣ କରୁଥିଲେ । ସେ ନିଜେ ଧ୍ୟାନସ୍ଥ ହୋଇ ଭକ୍ତର ଆବଶ୍ୟକତା ସଂପର୍କରେ ଜ୍ଞାତ ହେଉଥିଲେ ଏବଂ ସେହି ଅନୁସାରେ ନୂତନ ମନ୍ତ୍ର ମଧ୍ୟ ଦେଉଥିଲେ । ତେଣୁ ସେ ମନ୍ତ୍ରଦୀକ୍ଷା ଦେବାବେଳେ କୌଣସି ଚିରାଚରିତ ପ୍ରଥା ଅବଲମ୍ବନ କରୁନଥିଲେ । ସେ ସଂପୃକ୍ତ ବ୍ୟକ୍ତି ହୃଦୟର ଆଧ୍ୟାତ୍ମିକ ପ୍ରବୃତ୍ତିକୁ ଲକ୍ଷ୍ୟ କରି ଦୀକ୍ଷା ଦେଉଥିଲେ । ଏହାକୁ ଲକ୍ଷ୍ୟ କରି ସେ କହିଛନ୍ତି, 'ଠାକୁର ଏହି ପାର୍ଥିମାନଙ୍କୁ ପଠାଉଛନ୍ତି । ମୁଁ କେହି ନୁହେଁ । ଠାକୁର ସେମାନଙ୍କୁ କୃପାରେ ଆଶୀର୍ବାଦ କରୁଛନ୍ତି । ମୁଁ କେବଳ ତାଙ୍କର ଯନ୍ତ୍ର ।' ଏପରିକି ଦାକ୍ଷିଣାତ୍ୟରେ ଥିବା ସମୟରେ ସେ ଭକ୍ତମାନଙ୍କର ଭାଷା ନ ବୁଝି ମଧ୍ୟ ସେମାନଙ୍କର ମନଲାଖି ମନ୍ତ୍ର ଦେଉଥିଲେ । ସେ କିପରି ମନ୍ତ୍ର ଦେବାର ପ୍ରେରଣା ପାଆନ୍ତି, ତାହା ଉଲ୍ଲେଖ କରି କହିଛନ୍ତି, "ମୁଁ ଲୋକମାନଙ୍କୁ ମନ୍ତ୍ର ଦେବାକୁ ଯିବା ମାତ୍ରେ ତାହା ଆପେ ଆପେ ମୋ ମନକୁ ଚାଲିଆସେ । କେତେକ କ୍ଷେତ୍ରରେ କିଛି ଆସେ ନାହିଁ ଯେପରିକି

ମୁଁ କିଛି ଜାଣି ନାହିଁ । ମୁଁ ଚୁପ୍‌ଚାପ୍ ବସି ରହେ । ବହୁ ସମୟ ଏକାଗ୍ର ହୋଇ ବସିବା ପରେ ମୋତେ ମନ୍ତ୍ର ଦୃଶ୍ୟ ହୁଏ । ଯେଉଁମାନେ ଉତ୍ତମ ଆଧାର, ମନ୍ତ୍ର ତତ୍‌କ୍ଷଣାତ୍ ଆସେ ।"

କେବେକେବେ କେହି ଅନ୍ୟ ଗୁରୁଠାରୁ ମନ୍ତ୍ର ନେଇ ମଧ ତାଙ୍କଠାରୁ ମନ୍ତ୍ର ନେବାକୁ ଆସନ୍ତି । ସେ ଏପରି ଦେବାକୁ ମନା କଲେ ସୁଦ୍ଧା କେହି କେହି ଅତ୍ୟଧିକ ଆଗ୍ରହ ପ୍ରକାଶ କଲେ ମନ୍ତ୍ର ଦେଇଥାନ୍ତି । ଏପରି ଘଟଣାକୁ ଉଲ୍ଲେଖ କରି ସେ କହନ୍ତି, 'ମୁଁ କାହାରି ଆଖିରେ ଲୁହ ଦେଖିପାରେ ନାହିଁ । ମୁଁ ଠାକୁରଙ୍କୁ ପ୍ରାର୍ଥନା କରେ ଯେ ସେମାନଙ୍କର ବିଶ୍ୱାସ ଦୃଢ଼ ହେଉ ଏବଂ ଠାକୁରଙ୍କ ନିର୍ଦ୍ଦେଶରେ ମୁଁ ପୂର୍ବରୁ ନେଇଥିବା ମନ୍ତ୍ର ସହିତ ଅନ୍ୟ ମନ୍ତ୍ର ଦେଇ ଦୀକ୍ଷା ଦିଏ । ଏହି ଅଧିକା ମନ୍ତ୍ର ତାଙ୍କୁ ଅଧିକ ଶକ୍ତି ଓ ପ୍ରେରଣା ଦେଇ ଈଶ୍ୱରଙ୍କ ଉପରେ ବିଶ୍ୱାସକୁ ବଢ଼ାଏ ।' କିନ୍ତୁ ଏପରି ଦୀକ୍ଷା ଦେବା ବେଳେ ସେ ପରିବାରର ଗୁରୁଙ୍କର ପ୍ରାପ୍ୟ ଯେପରି ସେମାନେ ଦିଅନ୍ତି ତାହା ଦେବାକୁ ସେମାନଙ୍କୁ ନିର୍ଦ୍ଦେଶ ଦେଇଥାନ୍ତି ।

କେହି କେହି ମନ୍ତ୍ର ଭୁଲି ଯାଇ ଶ୍ରୀମା'ଙ୍କ ପାଖକୁ ମଧ ଆସିଥାନ୍ତି ଏବଂ ଶ୍ରୀମା' ତାଙ୍କର ମନ୍ତ୍ରକୁ ମନେ ପକେଇ ଦିଅନ୍ତି । ମନକୁ ଅନ୍ତସ୍ଥ କରି ଭାବିବା ସମୟରେ ଶ୍ରୀମା' ଶିଷ୍ୟର ଆଧ୍ୟାତ୍ମିକ ରୂପ ଦେଖିବାକୁ ପାଇଥାନ୍ତି । ଏହିପରି ଏକ ଘଟଣା ସ୍ୱାମୀ ନିଖିଳାନନ୍ଦ ମହାରାଜାଙ୍କ ଜୀବନରେ ଦେଖିବାକୁ ମିଳେ । ସେ ଶ୍ରୀମା'ଙ୍କ ଠାରୁ ଛାତ୍ର ଅବସ୍ଥାରେ ଦୀକ୍ଷା ନେଇଥିଲେ ଏବଂ ତାଙ୍କର ସନ୍ନ୍ୟାସୀ ହେବାର ବିଚାର ନଥିଲା । ଦୀକ୍ଷା ନେବା ପରେ ନିଜର ସକ୍ଷମ ଅନୁସାରେ ଶିଷ୍ୟଙ୍କୁ ଗୁରୁ ସମ୍ମୁଖରେ ଫଳ, ପୁଷ୍ପ, ଲୁଗା ଓ ଟଙ୍କା ରଖି ପ୍ରଣାମ କରିବାକୁ ହୋଇଥାଏ । ଏ କ୍ଷେତ୍ରରେ ସେ ମଧ ଶ୍ରୀମା'ଙ୍କ ସମ୍ମୁଖରେ ଫଳ, ପୁଷ୍ପ ଓ ଟଙ୍କାଟିଏ ରଖିଲେ । ଶ୍ରୀମା' ଏହା ଦେଖି କହିଲେ ଯେ ସେ ସନ୍ନ୍ୟାସୀଙ୍କଠାରୁ ଗୁରୁ ଦକ୍ଷିଣା ସ୍ୱରୂପ କୌଣସି ଅର୍ଥ ଗ୍ରହଣ କରନ୍ତି ନାହିଁ । ସେ କହିଲେ, ସେ ସନ୍ନ୍ୟାସୀ ନୁହଁନ୍ତି, କେବଳ ଜଣେ ଛାତ୍ର । ସାଧାରଣ ଜୀବନ କଟାଉଛନ୍ତି । ତଥାପି ସେ ଅର୍ଥ ଗ୍ରହଣ କଲେ ନାହିଁ । ଏପରି ତିନିଥର ସେ ନିଜକୁ ଛାତ୍ର ବୋଲି କହିଲେ ସୁଦ୍ଧା ଶ୍ରୀମା' ତାହାକୁ ଗ୍ରହଣ କଲେ ନାହିଁ । କିଛିବର୍ଷ ପରେ ସେ ରାମକୃଷ୍ଣ ସଂଘର ସନ୍ନ୍ୟାସୀ ହେଲେ ଯାହା ଶ୍ରୀମା' ବହୁ ପୂର୍ବରୁ ଦୀକ୍ଷା ଦେବା ବେଳେ ଜାଣି ପାରିଥିଲେ । ସ୍ୱାମୀ ନିଖିଳାନନ୍ଦ ନିଜର ଭକ୍ତି ଅର୍ପଣରେ ଏକଥା କହିଛନ୍ତି ।

ଅନ୍ୟ ଏକ ଘଟଣା ସ୍ୱାମୀ ବିରଜାନନ୍ଦଙ୍କ ଜୀବନରେ ଦେଖାଯାଏ । ସେ ଶ୍ରୀମା'ଙ୍କ ଠାରୁ ଦୀକ୍ଷା ନେବା ପୂର୍ବରୁ ଗୋଟିଏ ମନ୍ତ୍ରକୁ ଜପକରି ଆନନ୍ଦ ଓ ଶାନ୍ତି ଲାଭ କରୁଥିଲେ । ସେ ଦେଖିଲେ ଯେ ଶ୍ରୀମା' ଯେଉଁ ମନ୍ତ୍ର ଦେଲେ, ତାହା ସମ୍ପୂର୍ଣ୍ଣ

ଭିନ୍ନ । ସେ ନିଜର ମନୋଭାବକୁ ମା'ଙ୍କ ନିକଟରେ ପ୍ରକାଶ କଲେ । ଏହା ଶୁଣି ଶ୍ରୀମା' କହିଲେ, 'ଏହା ତାହାଠାରୁ ଭଲ ।' ମା'ଙ୍କର ଏହି କେତୋଟି ଶବ୍ଦ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଲା । ପୂର୍ବ ଅପେକ୍ଷା ତାଙ୍କର ଆଧ୍ୟାତ୍ମିକ ସାଧନାରେ ଅଭିବୃଦ୍ଧି ହେଲା । ଶ୍ରୀମା' ଦେଇଥିବା ମନ୍ତ୍ରକୁ ଗ୍ରହଣ କରିବାର ଦ୍ୱିଧା ତାଙ୍କ ମନରୁ ସମ୍ପୂର୍ଣ୍ଣ ଲୋପ ପାଇଲା । ସେ ଅନୁଭବ କଲେ ତାଙ୍କର ନୂତନ ଆଦର୍ଶ ଓ ଆଧ୍ୟାତ୍ମିକ ଅତୀତ ମଧ୍ୟରେ ସମ୍ପୂର୍ଣ୍ଣ ସମନ୍ୱୟ ରହିଛି । ତାଙ୍କର ଏହି ଅନୁଭବ ତାଙ୍କୁ ପ୍ରକୃତ ଗୁରୁଙ୍କର ଦକ୍ଷତା ସଂପର୍କରେ ସଚେତନ କରାଇଲା ।

ରେଙ୍ଗୁନର ଶ୍ରୀ ଶ୍ୟାମାଚରଣ ଚକ୍ରବର୍ତ୍ତୀ ସ୍ୱାମୀ ବିବେକାନନ୍ଦଙ୍କର ରାଜଯୋଗ ଅଧ୍ୟୟନ କରି ଦୈନିକ ତିନିଘଣ୍ଟା ପ୍ରାଣାୟାମ ଅଭ୍ୟାସ କରିବାକୁ ଲାଗିଲେ । ଏହା ଫଳରେ ତାଙ୍କ କାନରେ ଏପରି ଶବ୍ଦ ହେଲା ଯେ ସେ ଏହାକୁ ସମ୍ଭାଳି ପାରିଲେ ନାହିଁ । ସମସ୍ତ ପ୍ରକାର ଚିକିତ୍ସା ବିଫଳ ହେବାରୁ ସେ କଲିକତା ଆସି ମା'ଙ୍କୁ ସାକ୍ଷାତ୍ କରିବାକୁ ଚାହିଁଲେ । ଶ୍ରୀମା' ଥିଲେ ଜୟରାମବାଟୀରେ । ଶ୍ୟାମାଚରଣ ଜୟରାମବାଟୀ ଗଲେ ଏବଂ ସେହି ପରିବେଶରେ ତାଙ୍କ କାନରେ ହେଉଥିବା ଅସହ୍ୟ ଶବ୍ଦରୁ ମୁକ୍ତି ପାଇଲେ । ସେ ଶ୍ରୀମା'ଙ୍କୁ ପ୍ରାଣାୟାମ ଏବଂ ଯୋଗଶିକ୍ଷା କରିବାର ଇଚ୍ଛା ଥିବାର କହିବାରୁ ଶ୍ରୀମା' ତାଙ୍କୁ ଶରୀର ଓ ମନରେ କେଉଁ ଶକ୍ତି ସଞ୍ଚୟ କରିଛ ଯେ ଏପରି ଅଭ୍ୟାସ କରିପାରିବ ବୋଲି ପଚାରିଲେ । ଶ୍ରୀମା' କହିଲେ, 'ଯାହା କରିବାର କଥା ମୁଁ ତାହା ତୁମକୁ ବତାଇଦେବି ।' ସେ ତାଙ୍କୁ ମନ୍ତ୍ର ଦୀକ୍ଷା ଦେଲେ ଏବଂ ପ୍ରତ୍ୟେକ ଦିନ ଦୁଇଥର ଜପ କରିବାକୁ କହିଲେ । ଏଥିରେ ସନ୍ତୁଷ୍ଟ ନ ହୋଇ ସେ ଜପ ତିନିଥର କରିବାକୁ ଏବଂ ଆଉ କିଛି ଅଭ୍ୟାସ କରିବାକୁ ମା'ଙ୍କୁ କହିବାରୁ ମା' ତାଙ୍କୁ ଦୁଇଥର ଜପ କରିବାକୁ ନିର୍ଦ୍ଦେଶ ଦେଇ, 'ଏତିକି ତୁମ ପାଇଁ ଆବଶ୍ୟକ' ବୋଲି କହିଲେ । କାରଣ ଶ୍ରୀମା' ପ୍ରତ୍ୟେକଙ୍କର ଶକ୍ତି ଓ ସାମର୍ଥ୍ୟ ସଂପର୍କରେ ଅବଗତ ଥିଲେ । ଯଦିଓ ଶ୍ରୀମା' କାହାରି ଉପରେ ଶ୍ରୀରାମକୃଷ୍ଣଙ୍କର ଆଦର୍ଶକୁ ଲଦି ଦେଉ ନଥିଲେ, କିନ୍ତୁ ଠାକୁର ଶ୍ରୀରାମକୃଷ୍ଣଙ୍କର ଆଧ୍ୟାତ୍ମିକ ଆଦର୍ଶକୁ ଗ୍ରହଣ କଲେ ଆଧ୍ୟାତ୍ମିକ ଉନ୍ନତି ହେବ ବୋଲି ମତ ଦେଉଥିଲେ । କାରଣ ଠାକୁର ଶ୍ରୀରାମକୃଷ୍ଣଙ୍କର କଷ୍ଟଲବ୍ଧ ସାଧନାର ସିଦ୍ଧି ତାଙ୍କ ନିଜ ପାଇଁ ନଥିଲା । ଏହା ଥିଲା ସମଗ୍ର ଜଗତର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ।

ଶ୍ରୀମା' କିପରି ଭାବରେ ଭକ୍ତଙ୍କୁ ସୁରକ୍ଷା ଦେଇ ସେମାନଙ୍କର ଆଧ୍ୟାତ୍ମିକ ଉନ୍ନତିର ସହାୟକ ହୋଇଥିଲେ ତାହା ଗିରିଶ ଚନ୍ଦ୍ର ଘୋଷଙ୍କ ଉଦାହରଣରୁ ଜଣାପଡ଼େ । ଗିରିଶ ଥିଲେ ମହାନ୍ ନାଟ୍ୟକାର ଓ ଶିଳ୍ପୀ । ସେ ଠାକୁର ଶ୍ରୀରାମକୃଷ୍ଣଙ୍କର ଗୃହୀଭକ୍ତ ମାନଙ୍କ ମଧ୍ୟରେ ଥିଲେ ଅନନ୍ୟ । ସେ ମଧ୍ୟ ଅନ୍ୟମାନଙ୍କ ପରି ଶ୍ରୀମା'ଙ୍କର ମହାସମାଧିର

କିଛି ବର୍ଷ ପୂର୍ବରୁ ଶ୍ରୀମା'ଙ୍କର ଦର୍ଶନ କରି ସାନ୍ତ୍ୱନା ପାଇବାକୁ ଜୟରାମବାଟୀ ଗଲେ । ସେତେବେଳେ ତାଙ୍କର ତିନି ବର୍ଷ ପୁତ୍ରର ମୃତ୍ୟୁ ହୋଇଥାଏ ।

ଠାକୁରଙ୍କ ମହାସମାଧି ପରେ ୧୮୮୮ ମସିହାରେ ଗିରିଶଙ୍କର ଏହି ପୁତ୍ର ଜନ୍ମ ଲାଭ କରିଥାଏ । ଠାକୁରଙ୍କ ଅପାର କରୁଣାରୁ ଗିରିଶ ଏହି ପୁତ୍ର ଲାଭ କରିଥାନ୍ତି ବୋଲି ତାଙ୍କର ବିଶ୍ୱାସ ଥାଏ । ଏହି ପିଲାଟିର ଶ୍ରୀମା'ଙ୍କ ପ୍ରତି ଅହେତୁକ ସ୍ନେହ ଥାଏ, ମା'ଙ୍କର ମଧ୍ୟ ତା' ପ୍ରତି ଠିକ୍ ସେହିପରି ସ୍ନେହ ଥାଏ । ସେ ଯେତେବେଳେ ତାକୁ ଦେଖନ୍ତି, ତାଙ୍କ କୋଳରେ ବସାଇ ଗେଲ କରନ୍ତି । ୧୮୯୦ ମସିହାରେ ଶ୍ରୀମା' ସୌରୀନ୍ଦ୍ର ଠାକୁରଙ୍କର ଘରେ ଥିବାବେଳେ ଗିରିଶ ସେଠାକୁ ଏହି ପିଲାଟିକୁ ନେଇ ଯାଇଥିଲେ । ପିଲାଟି କଥା କହିବାକୁ ଶିଖି ନଥାଏ କିନ୍ତୁ ମା'ଙ୍କୁ ଦେଖିବାର ଆଗ୍ରହ ରଖିଥାଏ । ତାଙ୍କୁ ମା' ରହୁଥିବା ଉପର ତାଲାକୁ ନିଆଗଲା ଓ ସେ ତାଙ୍କ ସମ୍ମୁଖରେ ପ୍ରଣାମ କଲା । ପିଲାଟି ତଳକୁ ଆସି ଗିରିଶଙ୍କୁ ଉପରକୁ ଯିବାକୁ ଅଳିକଲା । ଶ୍ରୀମାଙ୍କ ସମ୍ମୁଖକୁ ଗିରିଶ ଆଦୌ ଯିବାକୁ ଚାହୁଁ ନଥିଲେ କିନ୍ତୁ ପିଲାଟିର ଜିଦ୍ ଯୋଗୁଁ ଉପରକୁ ଯାଇ ଶ୍ରୀମା'ଙ୍କ ପାଦତଳେ ପଡ଼ି କହିଲେ, 'ମା' ! ଏହି ପିଲାଟି ଯୋଗୁଁ ମୁଁ ଆଜି ଆପଣଙ୍କର ପାଦଦର୍ଶନ କଲି ।' ସମଗ୍ର ଶରୀର ତାଙ୍କର ଥରୁଥିଲା । ସେ ଶ୍ରୀମା'ଙ୍କର ମୁଖ ଦର୍ଶନ କରି ନଥିଲେ । ଏହି ପିଲାଟିର ମୃତ୍ୟୁ ହେବା ଫଳରେ ସ୍ୱାମୀ ନିରଂଜନାନନ୍ଦଙ୍କର ନିର୍ଦ୍ଦେଶରେ ଗିରିଶ ମା'ଙ୍କୁ ଦର୍ଶନ କରିବାକୁ ଜୟରାମବାଟୀ ଯାଇଥିଲେ ।

ଜୟରାମବାଟୀରେ ମା'ଙ୍କୁ ଦର୍ଶନ କରି ପ୍ରଣାମ କଲେ । ସେ ମା'ଙ୍କୁ ପଲକ ମାତ୍ରକେ ଦେଖି ଚାଲିଆସି ବାହାର ଘରେ ଚୁପ୍‌ଚାପ୍ ବସି ରହିଲେ । ସ୍ୱାମୀ ନିରଞ୍ଜନାନନ୍ଦ ତାଙ୍କୁ ତାଙ୍କର ଏପରି ନିରବତାର କାରଣ ପଚାରିବାରୁ ଗିରିଶ କହିଲେ ସେ ଶ୍ରୀମା'ଙ୍କୁ ସ୍ୱପ୍ନରେ ଦେଖିଥିଲେ ଯେତେବେଳେ ତାଙ୍କର ବୟସ ଥିଲା ଉଣେଇଶବର୍ଷ । ଏହା ସତ୍ୟ କି ନୁହେଁ ସେ ଶ୍ରୀମା'ଙ୍କ ଠାରୁ ଜାଣିବାକୁ ଚାହିଁଲେ । ଶ୍ରୀମା' ଏହା ସତ୍ୟ ବୋଲି କହିବାରୁ ଗିରିଶ ସେହି ଘଟଣାକୁ ଅନ୍ୟମାନଙ୍କ ନିକଟରେ ବର୍ଣ୍ଣନା କରିଥିଲେ । ଉଣେଶି ବର୍ଷ ବୟସରେ ଗିରିଶ ଭୟଙ୍କର ରୋଗରେ ପୀଡ଼ିତ ଥିଲେ । ଡାକ୍ତରମାନେ ତାଙ୍କର ବଞ୍ଚିବାର ଆଶା ଛାଡ଼ି ଦେଇଥିଲେ । ସେହି ଅବସ୍ଥାରେ ଦିନେ ରାତିରେ ସେ ସ୍ୱପ୍ନରେ ଜଣେ ଦେବୀଙ୍କୁ ଦର୍ଶନ କଲେ । ସେତେବେଳେ ଗିରିଶ ଆଦୌ ଈଶ୍ୱର ବିଶ୍ୱାସ କରୁ ନଥିଲେ । ଦେବୀ ତାଙ୍କ ନିକଟକୁ ଯାଇ କହିଲେ, 'ପୁଅ ମୋର ! ତୁମେ ଅତି ଯନ୍ତ୍ରଣା ଭୋଗ କରୁଛ, ନୁହେଁ କି ? ତା'ପରେ ସେ ତାଙ୍କ ପାଟିରେ କ'ଣ ଭର୍ତ୍ତି କରି ଦେଲେ । ଏହା ପୁରୀ ମନ୍ଦିରର ଭୋଗ ଥିଲା । ଏହା ପରେ ଦେବୀ

ଅଦୃଶ୍ୟ ହୋଇଗଲେ । ଧୀରେ ଧୀରେ ଗିରିଶ ରୋଗରୁ ଭଲ ହେବାକୁ ଲାଗିଲେ । ସେ ସେହି ଦେବୀ ମୂର୍ତ୍ତି କିଏ ଜାଣିବାକୁ ଚାହିଁଲେ କିନ୍ତୁ ଜାଣିବାର କୌଣସି ସୂତ୍ର ପାଇଲେ ନାହିଁ । ତେଣୁ ସେ ଭାବି ନେଲେ ଯେ ସେହି ମୂର୍ତ୍ତି ତାଙ୍କ ଜନ୍ମିତ ମା' କାରଣ ପିଲାଦିନରୁ ଗିରିଶ ମା'ଙ୍କୁ ହରାଇ ଥିଲେ । କିନ୍ତୁ ଯେଉଁଦିନ ଶ୍ରୀମା'ଙ୍କୁ ଦର୍ଶନ କଲେ ସେ ସେହି ଦେବୀ ମୂର୍ତ୍ତିର ରୂପ ଦର୍ଶନ କଲେ । ଗିରିଶ ତାଙ୍କ ମନର ସଂଦେହ ମୋଚନ ପାଇଁ ବାରମ୍ବାର ମା'ଙ୍କୁ ପଚାରିଛନ୍ତି । ପରିଶେଷରେ ମା' କହିଛନ୍ତି, 'ମୁଁ ପ୍ରକୃତରେ ତୁମର ମା' । ମା' କେବଳ । ତୁମ୍ଭ ଗୁରୁଙ୍କର ପତ୍ନୀ ହିସାବରେ ନୁହେଁ, କିମ୍ବା କୌଣସି ସଂପର୍କ ହେତୁ ନୁହେଁ, କେବଳ ଖାଲି କଥାରେ ନୁହେଁ, ବାସ୍ତବରେ ତୁମର ମା' ।

ଏହାପରଠାରୁ ସେ ମା'ଙ୍କୁ ଅତ୍ୟନ୍ତ ସମ୍ମାନର ସହ ଦେଖିଛନ୍ତି ଏବଂ କହିଛନ୍ତି ନିରଞ୍ଜନର ଦୟାରୁ ସେ ତାଙ୍କ ମା'ଙ୍କୁ ପାଇବାକୁ ସକ୍ଷମ ହୋଇଛନ୍ତି । ତା'ପରଠାରୁ ଗିରିଶ ଜୟରାମବାଟୀ ଯାଇ ମା'ଙ୍କୁ ବାରମ୍ବାର ସାକ୍ଷାତ୍ କରିଛନ୍ତି । ମା' ଗିରିଶଙ୍କର ସମସ୍ତ ପ୍ରକାର ଯତ୍ନ ନେଇଛନ୍ତି । ମା' କଲିକତାରେ ଥିବା ବେଳେ ସେ ତାଙ୍କୁ ଭେଟିବାକୁ ଯାଇଛନ୍ତି । ଥରେ ଶ୍ରୀମା' ଜୟରାମବାଟୀ ଯିବା ପୂର୍ବରୁ ତାଙ୍କୁ ସାକ୍ଷାତ୍ କରି କହିଛନ୍ତି, 'ମା, ମୁଁ ଯେତେବେଳେ ତୁମ ନିକଟକୁ ଆସେ, ମୁଁ ନିଜକୁ ଶିଶୁ ସନ୍ତାନ ତାର ମା' ପାଖକୁ ଆସିବା ପରି ଅନୁଭବ କରେ । ମୁଁ ଯୁବକ ହୋଇଥିଲେ, ମା'ଙ୍କର ସେବା କରୁଥାନ୍ତି କିନ୍ତୁ ବର୍ତ୍ତମାନ ଏହା ଭିନ୍ନ କଥା । ବର୍ତ୍ତମାନ ତୁମେ ଆମର ସେବା କରୁଛ ଏବଂ ଆମେ ତୁମର ସେବା ପାଉଛୁ । ତୁମେ ଜୟରାମବାଟୀ ଯାଉଛ ସେଠାକାର ଲୋକମାନଙ୍କର ସେବା କରିବା ପାଇଁ, ଏପରିକି ଗାଁ ରୋଷେଇଶାଳରେ ରୋଷେଇ କରି ସେମାନଙ୍କୁ ଖାଇବାକୁ ଦେବ । ମୁଁ ତୁମର କିପରି ସେବା କରିପାରିବି ଏବଂ ମୁଁ ମା'ଙ୍କର ସେବା କରିବା ବିଷୟରେ କ'ଣ ଜାଣେ ?' ସେଠାରେ ଉପସ୍ଥିତ ଥିବା ଲୋକମାନଙ୍କୁ ଭାବ ଗଦ୍ ଗଦ୍ କଣ୍ଠରେ କହିଲେ, 'ମଣିଷ ପାଇଁ ଏହା ବିଶ୍ୱାସ କରିବା କଷ୍ଟ ଯେ ଆମ ନିଜ ପରି ଈଶ୍ୱର ଅବତାର ଧାରଣ କରନ୍ତି । ତୁମେ କ'ଣ ସବୁ ଅନୁଭବ କରି ପାରୁଛ ଯେ ଗ୍ରାମ୍ୟ ସ୍ତ୍ରୀ ରୂପରେ ବିଶ୍ୱ ଜନନୀ ଆମ ସମ୍ମୁଖରେ ଉପସ୍ଥିତ ? ତଥାପି ସେ ଏହି ବିଶ୍ୱସଂସାରର ମା' । ମହାମାୟା, ମହାଶକ୍ତି- ମନୁଷ୍ୟର ମୁକ୍ତି ପାଇଁ ଏହି ସଂସାରକୁ ଆସିଛନ୍ତି ଏବଂ ତତ୍‌ସହିତ ମାତୃତ୍ୱ ଆଦର୍ଶର ସର୍ବଶ୍ରେଷ୍ଠ ଉଦାହରଣ ।' ଏହି ବକ୍ତବ୍ୟ ଶ୍ରୀମା' ସାରଦା ଦେବୀଙ୍କର ଅସାଧାରଣ ମାତୃତ୍ୱର ସୂଚନା ଦିଏ ।

ଆଧ୍ୟାତ୍ମିକ ଅନୁଭୂତି ସଂପର୍କରେ ଶ୍ରୀମା କହିଛନ୍ତି, 'ଈଶ୍ୱରଙ୍କୁ ପ୍ରତ୍ୟକ୍ଷାନୁଭୂତି

କରି କ'ଣ ଜଣେ ପାଏ ? କ'ଣ ତାର ଦୁଇଟି ଶିଙ୍ଗ ଉଠେ ? ନା', ତାହା ମନ ପବିତ୍ର ହୁଏ ଏବଂ ସେହି ପବିତ୍ର ମନ ସାହାଯ୍ୟରେ, ଜ୍ଞାନ ଓ ବିବେକର ଉଦୟ ହୁଏ ।'

ସାଧାରଣତଃ ଦୀକ୍ଷା ଦେବା ସମୟରେ ଶ୍ରୀମା' ଖୁବ୍ କମ୍ ସମୟ ନେଉଥାନ୍ତି । ଥରେ ଜଣେ ଶିଷ୍ୟ ସ୍ୱାମୀ ସାରଦାନନ୍ଦଙ୍କୁ ଏହା ପଚାରିଲେ । ସ୍ୱାମୀ ସାରଦାନନ୍ଦ କହିଲେ ଯେ ଶ୍ରୀମା'ଙ୍କର ସାମାନ୍ୟତମ ସ୍ପର୍ଶ, କଥା ଓ ଇଚ୍ଛା ଶିଷ୍ୟଙ୍କୁ ଆଶ୍ୱାସନା ପ୍ରଦାନ କରେ ଯେ ଠାକୁର ତାଙ୍କୁ ଗ୍ରହଣ କରିଛନ୍ତି । କିନ୍ତୁ ସେ ଦୀକ୍ଷାଦେବା ସମୟରେ କିଛି ସମୟ ତାଙ୍କୁ ଧ୍ୟାନରେ କଟାଇବାକୁ ହେବ ଏବଂ ପ୍ରତିଶ୍ରୁତି ପାଇବାକୁ ହେବ ।

ଶ୍ରୀମା' ସାଧାରଣ ଭକ୍ତମାନଙ୍କୁ ଦୀକ୍ଷା ଦେବା ବ୍ୟତୀତ ରାମକୃଷ୍ଣ ସଂଘରେ ଯୋଗଦେବାକୁ ଆସୁଥିବା ତରୁଣମାନଙ୍କୁ ବ୍ରହ୍ମଚର୍ଯ୍ୟ ଓ ସନ୍ନ୍ୟାସ ମନ୍ତ୍ରରେ ମଧ୍ୟ ଶପଥ ଦିଆଉଥାନ୍ତି । ସେମାନଙ୍କୁ ବ୍ରହ୍ମଚର୍ଯ୍ୟ ଶପଥ ଓ ସନ୍ନ୍ୟାସୀମାନଙ୍କର ଗେରୁଆବସ୍ତ୍ର ପ୍ରଦାନ କରି ଶ୍ରୀମା' ସ୍ୱାମୀ ବ୍ରହ୍ମାନନ୍ଦଙ୍କ ନିକଟକୁ ଅନ୍ୟାନ୍ୟ ଆନୁଷ୍ଠାନିକ ବିଧି ପାଳନ ପାଇଁ ପଠାନ୍ତି । ଏପରିକି କିଛି ଯୁବକଙ୍କୁ ଦୀକ୍ଷାଦେଇ ବିବାହିତ ଜୀବନ ବିତାଇବାକୁ ଉପଦେଶ ଦେଇ କହିଥାନ୍ତି, 'କେହି ଜଣେ ବିବାହ କଲେ ଉତ୍ତମ ଜୀବନ ବିତାଇ କାହିଁକି ନ ପାରିବ ? ସବୁକଥା ମନ ଉପରେ ନିର୍ଭର କରେ । ଠାକୁର ମୋତେ ବିବାହ କରି ନଥିଲେ କି ?'

ଏହା ସତ୍ତ୍ୱେ ଶ୍ରୀମା'ଙ୍କର ସନ୍ନ୍ୟାସୀ ମାନଙ୍କ ପ୍ରତି ଥିଲା ଗଭୀର ଭକ୍ତି । ସେ ସେମାନଙ୍କ ପାଇଁ କୁଡିଆ ନିର୍ମାଣ କରିଥିଲେ, ତାଙ୍କର ଦୈନନ୍ଦିନ ଖାଇବାର ବ୍ୟବସ୍ଥା କରିଥିଲେ ଏବଂ ପ୍ରତ୍ୟେକ ଦିନ ସକାଳେ ଯାଇ ତାଙ୍କୁ ପ୍ରଣାମ କରୁଥିଲେ । ରାମକୃଷ୍ଣ ସଂଘର ସନ୍ନ୍ୟାସୀମାନେ ତାଙ୍କୁ ସାକ୍ଷାତ୍ କରିବାକୁ ଆସିବା ସମୟରେ ସେ ରାଧୁ ଓ ଅନ୍ୟାନ୍ୟ ଝିଅାରୀମାନଙ୍କୁ ସେମାନଙ୍କୁ ପ୍ରଣାମ କରିବାକୁ କହୁଥିଲେ । ଥରେ ଜଣେ ଗୃହୀଭକ୍ତ ଜଣେ ସାଧୁଙ୍କ ସହିତ କଳିକଲେ । ଶ୍ରୀମା' ତାଙ୍କୁ ଏହା କରିବାକୁ ବାରଣ କରି ସବୁବେଳେ ସାଧୁମାନଙ୍କୁ ସମ୍ମାନ ଦେବାକୁ କହିଥିଲେ । ସେ କହିଲେ, 'ସାଧୁର ସାମାନ୍ୟ ମାତ୍ର ଶବ୍ଦ କିମ୍ୱା ଚିନ୍ତା ଜଣେ ଗୃହସ୍ଥର ଅମଙ୍ଗଳ କରିପାରେ ।' ସେ ତାଙ୍କର ଝିଅାରୀ ନଳିନୀ ସାଧୁଙ୍କୁ ଥଟ୍ଟା କରିବାରୁ ସେପରି ନ କରିବାକୁ ଚେତେଇ ଦେଇଥିଲେ । ଥରେ ଜଣେ ସନ୍ନ୍ୟାସୀ ଶିଷ୍ୟ ମା'ଙ୍କ ସମ୍ମୁଖରେ ବସିଥିବା ବେଳେ, ଜଣେ ମହିଳା ଭକ୍ତ ସେ ବାଟଦେଇ ଗଲାବେଳେ ତାଙ୍କର ଲୁଗାକାନି ସନ୍ନ୍ୟାସୀଙ୍କ ଦେହରେ ବାଜିଗଲା । ଏହା ଦେଖି ଶ୍ରୀମା' କଡା ସ୍ୱରରେ କହିଲେ, 'ତୁମେ ଏ କ'ଣ କଲ ? ସେ ଜଣେ ସନ୍ନ୍ୟାସୀ ଏବଂ ତୁମେ ତାଙ୍କୁ ତୁମ ଲୁଗାକାନିରେ ସ୍ପର୍ଶ କଲ । ତୁମେ ତାଙ୍କୁ ସମ୍ମାନ

ଦେଖାଅ । ତାଙ୍କର ପାଦଧୂଳି ନିଅ ।' ଆଉ ଥରେ, ଜଣେ ଅତ୍ୟନ୍ତ ସମ୍ମାନୀୟ ମହିଳା ଭକ୍ତଙ୍କର ଉଦ୍‌ବୋଧନ ଅଫିସର ଜଣେ ବ୍ରହ୍ମଚାରୀଙ୍କ ସହିତ ଅତ୍ୟନ୍ତ ଗରମାଗରମ ଯୁକ୍ତିତର୍କ ହେଲା । ଏଥିରେ ସେହି ଭଦ୍ର ମହିଳା ରାଗିକରି କହିଲେ ଯଦି ସେହି ବ୍ରହ୍ମଚାରୀ ଏଠାରେ ରୁହନ୍ତି, ତେବେ ସେ ଏଠାରେ ରହିବେ ନାହିଁ । ଏ ଖବର ଶ୍ରୀମା' ଶୁଣିବା ପରେ କହିଲେ, 'କିଏ ସେ ? ଜଣେ ଗୃହୀ ! ସେ ଜଣେ ସାଧୁଙ୍କ ପ୍ରତି ଏପରି ବ୍ୟବହାର ଦେଖାଇବା ଠିକ୍ ନୁହେଁ । ଯଦି ସେ ଚାହୁଁଛନ୍ତି, ତେବେ ଏଠାରୁ ଚାଲିଯାଇପାରନ୍ତି । ସନ୍ନ୍ୟାସୀ ମାନେ ସବୁକିଛି ମୋ ପାଇଁ ତ୍ୟାଗ କରିଛନ୍ତି ଏବଂ ଏଠାରେ ରହୁଛନ୍ତି ।' କେବେକେବେ ଶିଷ୍ୟମାନଙ୍କୁ କହୁଥିବାର ଶୁଣାଯାଏ, 'ଆହାଃ ମୁଁ କାହା ସହିତ ବାସ କରିଥାନ୍ତି । ଯଦି ମୋ ପାଇଁ ସର୍ବତ୍ୟାଗୀ ସନ୍ନ୍ୟାସୀ ମାନେ ନଥାନ୍ତେ !''

ବାସ୍ତବରେ ଦେଖିବାକୁ ଗଲେ ଶ୍ରୀମା' ଉଭୟ ସନ୍ନ୍ୟାସୀ ଓ ଗୃହୀମାନଙ୍କ ଉପରେ ଗୁରୁତ୍ୱ ଦେଉଥିଲେ । କିନ୍ତୁ ଛଳନାକାରୀ ମାନଙ୍କୁ ଆଦୌ ଭଲ ପାଉ ନଥିଲେ । କିଏ କେଉଁପୋଷାକ ପିନ୍ଧିଛି, ତାହା ତାଙ୍କ ନିକଟରେ ବିଶେଷ ଫରକ୍ ପକାଉ ନଥିଲା ଯଦି ସମ୍ପୂର୍ଣ୍ଣ ତ୍ୟାଗ ଭାବନା ପ୍ରକାଶିତ ହେଉଥିଲା । ଥରେ ଜଣେ ଗୃହୀଭକ୍ତ ଶ୍ରୀମା'ଙ୍କୁ ଅନୁରୋଧ କଲେ ଯେ ଶ୍ରୀମା' ତାଙ୍କ ଝିଅକୁ ବିବାହ କରିବା ପାଇଁ ପ୍ରବର୍ତ୍ତାନ୍ତୁ । କିନ୍ତୁ ଶ୍ରୀମା କହିଲେ, 'ଜୀବନସାରା ଜଣେ ଅନ୍ୟ ଜଣକର ଦାସ ହୋଇ ରହିବ ଏବଂ ଅନ୍ୟ କଥାରେ ଉଠୁବସ ହେବ, ଏହାଠାରୁ ଦୈନ୍ୟତା କ'ଣ ଥାଇପାରେ ?' ତଥାପି ବିବାହିତ ଜୀବନ ସଂପର୍କରେ କହିବା ବେଳେ ସେ ଭକ୍ତମାନଙ୍କୁ କହିଥାନ୍ତି, 'ତୁମେ କ'ଣ ଦେଖୁନାହିଁ ଏହି ସଂସାରରେ ସବୁ କିଛି ଯୁଗଳ ଯେପରି ଦୁଇଟି ଆଖି, ଦୁଇଟି କାନ, ଦୁଇଟି ହାତ, ଦୁଇଟି ଗୋଡ଼ ଇତ୍ୟାଦି ଇତ୍ୟାଦି ? ଠିକ୍ ସେହିପରି ନାରୀ ଓ ପୁରୁଷ ।

ଏହା ସତ୍ତ୍ୱେ ପ୍ରତ୍ୟେକ ଗୃହସ୍ଥ ସନ୍ନ୍ୟାସୀ ମାନଙ୍କୁ ଉପଯୁକ୍ତ ସମ୍ମାନ ଦେବା ଉପରେ ଶ୍ରୀମା' ବାରମ୍ବାର ଗୁରୁତ୍ୱ ଆରୋପ କରିଛନ୍ତି ଏବଂ ସେଥିପାଇଁ ନିଜେ ଉଦାହରଣ ସୃଷ୍ଟି କରିଯାଇଛନ୍ତି ।



# ତାଙ୍କର ବ୍ୟକ୍ତିତ୍ୱ

ଶ୍ରୀମା'ଙ୍କର ସ୍ୱାସ୍ଥ୍ୟ ବେଶ୍ ସବଳ ଓ ଉଚ୍ଚତା ମଧ୍ୟମ ପର୍ଯ୍ୟାୟର ଥିଲା ଅର୍ଥାତ୍ ସେ ବେଶୀ ଡେଙ୍ଗୀ ବା ଗେଡ଼ୀ ନଥିଲେ । ତାଙ୍କର ପ୍ରଥମ ଅବସ୍ଥାର ସ୍ୱାସ୍ଥ୍ୟ ଥିଲା ବେଶ୍ ସତେଜ ଓ ସୁନ୍ଦର । କିନ୍ତୁ ଶ୍ରୀରାମକୃଷ୍ଣଙ୍କର ମୃତ୍ୟୁପରେ, ତାଙ୍କ ଜୀବନ ପରିଧି ମଧ୍ୟକୁ ରାଧୁର ପ୍ରବେଶ, ବାରମ୍ବାର ଜୟରାମବାଟୀରେ ଯାଇ ଅବସ୍ଥାନ ଫଳରେ ମ୍ୟାଲେରିଆ ରୋଗରେ ଆକ୍ରାନ୍ତ ତାଙ୍କର ସ୍ୱାସ୍ଥ୍ୟହାନୀ ଘଟାଇଥିଲା । ଶ୍ରୀମା'ଙ୍କ ଭାଷାରେ, 'ମାୟା ମୋ ଉପରେ ତାର ପ୍ରଭାବ ବିସ୍ତାର କଲା ।' ଭକ୍ତମାନେ ତାଙ୍କ ନିକଟକୁ ଆସିବା ବେଳକୁ ତାଙ୍କର ସ୍ୱାସ୍ଥ୍ୟହାନୀ ଘଟିଥିଲା । ତାଙ୍କର ବାହ୍ୟ ସୌନ୍ଦର୍ଯ୍ୟରେ ଅବନତି ହେବା ସଙ୍ଗେ ସଙ୍ଗେ ରୂପ କଳା ପଡ଼ିଯାଇଥିଲା । ଏହା ସତ୍ତ୍ୱେ ତାଙ୍କର ଅନ୍ତଃସ୍ଥ ସୌନ୍ଦର୍ଯ୍ୟ, ମୁଖମଣ୍ଡଳର ନିଷ୍ପାପ ଚାହାଣି ସାଧାରଣ ମହିଳାମାନଙ୍କଠାରୁ ବାରି ହୋଇପଡୁଥିଲା । ସେଇଥି ପାଇଁ ଜଣେ ମାରୁୱାଡି ଭଦ୍ରମହିଳାଙ୍କୁ ଗୋଲାପମା' କହିଥିଲେ, 'ତୁମେ କଣ ସାଧାରଣ ସ୍ତ୍ରୀର ମୁହଁ ଓ ଦେବୀର ମୁହଁ ମଧ୍ୟରେ ପାର୍ଥକ୍ୟ ଜାଣି ପାରୁ ନାହଁ ?' ତାଙ୍କର ଉପସ୍ଥିତି ଶାନ୍ତି ଓ ପ୍ରେମର ଫଲ୍ଗୁ ବିଞ୍ଚି ପାରୁଥିଲା । ସେ ଭକ୍ତମାନଙ୍କ ମଧ୍ୟରେ ବିଶ୍ୱାସ ଓ ସାହସ ସ୍ଥାପନ କରିବା ସହିତ ଦୁର୍ବଳ ମଧ୍ୟରେ ସୃଷ୍ଟି କରିପାରୁଥିଲେ ଆତ୍ମବିଶ୍ୱାସ । ଭକ୍ତମାନଙ୍କ ମନରୁ ଦୂର କରି ଦେଉଥିଲେ ଅସହାୟତାର କଳାବାଦଲ । ମାତୃହୃଦୟର ପ୍ରେମ ପ୍ରଦାନ କରୁଥିଲା ଆଶ୍ୱାସନା । ତାଙ୍କର ମାତୃହୃଦୟ କାହାରି ଦୋଷ ନ ଦେଖି ସମସ୍ତଙ୍କୁ ଅକାତରରେ ଗ୍ରହଣ କରୁଥିଲା । ସେ କହୁଥିଲେ, 'ଯଦି ମୋର ସନ୍ତାନ ଧୂଳି କାଦୁଅରେ ଲଟପଟ ହୋଇ ମୋ ନିକଟକୁ ଆସେ, ତେବେ ତାକୁ ସଫାସୁତୁରା କରି କୋଳରେ ନେବା କ'ଣ ମୋର ଦାୟିତ୍ୱ ନୁହେଁ ? ଏପରି ମଧ୍ୟ କହୁଥିଲେ, 'ମୁଁ ମା' ହୋଇ କିପରି ତାକୁ ମୋ ପାଖକୁ ଆସିବାକୁ ମନା କରି ଦେଇ ପାରିବି ?' ଏପରି କଥା ମୋ ତୁଣ୍ଡକୁ ଆସିବନାହିଁ ।'

ଥରେ ଗୋଲାପମା' ଜଣେ ଚାକରାଣୀକୁ ଗାଳି ଦେଉଥିଲେ । ଶ୍ରୀମା' ଏହାର କାରଣ ପଚାରିଲେ । ଗୋଲାପମା' କହିଲେ, 'ମା' ! ଆପଣଙ୍କୁ କହିଲାଭ କ'ଣ ?

ଆପଣ ଅନ୍ୟର ଦୋଷ ଦେଖିବେ ନାହିଁ ।' ଏହା ଶୁଣି ଅତି ନମ୍ର ସ୍ୱରରେ ମା' କହିଲେ, ''ଠିକ୍ କଥା ଗୋଲାପ, ଅନ୍ୟର ଦୋଷ ଦେଖିବାକୁ ସଂସାରରେ ଲୋକଙ୍କର ଅଭାବ ନାହିଁ । ଯଦି ମୁଁ ସେଥିରୁ ଭିନ୍ନ ହୁଏ, ତେବେ ଏହି ସଂସାରଟା ଅଟକି ଯିବ ନାହିଁ ।' ତାଙ୍କର ଏହି ଅସୀମ ଧୈର୍ଯ୍ୟଶୀଳ ଓ କ୍ଷମା ପରାୟଣ ଚରିତ୍ର ମଧ୍ୟରେ ନିହିତ ଥିଲା ମାତୃତ୍ୱ ଓ ନିଷ୍ପାପ ଶିଶୁର ମନୋଭାବ । ଏପରିକି ରାମକୃଷ୍ଣ ସଂଘ ମଧ୍ୟରେ ଥିବା ବ୍ରହ୍ମଚାରୀ ବା ସନ୍ନ୍ୟାସୀ ମାନଙ୍କୁ ତାଙ୍କର ଦୋଷ ପାଇଁ କଠିନ ଦଣ୍ଡ ଦେବାକୁ ଧମକ ଦିଆଗଲେ, ସେମାନେ ମା'ଙ୍କର ଶରଣାପନ୍ନ ହେଉଥିଲେ । ମା' ସେମାନଙ୍କୁ ଅଭୟ ଦେବା ସହିତ ଶୃଙ୍ଖଳା ଓ ଆଜ୍ଞାବହତା ପାଳନ କରିବାର ତାତ୍ପର୍ଯ୍ୟ ସଂପର୍କରେ ସଚେତନ କରାଉଥିଲେ । ଥରେ ବେଲୁଡ ମଠର ବ୍ରହ୍ମଚାରୀ ନଗେନ୍ (ସାନ) କିଛି ଗୁରୁତର ଅପରାଧ କଲେ । ତାଙ୍କର ଭୟ ହେଲା ଯେ ମଠର ପରିଚାଳକ ସ୍ୱାମୀ ଶିବାନନ୍ଦ ତାଙ୍କୁ ମଠରୁ ବାହାର କରିଦେବେ । ସେ ଲୁଚିକରି ଜୟରାମବାଟୀରେ ପହଞ୍ଚିଲେ । ଶ୍ରୀମା' ଜୟରାମବାଟୀରେ ଥାଆନ୍ତି । ଶ୍ରୀମା' ତାଙ୍କୁ ଅଭୟ ପ୍ରଦାନ କରି ବେଲୁଡ ମଠକୁ ପଠାଇଲେ । ଏହାକୁ ଲକ୍ଷ୍ୟକରି ସ୍ୱାମୀ ଶିବାନନ୍ଦ କହିଲେ, 'ପୁଅ ମୋର, ତୁମେ କିପରି ଆମ ବିରୋଧରେ ଅଭିଯୋଗ କରିବା ପାଇଁ ସିଧା ହାଇକୋର୍ଟରେ ପହଞ୍ଚି ଗଲ ?'

ତାଙ୍କର ଦୟାର୍ଦ୍ର କ୍ଷମାଶୀଳତା ଚାକରବାକରଙ୍କ ପର୍ଯ୍ୟନ୍ତ ଲମ୍ବି ଯାଇଥିଲା । ଥରେ ବେଲୁଡ ମଠର ଜଣେ ଚାକର ଚୋରି କରିଥିବାରୁ ସ୍ୱାମୀ ବିବେକାନନ୍ଦ ତାଙ୍କୁ ଚାକିରିରୁ ବାହାର କରି ଦେବାର ନିର୍ଦ୍ଦେଶ ଦେଲେ । ସେହି ଲୋକଟି ବୋଷପଡ଼ା ଲେନ୍‌ରେ ରହୁଥିବା ମା'ଙ୍କ ନିକଟକୁ ଯାଇ ସେଠାରେ ଆଶ୍ରୟ ଗ୍ରହଣ କଲା । ସନ୍ଧ୍ୟାବେଳେ ସ୍ୱାମୀ ପ୍ରେମାନନ୍ଦ ଶ୍ରୀମା'ଙ୍କୁ ପ୍ରଣାମ କରିବାକୁ ଗଲେ । ମା' ତାଙ୍କୁ କହିଲେ, 'ବାବୁରାମ ଦେଖ, ଏହି ଲୋକଟି ଭାରି ଗରିବ । ତା'ର ଏହି ଦାରିଦ୍ର୍ୟ ତାକୁ ଚୋରି କରିବାକୁ ବାଧ କଲା । ସେଇଥିପାଇଁ ନରେନ୍ ତାକୁ ବାହାର କରିଦେବ ? ଏହି ସଂସାରରେ ଦୈନ୍ୟ ପୂରି ରହିଛି । ତୁମ୍ଭେମାନେ ସନ୍ନ୍ୟାସୀ, ବହୁତ କମ୍ ବୁଝିପାର ।' କହିବା ବାହୁଲ୍ୟ ଯେ ସେହି ଲୋକଟିକୁ ପୁନରାୟ ଚାକିରିରେ ନିଆଗଲା ।

ମନୁଷ୍ୟର ଦୁଃଖ, ଦାରିଦ୍ର୍ୟ, ରୋଗ କଷ୍ଟ ଇତ୍ୟାଦିରେ ଶ୍ରୀମା'ଙ୍କ ହୃଦୟ ବ୍ୟଥିତ ଓ ମଥିତ ହେଉଥିଲା । ଜୟରାମବାଟୀରେ ବାନାର୍ଜୀ ପରିବାରର ଜଣେ ମହିଳା କାନ କ୍ୟାନସର ରୋଗରେ ପୀଡ଼ିତ ଥାଇ ବହୁକଷ୍ଟ ଭୋଗ କରୁଥିଲା । ତା'ର ପରିବାରର ଆତ୍ମୀୟମାନେ ମଧ୍ୟ ତା' କଥା ବୁଝୁ ନଥିଲେ । ତା'ର ଏହି ଦାରୁଣ ଅବସ୍ଥା ଶ୍ରୀମା'ଙ୍କର ଦୃଷ୍ଟିକୁ ଆସିଲା । ଥରେ କୋଆଲପଡ଼ା ଆଶ୍ରମର ଜଣେ ତରୁଣ ଶିଷ୍ୟ

ଶ୍ରୀମାଙ୍କୁ ସାକ୍ଷାତ୍ କରିବାକୁ ଆସିଥିଲା । ଶ୍ରୀମା' ତା ଆଗରେ ଅତ୍ୟନ୍ତ ଆବେଗପୂର୍ଣ୍ଣ ଭାବେ ଏହି ମହିଳାଙ୍କ କଥା ବର୍ଣ୍ଣନା କଲେ । ଏହା ଶୁଣି ସେହି ତରୁଣ ଶିଷ୍ୟ ସେହି ମହିଳାଙ୍କୁ କୋଆଲପଡ଼ା ଆଶ୍ରମକୁ ନେଇ ସେବା କରିବା କଥା କହିଲେ । ଶ୍ରୀମା' ଏହାଶୁଣି ଆନନ୍ଦ ପ୍ରକାଶ କଲେ କିନ୍ତୁ ପର ମୁହୂର୍ତ୍ତରେ ନିଜକୁ ସଂଯତ କରି ଶିଷ୍ୟକୁ କୋଆଲପଡ଼ା ଆଶ୍ରମର ଅଧକ୍ଷଙ୍କ ଅନୁମତି ଆଣିବାକୁ ପରାମର୍ଶ ଦେଲେ । ଶିଷ୍ୟ ଆଶ୍ରମକୁ ଫେରିଗଲେ । ତା'ପର ଦିନ ସେ ଆଶ୍ରମ ଅଧକ୍ଷଙ୍କ ଅନୁମତି ସହିତ ବଳଦଗାଡ଼ିଟିଏ ଧରି ସେହି ମହିଳାଙ୍କୁ ନେବାକୁ ଉପସ୍ଥିତ ହେଲେ । ମା'ଙ୍କ ମୁହଁ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ଉଠିଥିବାର ଶିଷ୍ୟ ଜଣକ ଲକ୍ଷ୍ୟ କଲେ । ଏପରି ଅନାସକ୍ତ ପ୍ରେମ ସେଦିନ ସେହି ସନ୍ନ୍ୟାସୀ ଶିଷ୍ୟ ଦେଖିବାକୁ ପାଇଥିଲେ । ରାମକୃଷ୍ଣ ମିଶନ୍ ଦ୍ୱାରା ବନ୍ୟାବାତ୍ୟାରେ ପରିଚାଳିତ ହେଉଥିବା ରିଲିଫ୍ କାର୍ଯ୍ୟ ପ୍ରତି ଶ୍ରୀମା' ଗଭୀର ରୁଚି ରଖୁଥିଲେ । ସେ ଯେଉଁମାନେ ଏହି କାର୍ଯ୍ୟରେ ନିୟୋଜିତ ରହୁଥିଲେ, ସେମାନଙ୍କଠାରୁ ଲୋକମାନଙ୍କର ଅବର୍ଣ୍ଣନୀୟ ଦୁଃଖ ସଂପର୍କରେ ପଚାରି ବୁଝୁଥିଲେ । ନିଜର ସମସ୍ତ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ସୁବିଧାକୁ ସମ୍ପୂର୍ଣ୍ଣ ଭୁଲିଯାଇ ସେ ଅନ୍ୟର ସେବା କରିବାକୁ ଆଗେଇ ଆସୁଥିଲେ । ରାମକୃଷ୍ଣ ପୁଥିର ଲେଖକ ଓ ତାଙ୍କର ଦୀକ୍ଷିତ ଶିଷ୍ୟ ଅକ୍ଷୟ କୁମାର ସେନ୍ ଥରେ ଜଣେ ମହିଳା ଶ୍ରମିକ ହାତରେ କିଛି ପରିବା ଜୟରାମବାଟୀ ପଠାଇଥିଲେ । ସେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇ ଯାଇଥିବାରୁ, ସେଠାରେ ରହିବାର ତା'ର ବ୍ୟବସ୍ଥା କରାଗଲା । ମହିଳା ଜଣକ ଥିଲା ମ୍ୟାଲେରିଆ ରୋଗୀ । ଫଳରେ ରାତିରେ ତାକୁ ଭୀଷଣ ଜ୍ୱର ହେଲା ଏବଂ ସେ ଘର ସାରା ବାନ୍ତି କରି ପକାଇଲା । ସକାଳୁ କେହି ଉଠିବା ପୂର୍ବରୁ ମା' ନିଜେ ଯାଇ ଘରକୁ ନିଜ ହାତରେ ପରିଷ୍କାର କରି ପାଣି ଧୋଇ ସଫା କଲେ । ଅବଶ୍ୟ ସେହି କାର୍ଯ୍ୟ କରିବାକୁ ଘରେ ଲୋକ ଥିଲେ କିନ୍ତୁ ସେ ଜାଣିଥିଲେ ଅନ୍ୟମାନେ ତାକୁ ତାର କାର୍ଯ୍ୟ ପାଇଁ ଗାଳି ଦେଇଥାନ୍ତେ । ମା' ତାଙ୍କୁ ଗାଳିରୁ ରକ୍ଷା କରିବାକୁ ଯାଇ ନିଜେ କାର୍ଯ୍ୟ ସମ୍ପାଦନ କଲେ ।

ଶ୍ରୀମା'ଙ୍କର ଦୟାର୍ଦ୍ର ଚିତ୍ତ କେବଳ ଦୁଃଖୀ ମାନଙ୍କ ପ୍ରତି ବ୍ୟଥିତ ହେଉନଥିଲା, ବରଂ ସମାଜରେ ଯେଉଁମାନେ ଦୁଷ୍ଟ ପ୍ରକୃତିର ସେମାନଙ୍କ ପ୍ରତି କ୍ଷମାଶୀଳ ଥିଲା । ଜୟରାମବାଟୀରେ ମା'ଙ୍କ ଘର ନିର୍ମାଣ କରିବା ପାଇଁ ନିକଟସ୍ଥ ଗ୍ରାମ୍ୟର ମୁସଲମାନମାନଙ୍କୁ ନିୟୋଜିତ କରାଯାଉଥିଲା । ଏହି ମୁସଲମାନ ମାନେ ପୂର୍ବରୁ ରେଶମ ବ୍ୟବସାୟ କରୁଥିଲେ କିନ୍ତୁ ସମୟ କ୍ରମେ ଏହା ମାନ୍ଦା ପଡ଼ିଯିବାରୁ ସେମାନେ ବଞ୍ଚିବା ପାଇଁ ଚୋରି ଓ ଡକାୟତି କରିବାକୁ ଆରମ୍ଭ କରିଦେଲେ । ତେଣୁ ସେମାନଙ୍କୁ

ନିଯୁକ୍ତି କରିବା ଫଳରେ ଗାଁ ଲୋକମାନେ ଚିନ୍ତିତ ହୋଇଉଠିଲେ । କିନ୍ତୁ ପରେ ସେମାନେ କହିଲେ ଯେ ମା'ଙ୍କର ଅପୂର୍ବ ଶକ୍ତି ଫଳରେ ସେମାନେ ଭକ୍ତ ପାଲଟି ଗଲେ । ଦିନେ ସେହି ମୁସଲମାନଙ୍କ ମଧ୍ୟରୁ ଜଣେ କିଛି ପାଚିଲା କଦଳୀ ଆଣି ମା'ଙ୍କୁ ଦେଲା ଏବଂ କହିଲା, 'ମୁଁ ଠାକୁରଙ୍କ ପାଇଁ ଏଇଥିରୁ କିଛି ଆଣିଛି । ତାହାକୁ ତୁମେ ଗ୍ରହଣ କରିବ କି ?' ଅତି ଆନନ୍ଦରେ ଶ୍ରୀମା' ତାହାକୁ ଗ୍ରହଣ କଲେ । ପାଖରେ ଛିଡ଼ା ହୋଇଥିବା ସ୍ତ୍ରୀ ଭକ୍ତ କହିଲେ, 'ମୁଁ ଜାଣେ, ଏ ଲୋକମାନେ ଚୋର । ତୁମେ କାହିଁକି ଠାକୁରଙ୍କ ପାଇଁ ସେମାନଙ୍କ ଜିନିଷକୁ ଗ୍ରହଣ କରୁଛ ?' ଶ୍ରୀମା' ଅତ୍ୟନ୍ତ ଶାନ୍ତ ସ୍ୱରରେ କହିଲେ, 'ମୁଁ ଜାଣେ କେଉଁମାନେ ଭଲ ଓ କେଉଁମାନେ ଖରାପ ।'

ଏହି ମୁସଲମାନଙ୍କ ମଧ୍ୟରେ ଜଣକ ନାଁ ଥିଲା ଅମଜାଦ୍ । ଶ୍ରୀମା' ତାକୁ ଘର ଭିତରକୁ ଖୋଇବା ପାଇଁ ନେଇଗଲେ । ସେ ବାରଣ୍ଡାରେ ଖାଇବାକୁ ବସିଥାଏ ଓ ନଳିନୀ ପରଷୁ ଥାଏ । ଜାତିଗତ ସମସ୍ୟା ଥିବାରୁ ନଳିନୀ ଦୂରରୁ ଖାଇବା ପଦାର୍ଥକୁ ତା'ର ପାତ୍ରକୁ ଫିଙ୍ଗୁଥାଏ । ଏହା ଦେଖି ଶ୍ରୀମା' କହିଲେ, ଯଦି ତୁମେ ଜଣେ ଅତିଥିକୁ ଏହିପରି ଖାଇବାକୁ ଦେବ, ତେବେ ସେ କ'ଣ ଖୁସିରେ ଖାଇ ପାରିବ ?' 'ତୁମେ ଖାଦ୍ୟ ଜିନିଷ ମୋତେ ଦିଅ; ମୁଁ ତାକୁ ପରଷିବି ।' ଅମଜାଦ୍ ଖାଇ ସାରିବା ପରେ ଶ୍ରୀମା' ନିଜ ହାତରେ ସେହି ସ୍ଥାନକୁ ପରିଷ୍କାର କଲେ । ନଳିନୀ ଏହା ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, 'ପିଉସୀ ! ତୁମେ ତୁମର ଜାତି ହରାଇବ ।' ଶ୍ରୀମା' ତା' ପାଟି ଚୁପ୍ କରି ଦେବାକୁ କହିଲେ, 'ଚୁପ୍ କର । ଶରତ୍ (ସ୍ୱାମୀ ସାରଦାନନ୍ଦ) ଯେପରି ମୋର ପୁଅ, ଅମଜାଦ୍ ମଧ୍ୟ ଠିକ୍ ସେହିପରି ମୋର ପୁଅ ।' ତାଙ୍କ ପ୍ରେମ ସ୍ରୋତର କୌଣସି ଜାତିଗତ, ଭୌଗୋଳିକ ସୀମା ନଥିଲା । ଏପରିକି ଦେଶ ବିଦେଶ ମଧ୍ୟରେ ସେ କୌଣସି ବାଛ ବିଚାର ରଖୁ ନଥିଲେ । ତାଙ୍କ ନିକଟକୁ ପାଶ୍ଚାତ୍ୟର ନାରୀ ଭଗିନୀ ନିବେଦିତା, ମିସେସ୍ ଓଲି ବୁଲ, ଭଗିନୀ କ୍ରାଷ୍ଟାଇନ୍, ଭଗିନୀ ଦେବମାତା ପ୍ରଭୃତି ଆସୁଥିଲେ ଏବଂ ଶ୍ରୀମା'ଙ୍କର ସହିତ ଘନିଷ୍ଠ ଭାବରେ ମିଶି ତାଙ୍କୁ ଶ୍ରଦ୍ଧା ସୁମନ ଅର୍ପଣ କରୁଥିଲେ । ରକ୍ଷଣଶୀଳ ବ୍ରାହ୍ମଣ ପରିବେଶ ମଧ୍ୟରେ ତାଲିମ ପାଇଥିଲେ ମଧ୍ୟ ସେ ସେମାନଙ୍କୁ ଶ୍ରଦ୍ଧାର ସହିତ ଗ୍ରହଣ କରି ସେମାନଙ୍କ ସହିତ ଏକାଠି ରହୁଥିଲେ ଏବଂ ଖାଉଥିଲେ ।

ଯଦିଓ ସେ ସମାଜ ସଂସ୍କାରକ ନଥିଲେ, କିନ୍ତୁ ଜାତି ବିଚାରର ପାଚେରିକୁ ସେ ତାଙ୍କ ନିକଟରେ ସଂପୂର୍ଣ୍ଣ ଭାଙ୍ଗି ଦେଇଥିଲେ । ତାଙ୍କ ନିକଟରେ ଆଦୌ ସଂକୀର୍ଣ୍ଣତା ନ ଥିଲା । ଏହି ପାଚେରିକୁ ଭାଙ୍ଗି ଦେବାର ମୂଳରେ ଥିଲା ତାଙ୍କର ସମସ୍ତଙ୍କ ପ୍ରତି ମାତୃ ସ୍ନେହ । ବ୍ୟକ୍ତିର ଈଶ୍ୱର ସଂପର୍କୀୟ ବିଚାର ତା'ର ପ୍ରକୃତିର

ଉତ୍ତମ ଗୁଣଗୁଡ଼ିକ ଦ୍ୱାରା ଜଣାଯାଏ । ମାତୃତ୍ୱ ମନୁଷ୍ୟ ଚରିତ୍ରର ସର୍ବଶ୍ରେଷ୍ଠ ସାଫଲ୍ୟ କାରଣ ଏହା ପ୍ରେମ, କ୍ଷମା, ନିଃସ୍ୱାର୍ଥପରତା, ସେବା ଇତ୍ୟାଦି ମାଧ୍ୟମରେ ପ୍ରକଟିତ ଏବଂ ଦେବତ୍ୱର ପ୍ରତୀକ । ତେଣୁ ଶ୍ରୀମା'ଙ୍କ ଜୀବନରେ ଏହାର ବହୁଳ ଓ ବ୍ୟାପକ ଉଦାହରଣ ହେତୁ ସେ ଦେବୀତ୍ୱର ମୂର୍ତ୍ତିମନ୍ତ ରୂପ । ଏଥିରୁ ତାଙ୍କର ନିଜେ କହିଥିବା କଥା ବୁଝାପଡ଼େ । 'ଶ୍ରୀରାମକୃଷ୍ଣ ମୋତେ ଛାଡ଼ି ଚାଲିଯିବାର ଉଦ୍ଦେଶ୍ୟ ହେଉଛି ଏହି ଜଗତ ସମ୍ମୁଖରେ ମାତୃଭାବର ପରିପ୍ରକାଶ କରିବା ।' ଥରେ ଜଣେ ସନ୍ନ୍ୟାସୀ ଶିଷ୍ୟ ଶ୍ରୀମା'ଙ୍କୁ କହିଲେ ମା', ଆପଣଙ୍କ ଦର୍ଶନ ପରେ ଲୋକମାନେ ଅନ୍ୟ ଦେବୀ ମାନଙ୍କୁ ପୂଜା କରିବେ ନାହିଁ ।' ଏହା କହିବା ଫଳରେ ଶ୍ରୀମା'ଙ୍କର ମାତୃତ୍ୱର ମାନବୋଚିତ ଗୁଣ ଗୁଡ଼ିକର ପ୍ରଶଂସା କରାଯିବା ସହିତ ତାଙ୍କ ମାତୃତ୍ୱର ସୁବ୍ୟବସ୍ଥିତ ବିଶ୍ୱବ୍ରହ୍ମାଣ୍ଡର ବ୍ୟାପକତା ମଧ୍ୟ ସୂଚୀତ କରାଯାଇଛି । ଯଦିଓ ଶ୍ରୀମା' ମନୁଷ୍ୟ ରୂପରେ ସଦାସର୍ବଦା ଆଚ୍ଛାଦିତ, କିନ୍ତୁ ଅନେକ ସମୟରେ ଭକ୍ତମାନଙ୍କ ସହିତ, ଶିଷ୍ୟମାନଙ୍କ ସହିତ ଆଲୋଚନା କଲାବେଳେ ସେହି ଦେବୀତ୍ୱର ପରିପ୍ରକାଶ ସେ ନିଜେ କରିଛନ୍ତି । ଯଦିଓ ସେ ନିଜ ଦେବୀତ୍ୱର ପରିପ୍ରକାଶ ନିଜେ କରିଯାଇଛନ୍ତି, କିନ୍ତୁ ଏହାଦ୍ୱାରା ନିଜକୁ ମହିମାମୟ କରିବାର କୌଣସି ପ୍ରଚେଷ୍ଟା ନାହିଁ । ସେ ତାଙ୍କ ପୁତୁରା ଶିବରାମକୁ ସେ ନିଜେ ଦେବୀ କାଳୀ ବୋଲି ପରିଚୟ ଦେଇ ତା ମୁଣ୍ଡ ଉପରେ ଭାବାବିଷ୍ଟ ଅବସ୍ଥାରେ ସ୍ୱହସ୍ତ ରୋପିତ କରି ଆଶୀର୍ବାଦ କରିଛନ୍ତି । ଦକ୍ଷିଣେଶ୍ୱରରେ ଥିବା ସମୟରେ ଶ୍ରୀମା' ଯୋଗୀନ୍‌ମା'ଙ୍କୁ ପଚାରିଲେ ସେ ପୂଜା କରିବା ସମୟରେ ଶୁଖିଲା ବେଲପତ୍ର ସମର୍ପଣ କରିଛନ୍ତି କି ? ସେ ହଁ କହିବାରୁ ଶ୍ରୀମା କହିଲେ, 'ଆଜି ସକାଳେ ମୁଁ ଧ୍ୟାନସ୍ଥ ଥିବାବେଳେ ଦେଖିଲି ତୁମେ ଶୁଖିଲା ବେଲପତ୍ର ସମର୍ପଣ କରୁଛ ମୋ...।' ହଠାତ୍ ସେ କହିବା ବନ୍ଦ କରିଦେଲେ ଏବଂ 'ତେ' କହିଲେ ନାହିଁ । ଥରେ ସ୍ୱାମୀ ତନ୍ମୟାନନ୍ଦ ମା'ଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କର ପାଦକୁ ନିଜ ମୁଣ୍ଡ ଉପରେ ଥାପିବାରୁ ଶ୍ରୀମା' ବାଧା ଦେଇ କହିଲେ ଠାକୁର ମସ୍ତକରେ ସହସ୍ର ଦଳ ପଦ୍ମ ଭାବରେ ଶିବ ରୂପେ ବିରାଜିତ । ଏହା ଶୁଣି ସ୍ୱାମୀ ତନ୍ମୟାନନ୍ଦ ପଚାରିଲେ, 'ଯଦି ଠାକୁର ସ୍ୱୟଂ ଶିବ, ତେବେ ଆପଣ କିଏ ?' କୌଣସି କୁଣ୍ଠାବୋଧ ନ କରି ଶ୍ରୀମା' କହିଲେ, 'ମୁଁ ଅନ୍ୟ କିଏ ହେବି ? ମୁଁ ହେଉଛି ଦିବ୍ୟ ଜନନୀ ।'

ଥରେ ଜଣେ ସ୍ତ୍ରୀ ଭକ୍ତ ପଚାରିଲେ, 'ମା; ଆମେ କାହିଁକି ତୁମକୁ ଦେବୀ ଭାବରେ ଦେଖିପାରୁ ନାହୁଁ ? ଶ୍ରୀ ମା' କହିଲେ, 'ମୋର ପ୍ରିୟ ସନ୍ତାନ, ଯିଏ ପାରେ ସିଏ କ'ଣ ଦେଖି ପାରିବେ ? ପୋଖରୀ କୂଳ ପଥର ପାହାଚରେ ରତ୍ନ ପଥରଟିଏ ଲାଗି ରହିଛି । ବହୁଲୋକ ଗାଧୋଇବାକୁ ଆସି ଗୋଡ଼ ଘଷି ଯାଉଛନ୍ତି । ସେହି

ପଥରକୁ ସାଧାରଣ ପଥର ବୋଲି ଭାବି ଗୋଡ଼ ଘଷୁଛନ୍ତି । ଶେଷରେ ଜଣେ ସୁନାରୀ ବଣିଆ ଆସିଛି ଏବଂ ଏହି ମୂଲ୍ୟବାନ ପଥରଟିକୁ ଚିହ୍ନି ପାରିଛି ।' ଏହି ସୁନ୍ଦର ଉଦାହରଣ ମାଧ୍ୟମରେ କେବଳ ଯେଉଁମାନଙ୍କ ନିକଟରେ ଦିବ୍ୟ ଦୃଷ୍ଟି ଓ ଆଧ୍ୟାତ୍ମିକ ସାଧନା ରହିଛି, ସେମାନେ ତାଙ୍କର ଦେବୀରୂପ ଦେଖିବାକୁ ସକ୍ଷମ ହୋଇଛନ୍ତି ବୋଲି କହିଛନ୍ତି । କିନ୍ତୁ ଶ୍ରୀମା'ଙ୍କର ଦେବୀତ୍ୱର ସାଧାରଣ ଭାବ ସମସ୍ତଙ୍କ ନିକଟରେ ପ୍ରତିଭାତ ।

ଈଶ୍ୱର ମନୁଷ୍ୟ ରୂପରେ ଠାକୁର ଶ୍ରୀରାମକୃଷ୍ଣଙ୍କ ଭାବେ ଅବତୀର୍ଣ୍ଣ ଏହା ଶ୍ରୀମା' ଗଭୀର ଭାବେ ହୃଦୟଙ୍ଗମ କରି ଠାକୁରଙ୍କ ପ୍ରତି ସଦାସର୍ବଦା ଭକ୍ତି ଅର୍ପଣ କରିଛନ୍ତି ଏହା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବିଶେଷତ୍ୱ । ଠାକୁରଙ୍କ ଜୀବଦଶାରେ ଓ ତାଙ୍କ ତିରୋଧାନ ପରେ ଶ୍ରୀମା'ଙ୍କର ସେହି ଭକ୍ତିଭାବ ଅତୁଟ ରହିଛି । ସେ ବାରମ୍ବାର ତାଙ୍କ ଜୀବନର ସବୁ ସମସ୍ୟା ମଧ୍ୟଦେଇ ଗତି କଲାବେଳେ ଠାକୁରଙ୍କର ସାହାଯ୍ୟ, ସହଯୋଗ, ସାନ୍ନିଧ୍ୟ ଓ ନିର୍ଦ୍ଦେଶ ଲାଭ କରିଛନ୍ତି । ଠାକୁର ସୂକ୍ଷ୍ମ ରୂପରେ ଭକ୍ତମାନଙ୍କର ଶରୀରରେ ବିଦ୍ୟମାନ ରହିବେ ବୋଲି ଶ୍ରୀମା'ଙ୍କୁ ଆଶ୍ୱାସନା ବାଣୀ ଶୁଣାଇ ଯାଇଛନ୍ତି । ଏବଂ ଏହି ସତ୍ୟ ଶ୍ରୀମା'ଙ୍କର ଉପସ୍ଥିତିରୁ ସ୍ୱତଃ ପ୍ରମାଣିତ । ଠାକୁରଙ୍କ ପ୍ରତି ମା'ଙ୍କର ଶ୍ରଦ୍ଧା, ଭକ୍ତିର ପ୍ରମାଣ ହେଉଛି ତାଙ୍କର ଅତି ଅନୁରାଗ ଓ ନିଷ୍ଠାର ସହିତ ଠାକୁରଙ୍କୁ ପୂଜା । ସେ ଠାକୁରଙ୍କ ସମ୍ମୁଖରେ ପ୍ରତ୍ୟେକ ଦିନ ଗାଧୋଇ ସାରି ପୁଷ୍ପ ଅର୍ପଣ କରି ଅଧଘଣ୍ଟାଏ ଧ୍ୟାନସ୍ଥ ହୁଅନ୍ତି । ଖାଦ୍ୟ ପ୍ରସ୍ତୁତ ସରିବା ପରେ ଶ୍ରୀମା' ଠାକୁରଙ୍କ ସମ୍ମୁଖରେ ଖାଦ୍ୟରଖି ଜଣେ ବଞ୍ଚିଥିବା ମଣିଷକୁ ଡାକିବା ପରି ଡାକନ୍ତି, 'ଦୟା କରି ଆସି ତୁମର ଖାଦ୍ୟ ଗ୍ରହଣ କର ।' ଜୟରାମବାଟୀରେ ଥିବା ବେଳେ ଜଗଦ୍ଧାତ୍ରୀ ପୂଜା କରିବା ଦିନ ସେ ଠାକୁରଙ୍କୁ କହୁଥିବାର ଶୁଣାଯାଏ, 'ହେ ପୁତ୍ର; ଆଜି ଟିକିଏ ଚଞ୍ଚଳ ତୁମର ଖାଦ୍ୟ ଖାଇବା ଶେଷ କର । ମୋତେ ଜଗଦ୍ଧାତ୍ରୀ ପୂଜା କରିବାକୁ ହେବ ।' ହୁଏତ ଏହା ଆଶ୍ଚର୍ଯ୍ୟ ଜନକ ବୋଧ ହୋଇ ପାରେ କିନ୍ତୁ ଶ୍ରୀମା' ଠାକୁର ଖାଦ୍ୟ ଗ୍ରହଣ କରୁଥିବାର, ଖାଦ୍ୟକୁ ସ୍ପର୍ଶ କରିବାର କିମ୍ବା ଖାଦ୍ୟ ଗ୍ରହଣ କରିବାର ସମ୍ମତି ଦେବାର ସ୍ପଷ୍ଟ ଭାବରେ ଦେଖନ୍ତି । ନ ଦେଖିବା ପର୍ଯ୍ୟନ୍ତ, ସେ ଆଦୌ ସନ୍ତୁଷ୍ଟ ହୁଅନ୍ତି ନାହିଁ । ଏପରିକି ଦୂର ସ୍ଥାନକୁ ଯାତ୍ରା କଲାବେଳେ ଠାକୁରଙ୍କୁ ଖାଦ୍ୟ ପରିବେଷଣ ନ କରି ସେ ଖାଦ୍ୟ ଗ୍ରହଣ କରନ୍ତି ନାହିଁ । ତାଙ୍କ ନିଜର କିଛି କ୍ଷମତା ଅଛି ବୋଲି ସେ କେବେହେଲେ କହି ନାହାଁନ୍ତି ବରଂ ନିଜକୁ ଠାକୁରଙ୍କର ଯନ୍ତ୍ର ବୋଲି ସଦାସର୍ବଦା କହିଛନ୍ତି । ଠାକୁରଙ୍କ ତିରୋଧାନରେ ସେ ନିଜର ଦୁଃଖ ଭିତରେ କହିଛନ୍ତି, ହେ ମା' କାଳୀ; ତୁମେ କ'ଣ ମୋତେ ଛାଡ଼ି ଚାଲିଗଲ ?'

କେବେହେଲେ ଶ୍ରୀମା' ନିଜକୁ ଠାକୁରଙ୍କ ଠାରୁ ଭିନ୍ନ ଦେଖିନାହାନ୍ତି କିନ୍ତୁ ନିଜର ମହତ୍ତ୍ୱପଣିଆକୁ ସଦାସର୍ବଦା ଲୁଚାଇରଖି ସାଧାରଣ ମଣିଷ ଭାବରେ ଦେଖା ଦେଇଛନ୍ତି । ଯଦି କେତେବେଳେ କେହି ତାଙ୍କ ସମ୍ମୁଖରେ ତାଙ୍କର ବଡ଼ତି କରି କହେ, ସେ ତତ୍‌କ୍ଷଣାତ୍ ସେପରି କହିବାକୁ ବାରଣ କରନ୍ତି । ସେ ଯେପରି ସେହିପରି କାରଣ ଠାକୁର ତାଙ୍କୁ ତାଙ୍କ ପାଦ ତଳେ ଆଶ୍ରୟ ଦେଇଛନ୍ତି । ସେଇଥିପାଇଁ ସଦାସର୍ବଦା ତାଙ୍କ ମୁଖମଣ୍ଡଳ ଉପରେ ଲମ୍ବା ଓଢ଼ଣିଟାଣି ନିଜ ମୁଖ ମଣ୍ଡଳକୁ ଲୁଚାଇ ରଖୁଥିଲେ । ଏହାକୁ ଲକ୍ଷ୍ୟ କରି ଠାକୁର କହୁଥିଲେ, 'ପାଉଁଶ ବୋଳା ବିରାଡି ନିଜ ରୂପ ଲୁଚାଇ କରି ରଖିଛି ।'

ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ବ୍ୟାପକ, ଉଭୟ ଆଧ୍ୟାତ୍ମିକ ଓ ଆଧିଭୌତିକ । ଭଗିନୀ ନିବେଦିତା ସେଇଥିପାଇଁ ଉଲ୍ଲେଖ କରି କହିଥିଲେ, 'ତାଙ୍କ ଭିତରେ ଏକ ନୂତନ ଧାର୍ମିକ ଭାବନା ବା ଅନୁଭବ ଅନ୍ୟ ଭିତରେ ପ୍ରବେଶ କରାଇବାର ତତ୍କାଳିକ କ୍ଷମତା ଥିଲା ।' ଯାହାକୁ ନିଶ୍ଚିତ ଭାବେ ସେ ଠାକୁରଙ୍କ ସାନ୍ନିଧ୍ୟରେ ଆସି ଲାଭ କରିଥିବେ । ଶ୍ରୀମା' ଥିଲେ ଅତୀବ ବୁଦ୍ଧିମତୀ ଏବଂ ଅତି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ସହଜରେ ବୁଝି ତା'ର ସମାଧାନର ସୂତ୍ର ପ୍ରକାଶ କରୁଥିଲେ । ଦିନେ ଠାକୁର ପାଣିହାଟି ମହୋତ୍ସବରେ ଯୋଗଦେବାକୁ ବାହାରିଲେ । ସାଙ୍ଗରେ ଅନେକ ଭକ୍ତ । ଠାକୁର ଯୋଗୀନ୍‌ମା'ଙ୍କୁ ଶ୍ରୀମା'ଙ୍କୁ ଯାଇ ସେଠାକୁ ଯିବାକୁ ଇଚ୍ଛା କରୁଛନ୍ତି କି ବୋଲି ପଚାରିବାକୁ କହିଲେ । ତତ୍‌କ୍ଷଣାତ୍ ଶ୍ରୀମା' ବୁଝିଗଲେ ଯେ ଠାକୁରଙ୍କ ମନରେ ତାଙ୍କର ଯିବା ନେଇ କିଛି ଦ୍ୱିଧା ରହିଛି ଏବଂ ସେ ପାଣିହାଟି ଯିବା ଦଳରେ ଯୋଗ ଦେଲେ ନାହିଁ । ପରବର୍ତ୍ତୀ ସମୟରେ ଠାକୁର ତାଙ୍କ ଦିବ୍ୟ ମନୋଭାବକୁ ବୁଝି ପାରିଥିବାରୁ ତାଙ୍କର ଉଚ୍ଚ ପ୍ରଶଂସା କରିଥିଲେ । କାରଣ ତାଙ୍କର ଭୟ ଥିଲା ଯେ କ୍ଷୁଦ୍ର ହୃଦୟ ସମ୍ପନ୍ନ ଲୋକମାନେ ଉଭୟଙ୍କୁ ସେହି ଉତ୍ସବରେ ଦେଖି ହୁଏତ ତୀର୍ଯ୍ୟକ୍ ଟିକା ଟିପ୍ପଣୀ କରିବେ, 'ହେଇ ଦେଖ; ହଂସ ଓ ହଂସୀ ଯାଉଛନ୍ତି ।' ଥରେ ଜଣେ ଶିଷ୍ୟ ଯେ କି ଏକ ଦାତବ୍ୟ ଚିକିତ୍ସାଳୟ ଖୋଲି ଗରିବ ଲୋକମାନଙ୍କୁ ମାଗଣାରେ ଔଷଧ ଦେଉଥିଲେ ଶ୍ରୀମା'ଙ୍କ ପାଖକୁ ଆସି ଅଭିଯୋଗ ବାଢ଼ି କହିଲେ, 'ମା', ଯେଉଁମାନଙ୍କ ପାଖରେ ଔଷଧ କିଣିବା ପାଇଁ ସମ୍ବଳ ଅଛି, ସେମାନେ ମାଗଣାରେ ନେବାକୁ ଆସୁଛନ୍ତି ଯଦିଓ କେବଳ ଗରିବମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ । ଆମ୍ଭେ ସେମାନଙ୍କୁ ଔଷଧ ଦେବୁକି ?' ଶ୍ରୀମା' କ୍ଷଣେ ମାତ୍ରକ ଚିନ୍ତା କରି କହିଲେ, 'ହେ ପୁତ୍ର; ଏହି ଅଞ୍ଚଳରେ ସମସ୍ତେ ଗରିବ । ତୁମର ଡାକ୍ତରଖାନାର ଉଦ୍ଦେଶ୍ୟ ଜାଣି ମଧ୍ୟ ଯଦି ଲୋକମାନେ ଔଷଧ ଭିକ୍ଷା କରିବାକୁ ଆସୁଛନ୍ତି, ତୁମେ ଦେବା ଉଚିତ୍ ଯଦି ତୁମର

ସେଥିପାଇଁ ସମ୍ବଳ ଅଛି । ଯେ କେହି ଭିକ୍ଷା ମାଗେ, ସେ ଦରିଦ୍ର ।'

ଥରେ କୋଆଲ୍ ପଡ଼ା ଆଶ୍ରମର ଅଧକ୍ଷ ଶ୍ରୀମା'ଙ୍କ ପାଖରେ ଅଭିଯୋଗ କଲେ ଯେ ଆଶ୍ରମର ଅନ୍ତେବାସୀମାନେ ତାଙ୍କ ନିୟନ୍ତ୍ରଣର ବାହାରକୁ ଚାଲି ଯାଉଛନ୍ତି । କାରଣ ସେମାନେ ନିଜ ସଂପର୍କରେ ଭାବି ପାରୁଛନ୍ତି । ଏହା ଛଡ଼ା ସେମାନେ ଯେତେବେଳେ ମା'ଙ୍କ ପାଖକୁ କିମ୍ବା ସ୍ୱାମୀ ସାରଦାନନ୍ଦଙ୍କ ନିକଟକୁ ଆସୁଛନ୍ତି, ସେମାନଙ୍କ ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଯାଉଛି ଓ ଭଲ ଖାଦ୍ୟ ମଧ ମିଳୁଛି । ସେ ମା'ଙ୍କୁ ସଠିକ୍ ନିର୍ଦ୍ଦେଶ ଦେଇ ତାଙ୍କ ନିକଟକୁ ପଠାଇ ଦେବାକୁ କହିଲେ । ଏହାଶୁଣି ଶ୍ରୀମା କହିଲେ, 'କେମିତି ବୋକାଙ୍କ ପରି ତୁମେ କହୁଛ । ଆମର ମୂଳ କଥା ହେଲା ପ୍ରେମ । ଏହି ପ୍ରେମ ମାଧମରେ ହିଁ ଶ୍ରୀରାମକୃଷ୍ଣଙ୍କର ଆଧାତ୍ମିକ ପରିବାର ଗଢ଼ି ଉଠିଛି ଓ ବର୍ଦ୍ଧିତ ହେଉଛି । ଏହାଛଡ଼ା ମୁଁ ହେଉଛି ମା' । ତେଣୁ ସେମାନଙ୍କୁ କିପରି ଖାଇବାକୁ ପିନ୍ଧିବାକୁ ଦିଆଯାଉଛି, ତାହା ତୁମେ ମୋ ସମ୍ମୁଖରେ କିପରି ସମାଲୋଚନା କରିବ ? ହାୟ; ମୁଁ କେତେ ନକାନ୍ଦିଛି, କେତେ ଠାକୁରଙ୍କୁ ପ୍ରାର୍ଥନା ନ କରିଛି ମୋର ସନ୍ତାନ ମାନଙ୍କ ପାଇଁ । ଯାହା ଫଳରେ ତୁମେ ବହୁ ସ୍ଥାନରେ ଆଶ୍ରମ ଦେଖିବାକୁ ପାଉଛ ଏବଂ ଠାକୁରଙ୍କ ଆଶୀର୍ବାଦରୁ ମଠମାନ ଗଢ଼ିଉଠିଛି । ଠାକୁରଙ୍କ ତିରୋଧାନ ପରେ ଶିଷ୍ୟମାନେ ସଂସାର ତ୍ୟାଗ କଲେ, ଗୋଟିଏ ଅସ୍ଥାୟୀ ଜରାଜୀର୍ଣ୍ଣ ଘରେ ରହିଲେ । କେତେଦିନ ସମସ୍ତେ ଏକାଠି ଥିଲେ । ତା'ପରେ ଜଣକ ପରେ ଜଣେ ସ୍ୱାଧୀନ ଭାବରେ ବୁଲିବାକୁ ଲାଗିଲେ ଏବଂ ଏଠି ସେଠି ଇତଃସ୍ତତଃ ହୋଇ ବୁଲିଲେ । ତାହା ଦେଖି ମୋର ଭାରି କଷ୍ଟ ହେଲା । ମୁଁ ଠାକୁରଙ୍କୁ ପ୍ରାର୍ଥନା କରି କହିଲି, 'ହେ ପ୍ରଭୁ ! ତୁମେ ମନୁଷ୍ୟ ଶରୀର ଧାରଣ କରି ଆସିଲ ଏବଂ କିଛି ଶିଷ୍ୟଙ୍କ ସହିତ ଏହି ମରଶରୀରରେ କିଛିଦିନ ଅବସ୍ଥାନ କଲ । ତୁମର ତିରୋଧାନ ପରେ କ'ଣ ସବୁ ଶେଷ ହୋଇଯିବ ? ଯଦି ତାହା ହେବାର ଥିଲା, ତେବେ ତୁମେ ଏତେ କଷ୍ଟ କାହିଁକି କରୁଥିଲ ? ମୁଁ ବନାରସ ଓ ବୃନ୍ଦାବନରେ ବହୁ ସାଧୁ ଲୋକଙ୍କୁ ଭିକ୍ଷାମାଗି ଓ ଗଛତଳେ ଆଶ୍ରୟ ଗ୍ରହଣ କରି ବଞ୍ଚିଥିବାର ଦେଖିଛି । ସେହିପରି ସାଧୁମାନଙ୍କର ଆଦୌ ଅଭାବ ନାହିଁ । ମୁଁ କିନ୍ତୁ ମୋର ସନ୍ତାନମାନେ ଯେଉଁମାନେ ତୁମ ନାମରେ ସଂସାର ତ୍ୟାଗ କରିଛନ୍ତି, ସାମାନ୍ୟ ମୁଠାଏ ଖାଦ୍ୟ ଓ ମୋଟା ଲୁଗା ପାଇଁ ବୁଲୁଥିବାର ଦେଖି ସହି ପାରିବି ନାହିଁ । ତେଣୁ ମୋର ତୁମକୁ ପ୍ରାର୍ଥନା ଯେ ମୋର ସନ୍ତାନମାନେ ଏକାଠି ରୁହନ୍ତୁ, ତୁମକୁ କେନ୍ଦ୍ରକରି ଓ ତୁମ ନାମରେ ବଞ୍ଚନ୍ତୁ । ସଂସାରର ଯେଉଁମାନେ ଦୁଃଖ ଯନ୍ତ୍ରଣାରେ ସଢ଼ୁଛନ୍ତି, ସେମାନେ ସେମାନଙ୍କ ନିକଟକୁ ଆସନ୍ତୁ ଏବଂ ତୁମ କଥା ସେମାନଙ୍କ ଠାରୁ ଶୁଣି ଶାନ୍ତିଲାଭ କରନ୍ତୁ । ସେଇଥିପାଇଁ ତ ତୁମେ ମନୁଷ୍ୟ ଶରୀର

ଧାରଣ କରି ଅବତାର ଭାବେ ଅବତୀର୍ଣ୍ଣ ହୋଇଥିଲ । ମୋର ମନ ମୋର ସନ୍ତାନମାନେ ଇତଃସ୍ତତଃ ବୁଲୁଥିବାର ଦେଖି ଅସ୍ଥିର ହୋଇ ପଡୁଛି ।'

ଶ୍ରୀମା'ଙ୍କର ଏହି ମନ୍ତବ୍ୟ ଶ୍ରୀରାମକୃଷ୍ଣଙ୍କ ନାମରେ ସନ୍ନ୍ୟାସୀ ସଂଘ ଗଠନର ତାତ୍ପର୍ଯ୍ୟ ଓ ଗୁରୁତ୍ୱ ପ୍ରକାଶ କରିବା ସହିତ ଏହାର ଗଠନରେ ଶ୍ରୀମା'ଙ୍କର ଭୂମିକାକୁ ସୂଚିତ କରେ । ଶ୍ରୀମା'ଙ୍କର ସାହସ ଓ ଉପସ୍ଥିତ ବୁଦ୍ଧି ମଧ୍ୟ ଅତୀବ ଚମତ୍କାର । ଜୟରାମବାଟୀରୁ କଲିକତା ଆସୁଥିବା ସମୟରେ ଆରାମବାଗ, ତାରକେଶ୍ୱର ଦେଇ ଆସିବାକୁ ହୁଏ । ସେହି ବାଟରେ ତେଲୋଭେଲୋ ଓ କାଇକଲା ପ୍ରାୟ ଷୋଳ କି.ମି. ଜନମାନବଶୂନ୍ୟ ନିଛାଟିଆ ଜଙ୍ଗଲ ରାସ୍ତା ପଡ଼େ । ଏହି ରାସ୍ତାରେ ସେହି ସମୟରେ ଅନେକ ଡକାୟତ ଲୋକମାନଙ୍କୁ ହାଣକାଟ କରି ଜିନିଷ ଲୁଟି ନିଅନ୍ତି । ଥରେ ଶ୍ରୀମା'ଙ୍କ ସହିତ ଥିବା ଦଳ ସଂଧ୍ୟା ପୂର୍ବରୁ ତାରକେଶ୍ୱରଠାରେ ପହଞ୍ଚିବାକୁ ବାଟ ଚାଲୁଥାନ୍ତି । ଶ୍ରୀମା' ପଛରେ ରହିଯାଇଥାନ୍ତି । ସଂଧ୍ୟା ଆସୁଥିବାର ଦେଖି ଶ୍ରୀମା'ଙ୍କ ସହିତ ଚାଲୁଥିବା ଦଳ ଆଗରେ ଚାଲି ଯାଆନ୍ତି । ଶ୍ରୀମା' ଏକାକୀ, ମନରେ ଭୟ ଓ କ'ଣ କରିବେ ତାଙ୍କ ଆଗରେ କିଛି ଉପାୟ ନଥାଏ । ହଠାତ୍ ସେ ଦେଖିଲେ ଜଣେ କଳାଡ଼େଙ୍ଗା ମଣିଷ କାନ୍ଧରେ ଠେଙ୍ଗା ପକାଇ ତାଙ୍କ ଆଡ଼କୁ ଆସୁଛି । ତା' ପଛକୁ ତାର ଆଉ ଜଣେ ସାଥୀ । ସେମାନେ ପ୍ରାୟ ଶ୍ରୀମା'ଙ୍କ ନିକଟକୁ ଆସି ଯାଇଥିଲେ ଏବଂ ବଡ଼ ପାଟିରେ ପଚାରିଲେ, 'ଏତେ ରାତିରେ ସେଠାରେ କିଏ ଛିଡ଼ା ହୋଇଛି ?'

ଶ୍ରୀମା' ଭୟ ପାଇ ଯାଇଥିଲେ ମଧ୍ୟ ନିଜ ସାହସ ଓ ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି କହିଲେ, 'ପ୍ରିୟ ବାବା ! ମୋର ସହଯାତ୍ରୀମାନେ ମୋତେ ଏକାକୀ ଛାଡ଼ି ଚାଲି ଗଲେ । ଅନ୍ଧାରରେ ମୁଁ ବାଟ ଭୁଲିଗଲା ପରି ଲାଗୁଛି । ମୋତେ ସେମାନଙ୍କ ନିକଟରେ ପହଞ୍ଚିବାରେ ସାହାଯ୍ୟ କରିବ କି ? ତୁମ ଜ୍ୱାଇଁ ରାଣୀ ରାସମଣିଙ୍କ ନିର୍ମିତ ଦକ୍ଷିଣେଶ୍ୱର ମନ୍ଦିରରେ ରହୁଛନ୍ତି । ମୁଁ ତାଙ୍କୁ ଭେଟିବାକୁ ଯାଉଛି । ତୁମେ ଯଦି ମୋ ସହିତ ସେ ପର୍ଯ୍ୟନ୍ତ ଆସ ସେ ଭାରୀ ଖୁସି ହେବେ ।'

ସେହି ଲୋକଟି ପଛରେ ଆସୁଥିବା ବ୍ୟକ୍ତି ସ୍ତ୍ରୀ ଲୋକଟିଏ ଦେଖି ଶ୍ରୀମା' ନିଜ ଭିତରେ ଅଧିକ ଉତ୍ସାହ ପାଇ କହିଲେ, 'ମା; ମୁଁ ତୁମର ଝିଅ ସାରଦା । ମୁଁ ବଡ଼ ଅସୁବିଧାରେ ପଡ଼ିଛି । ଭାଗ୍ୟବଶତଃ ତୁମେ ଓ ବାବା ଆସି ପହଞ୍ଚିଲ । ନଚେତ୍ ମୁଁ କ'ଣ କରିଥାନ୍ତି ଜାଣି ପାରୁ ନାହିଁ ।'

ଶ୍ରୀମା'ଙ୍କର କୋମଳ ବଚନ, ନିରୀହ ବିଶ୍ୱାସ ଓ ଆସ୍ଥା ସ୍ଥାପନ ସେହି ଲୋକଟି ଓ ତା'ର ସ୍ତ୍ରୀ ଉପରେ ଗଭୀର ପ୍ରଭାବ ପକାଇଲା । ସେମାନେ ଶ୍ରୀମା'ଙ୍କୁ ତାଙ୍କର

ନିଜର ଝିଅ ପରି ସାନ୍ତ୍ୱନା ଦେଲେ । ସେ କ୍ଳାନ୍ତ ହୋଇ ପଡ଼ିଥିବାରୁ ତାଙ୍କୁ ନେଇ ତେଲୋଭେଲୋର ଗୋଟିଏ ଦୋକାନରେ କିଛି ଖାଇବାକୁ ଦେଲେ । ସେହି ସ୍ତ୍ରୀଲୋକଟି ଶ୍ରୀମା'ଙ୍କ ପାଇଁ ବିଛଣା କରି ଦେଇ ରାତିସାରା ମା'ଙ୍କୁ ଜଗି ରହିଲା ।

ତା'ପରଦିନ ସକାଳେ ସେମାନେ ମା'ଙ୍କୁ ନେଇ ତାରକେଶ୍ୱର ଗଲେ । ଶ୍ରୀମା' ତାଙ୍କ ଦଳର ଲୋକମାନଙ୍କୁ ସେଠାରେ ଦେଖିବାକୁ ପାଇଲେ । ସେ ଦୁହିଁଙ୍କୁ ନିଜର ନୂତନ 'ବାବା' ଓ ମା' ଭାବରେ ଚିହ୍ନିତ କରିଦେଲେ ଏବଂ ସେମାନେ ତାଙ୍କର କେତେ ଉପକାର କରିଛନ୍ତି ତାହା ମଧ୍ୟ ବର୍ଣ୍ଣନା କଲେ । ଏହି ଘଟଣାକୁ ଉଲ୍ଲେଖ କରି ଶ୍ରୀମା' ପରବର୍ତ୍ତୀ ସମୟରେ କହିଥିଲେ, 'ଗୋଟିଏ ରାତିରେ ଆମେ ଏତେ ପରସ୍ପର ନିବିଡ଼ ହୋଇଗଲୁ ଯେ, ମୁଁ ତାଙ୍କଠାରୁ ବିଦାୟ ନେବା ବେଳେ କାନ୍ଦି ପକାଇଲି । ବହୁ କଷ୍ଟରେ ସେମାନଙ୍କ ପାଖରୁ ଆସିଲି । ମୁଁ ତାଙ୍କୁ ବାରମ୍ବାର ଯେତେବେଳେ ତାଙ୍କର ସୁବିଧା ହେବ ଦକ୍ଷିଣେଶ୍ୱର ଆସିବାକୁ ଅନୁରୋଧ କଲି । ସେମାନେ ବହୁରାସ୍ତା ମୋ ସହିତ ଆସିଥିଲେ । ସ୍ତ୍ରୀଲୋକଟି ରାସ୍ତାକଡ଼ ବିଲରୁ ମୋ ପାଇଁ ଚିନାବାଦାମ ତୋଳି ମୋ କାନିରେ ବାନ୍ଧିଦେଲା ଏବଂ ଲୁହଭରା ଆଖିରେ କହିଲା, 'ଝିଅ ସାରଦା; ତୁମେ ରାତିରେ ଯେଉଁ ମୁଢ଼ି ଖାଉଛ, ଏହାକୁ ମିଶାଇ ଖାଇବ ।' ସେମାନେ ପରେ ଦକ୍ଷିଣେଶ୍ୱର ଆସିଛନ୍ତି ମିଠେଇ ଧରି । ଠାକୁର ମୋ'ଠାରୁ ସବୁ କଥା ଶୁଣି ସେମାନଙ୍କ ଜ୍ୱାଇଁ ପରି ବ୍ୟବହାର କରିଛନ୍ତି । ଯଦିଓ ଏହି ଲୋକମାନେ ବର୍ତ୍ତମାନ ବହୁତ ଭଲ ଓ ଭଦ୍ର, କିନ୍ତୁ ମୋର 'ଡକାଏତ' ପିତା ଅତୀତରେ ଅନେକ ଲୁଣ୍ଠନ କରିଥିବେ ।''

ଠିକ୍ ସେହିପରି ଶ୍ରୀମା' ଦକ୍ଷିଣେଶ୍ୱରଠାରେ ଥିବା ବେଳେ ଗିରିଶ ଚନ୍ଦ୍ର ଘୋଷ ସେଠାରେ ଆସି ପହଞ୍ଚି ତାଙ୍କ ସମ୍ମତିରେ ସନ୍ନ୍ୟାସୀ ହେବାକୁ ଇଚ୍ଛା ପ୍ରକାଶ କରିଛନ୍ତି । କିନ୍ତୁ ଶ୍ରୀମା' ଏଥିପାଇଁ ଅନୁମତି ପ୍ରଦାନ କରି ନାହାନ୍ତି । ଗିରିଶ ସହଜରେ ଛାଡ଼ିବାର ପାତ୍ର ନଥିଲେ । ସେ ପ୍ରାୟ ଅଧଘଣ୍ଟାଏ ଯାଏଁ ନିଜ ସପକ୍ଷରେ ଯୁକ୍ତି ବାଢ଼ିବାକୁ ଲାଗିଲେ । ତାଙ୍କର ଅକାଟ୍ୟ ଯୁକ୍ତି, ମାନସିକ ଦୃଢ଼ତା ଓ ତୀବ୍ର ଭାବାବେଗ ଯେକୌଣସି ସାଧାରଣ ଲୋକର ନିଷ୍ପତ୍ତିକୁ ଭାଙ୍ଗି ଦେଇପାରେ କିନ୍ତୁ ଶ୍ରୀମା' ତାଙ୍କ ନିଷ୍ପତ୍ତିରେ ସ୍ଥିର ଓ ଅଚଳ ରହିଥିଲେ । ଏପରିକି ସ୍ୱାମୀ ବିବେକାନନ୍ଦଙ୍କ ଉପରେ ମୁସଲମାନ୍ ଫକୀରର ଅଭିଶାପ ସଂପର୍କରେ ସ୍ୱାମୀଜୀଙ୍କୁ ବୁଝାଇବାକୁ ଯାଇ କହିଥିଲେ, 'ମୋର ପୁତ୍ର; ଶଙ୍କରାଚାର୍ଯ୍ୟ ମଧ୍ୟ ସେହିପରି ଅଭିଶାପର ଶିକାର ହୋଇଥିଲେ । ଏହା ତୁମ ଶରୀରକୁ ହେଲା କି ଠାକୁରଙ୍କ ପ୍ରତି ଏକାକଥା । ଏହାଛଡ଼ା ଠାକୁର କୌଣସି କଥାକୁ ଭାଙ୍ଗିବାକୁ ଆସି ନଥିଲେ । ସେ ପୂର୍ଣ୍ଣତା ଆଣିବାକୁ ଚାହିଁଥିଲେ । ତାଙ୍କର ସମସ୍ତ ଜ୍ଞାନ ପ୍ରତି

ସମ୍ମାନ ଥିଲା ଏବଂ ସବୁ ପ୍ରକାର ଲକ୍ଷଣକୁ ସେ ବିଶ୍ୱାସ କରୁଥିଲେ ।

ଶ୍ରୀମା'ଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ଥିଲା ତାଙ୍କର ଜୀବନର ସମସ୍ୟା ପ୍ରତି ଉଦାର ଦୃଷ୍ଟିକୋଣ । ସାମାଜିକ ସମ୍ମାନ ଅପେକ୍ଷା ମାନବିକ ସଂବେଦନ ପ୍ରତି ସେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । କଲିକତାରେ ଶ୍ରୀମା' ଯେଉଁ ଘରେ ରହୁଥିଲେ, ସେହି ଘର ସାମନାରେ ଘର ଲୋକଟିଏ ତା'ର ରକ୍ଷିତାକୁ ନେଇ ରହିଥାଏ । ସଭ୍ୟ ସମାଜରେ ଏହିପରି ସଂବଧ ଥିବା ଲୋକମାନଙ୍କ ସହିତ କେହି ସଂପର୍କ ରକ୍ଷା କରନ୍ତି ନାହିଁ ବରଂ ସେମାନେ ସମାଜରୁ ବାସନ୍ଦ ହୋଇଥାନ୍ତି । ଥରେ ସେହି ସ୍ତ୍ରୀଲୋକଟି ରୋଗରେ ପଡ଼ିଲା । ସ୍ତ୍ରୀଲୋକଟି ସହିତ ଅବୈଧ ସଂପର୍କ ରଖିଥିଲେ ମଧ୍ୟ ପୁରୁଷ ତା'ର ସେବାଯତ୍ନ କଲା । ଶ୍ରୀମା' ଏହା ଶୁଣିବାକୁ ପାଇଲେ । ସେ ଜଣେ ମହିଳାଭକ୍ତଙ୍କୁ କହିଲେ, 'ଏହି ପୁରୁଷଟି ସ୍ତ୍ରୀଟିର କେତେ ସେବାଯତ୍ନ କରୁଛି । ମୁଁ ଏପରି କେହି କରିଥିବାର ଦେଖିନାହିଁ । ଏହାକୁ ପ୍ରକୃତ ସେବା କହନ୍ତି । ପ୍ରକୃତ ପ୍ରେମ କହନ୍ତି । ରକ୍ଷଣଶୀଳ ମହିଳାମାନଙ୍କ ନିକଟରେ ମା'ଙ୍କର ଏପରି ବକ୍ତବ୍ୟ ଗ୍ରହଣୀୟ ନଥିଲା । ସେହି ଭଦ୍ରମହିଳା କହିଲେ, ''ଲଜ୍ଜାକର କଥା । ରକ୍ଷିତାର ସେବା । ମୁଁ ଏପରି ଚିନ୍ତା କରି ପାରିବି ନାହିଁ ।''

ଶ୍ରୀମା'ଙ୍କର ନିଷ୍ପାପ ସରଳତା ଆଉ ଗୋଟିଏ ଘଟଣାରୁ ଜଣାପଡ଼େ । ସେ ନିଜେ କହିଛନ୍ତି, 'ମୁଁ ଆଗରୁ ପାଣିଟ୍ୟାପ୍ ଦେଖି ନଥିଲି । ମୁଁ କଲିକତା ଆସିଥିବା ବେଳେ ଜଣକ ଘରକୁ ଯାଇଥିଲି । ଘରର ପାଣିଟ୍ୟାପ୍ ଖୋଲି ଦେବାରୁ ସିଁ ସିଁ ଶବ୍ଦ ହେଲା ଯେପରି ଟ୍ୟାପ୍‌ରୁ ସାପଟିଏ ବାହାରିବ । ମୁଁ ଭୟରେ ଥରିବାକୁ ଲାଗିଲି ଏବଂ ସେହି କୋଠରିରୁ ଦୌଡ଼ି ପଳାଇଲି । ଘରର ଅନ୍ୟ ସ୍ତ୍ରୀ ଲୋକମାନଙ୍କ ପାଖକୁ ଆସି ଚିତ୍କାର କଲି, 'ପାଣି ନଳୀ ଭିତରେ ସାପଟିଏ ଅଛି । ଏହା ସିଁ ସିଁ କରୁଛି ।' ସେମାନେ ହସିବାକୁ ଲାଗିଲେ ଏବଂ କହିଲେ, 'ସେଠାରେ କୌଣସି ସାପନାହିଁ । ଆଦୌ ଡର ନାହିଁ । ପାଣି ଜୋର୍‌ରେ ବାହାରକୁ ଆସୁଥିବାରୁ ପବନ ରହିଥିବା ଯୋଗୁଁ ସିଁ ସିଁ ଶବ୍ଦ ହେଉଛି ।' ତା'ପରେ ଆମେ ହସିଲୁ ଯେ ଆମର ଅଣ୍ଟାପିଠି ଦରଜ ହୋଇଗଲା ।

ଶ୍ରୀମା' ନିଜର ଦୃଷ୍ଟିକୋଣରେ ଉଦାର ଥିଲେ ମଧ୍ୟ ସ୍ଥାନୀୟ ଅଞ୍ଚଳର ପ୍ରଥା, ବିଶ୍ୱାସ ଓ ପରଂପରା ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରୁଥିଲେ । ଗୋଲାପମା' ତାଙ୍କୁ କହିଲେ ଯେ ଗଙ୍ଗାକୁ ଗାଧୋଇ ଯିବା ସମୟରେ ସେ ତେଲ ଲଗାଇଯିବେ ! କିନ୍ତୁ ସେ ତାହା କରନ୍ତି ନାହିଁ । ସେ କହିବେ, 'ଯଦି ମୁଁ ଏପରି କରିବି, ତେବେ ଅନ୍ୟ ମାନେ ମୋ ଉଦାହରଣରୁ ଶିଖି ସେହିପରି କରିବେ ଏବଂ ଦେହରେ ତେଲ ମାଲିସ୍ କରି ଗଙ୍ଗାରେ ଗାଧୋଇବା ଠିକ୍

ହେବ ନାହିଁ ।' ଗଙ୍ଗାନଦୀରୁ ଗାଧୋଇ ଫେରିବା ବାଟରେ ସେ ରାସ୍ତାକଡ଼ରେ ଥିବା ବରଗଛରେ ପାଣି ଦେଇ ନମସ୍କାର କରୁଥିଲେ । ଚୈତ୍ରମାସ ଅର୍ଥାତ୍ ମାର୍ଚ୍ଚ-ଏପ୍ରିଲ୍‌ରେ ସେ କୌଣସି ବାହାର ସ୍ଥାନକୁ ଯାତ୍ରା କରୁ ନଥିଲେ ।

ଥରେ ଜଣେ ମହିଳା ଭକ୍ତ ପଚାରିଲେ ସ୍ତ୍ରୀଲୋକମାନେ ସେମାନଙ୍କର ମାସିକିଆ ଋତୁସ୍ରାବ ସମୟରେ ନିଜକୁ ଅପବିତ୍ର ମନେ କରି କୌଣସି ପ୍ରକାର ରୋଷେଇ, ଉପାସନା ଓ ପବିତ୍ର କାର୍ଯ୍ୟ କରନ୍ତି ନାହିଁ । ଏହା କେତେଦୂର ଠିକ୍ ? ଏ ବିଷୟରେ ଠାକୁର ଯାହା କହିଥିଲେ ସେହି କଥାକୁ ଶ୍ରୀମା' ଦୋହରାଇ କହିଲେ, 'ତାହା ଦ୍ୱାରା ତୁମେ କୌଣସି ପାପକାର୍ଯ୍ୟ କରୁନାହଁ । ତୁମେ କହି ପାରିବ କି ଶରୀରର କେଉଁ ଅଂଶ ଅପବିତ୍ର- ଚର୍ମ, ମାଂସ, ହାଡ଼ ଅବା ମଜ୍ଜା ? ଜାଣି ରଖ ପବିତ୍ର ଓ ଅପବିତ୍ର ଭାବନା କେବଳ ମନରେ ବାସ କରେ । ବାହ୍ୟ ଜଗତରେ ଅପବିତ୍ର କିଛି ନାହିଁ ।' ପୁନଶ୍ଚ ସେ କହିଲେ, 'ହଁ, ଏହା କରାଯାଇପାରେ ଯଦି ମନରେ ଠାକୁରଙ୍କ ପ୍ରତି ଐକାନ୍ତିକ ଭକ୍ତି ଥାଏ ।'

ଶ୍ରୀମା'ଙ୍କର ବୟସ ଅଧିକା ହୋଇଯିବାରୁ ରୋଷେଇ କରିବା ପାଇଁ ଜଣେ ବ୍ରାହ୍ମଣୀ ସ୍ତ୍ରୀଲୋକକୁ ରଖାଗଲା । ଶ୍ରୀମା' ତାଙ୍କୁ ଖୁଡ଼ୀ ବୋଲି ଡାକୁଥିଲେ । ଦୁର୍ଗା ପୂଜା ପରେ ଠାକୁର ବିସର୍ଜନ ହେବା ପରେ ଶ୍ରୀମା' ତାଙ୍କୁ ପ୍ରଣାମ କରିବାରୁ ସେ ତାଙ୍କୁ ବିରୋଧ କଲେ । ଶ୍ରୀମା' ତାଙ୍କୁ ତାଙ୍କର 'ଖୁଡ଼ୀ' ବୋଲି କହି ତାଙ୍କ ବିରୋଧକୁ ଏଡ଼ାଇ ଗଲେ ।

ମା'ଙ୍କ ଘରେ ଗୋଟିଏ ଶାରୀ ଥାଏ । ତା' ନାମ ଗଙ୍ଗାରାମ । ଗଙ୍ଗାରାମ, 'ହରେକୃଷ୍ଣ ହରେକୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ । ହରେ ରାମ ହରେ ରାମ ରାମ ରାମ ହରେ ହରେ' କହେ । ସେ ବ୍ରହ୍ମଚାରୀ ମାନଙ୍କଠାରୁ ଶୁଣି ଶ୍ରୀମା'ଙ୍କୁ 'ମା' ମା' ଡାକେ । କେବେକେବେ ସେ ମା' ମା' ଚିତ୍କାର କରେ । ମା' ତା ଡାକ ଶୁଣି ତା' ପାଖକୁ ଯାଇ ତାକୁ ଖାଇବାକୁ ଦିଅନ୍ତି ।

ଦିନେ ଭଗିନୀ ନିବେଦିତା ଓ ଭଗିନୀ କ୍ରିଷ୍ଟାଇନ ମା'ଙ୍କ ନିକଟକୁ ଆସି ନୂଆ କରି ଶିକ୍ଷା କରୁଥିବା ବଂଗଳାଭାଷା ପରୀକ୍ଷା ଦେବାକୁ ଚାହିଁଲେ । ସେମାନେ ମା'ଙ୍କୁ କହିଲେ, ''ଦିବ୍ୟ ଜନନୀ ! ତୁମେ ଆମର କାଳୀ ।'' ହସି ହସି ମା' କହିଲେ, 'ଓହୋ ! ମୁଁ ତୁମ ସମ୍ମୁଖରେ କାଳୀ ହୋଇ ପାରିବି ନାହିଁ । କାରଣ ମୋତେ ମୋର ଜିଭକୁ ବାହାର କରିବାକୁ ପଡ଼ିବ ।''

ଥରେ ଜଣେ ଭକ୍ତ ମା'ଙ୍କୁ ଦୀକ୍ଷା ସଂପର୍କରେ ପଚାରିଲେ, 'ଜଣେ କାହିଁକି ଦୀକ୍ଷା ନେଇ ମନ୍ତ୍ର ଜପ କରିବ ? ମନ୍ତ୍ର ଜପ କରିବା ଅପେକ୍ଷା ଈଶ୍ୱରଙ୍କର ଯେକୌଣସି

ନାମ ବାରମ୍ବାର କହିପାରେ । ଏହା କ'ଣ ଯଥେଷ୍ଟ ନୁହେଁ ?' ଶ୍ରୀମା' ଉତ୍ତର ଦେଲେ, 'ମନ୍ତ୍ର ଶରୀରକୁ ପବିତ୍ର କରେ । ମନ୍ତ୍ର ଉଚ୍ଚାରଣ କରି ବ୍ୟକ୍ତି ପବିତ୍ର ହୋଇଯାଏ । ଶରୀର ପବିତ୍ର ହେବାପାଇଁ ମନ୍ତ୍ର ଆବଶ୍ୟକ, ଅନ୍ୟ କିଛି ପାଇଁ ହୁଏତ ନ ହୋଇପାରେ ।' ଜପକୁ ବୃକ୍ଷର ବୀଜ ସହିତ ତୁଳନା କରି ଶ୍ରୀମା' କହିଲେ, 'ପ୍ରଭୁ ଙ୍କ ନାମର ମଞ୍ଜି କେତେ କ୍ଷୁଦ୍ର ! କିନ୍ତୁ ଏହା ଦିବ୍ୟ ଭାବନା, ଭକ୍ତି ଓ ପ୍ରେମ ଆଣେ । ଜପ ଓ ସାଧନା ଦ୍ୱାରା କର୍ମବନ୍ଧନ କ୍ରମଶ କ୍ଷୟ ହୋଇଯାଏ । କିନ୍ତୁ ଈଶ୍ୱରଙ୍କ ପ୍ରେମ ଓ ଭକ୍ତି ଈଶ୍ୱରଙ୍କୁ ପାଇବାରେ ସାହାଯ୍ୟ କରେ । ଗୋପାଳ ବାଳକମାନେ କ'ଣ କୃଷ୍ଣଙ୍କୁ ଜପ ବା ଧ୍ୟାନ କରି ଲାଭ କରିଥିଲେ କିମ୍ବା ତାଙ୍କର ନିକଟତମ ଲୋକବୋଲି ପାଇଥିଲେ ଯାହା ଫଳରେ 'ଏଠାକୁ ଆସ' 'ଏହା ନିଅ' 'ଏହାକୁ ଖାଅ' ବୋଲି କହି ପାରୁଥିଲେ । ଏପରିକି ଉପାସ କରି କଠୋର ବ୍ରତ ପାଳନ କରିବାକୁ ସେ ପସନ୍ଦ କରୁନଥିଲେ । କହୁଥିଲେ, 'ଶରୀରକୁ ଅଳ୍ପ ଖାଦ୍ୟଦେଇ ଶାନ୍ତ କରି ଈଶ୍ୱରଙ୍କୁ ଡାକ ।'

ଶ୍ରୀମା' ନିଜେ ଏକାଦଶୀବ୍ରତ ପାଳନ କରୁଥିଲେ । ସେ ଦିନ ଖାଦ୍ୟ ଭାବରେ ଲୁଚି ଗ୍ରହଣ କରୁଥିଲେ । ଛୋଟ ଧଡ଼ିଥିବା ଲମ୍ବା ଲୁଗା ପିନ୍ଧୁଥିଲେ । ବ୍ଲାଉଜ୍, କାଞ୍ଚୁଲା ଇତ୍ୟାଦି ପିନ୍ଧୁ ନଥିଲେ । ଟଙ୍କାପଇସା ପ୍ରତି ତାଙ୍କର ସଂପୃକ୍ତି ନଥିଲା କହିଲେ ଭୁଲ୍ ହେବନି । ଠାକୁରଙ୍କ ପରି ତାଙ୍କର ଟଙ୍କା ବା ଧାତୁଦ୍ରବ୍ୟ କୌଣସି ପ୍ରକାର ବିକାର ନଥିଲା । ଯେତେବେଳେ ଟଙ୍କା ବା ଅଳଙ୍କାର ତାଙ୍କ ନିକଟକୁ ଆସିଛି, ସେ ତାହାକୁ ଲକ୍ଷ୍ମୀଙ୍କର ଧନ ଭାବି ମୁଣ୍ଡରେ ଛୁଇଁଛନ୍ତି । ଠାକୁର ଓ ମା'ଙ୍କର ବିଚାରକୁ ତୁଳନା କରି କେହି କେହି ପଚାରିଲେ ମା' କହନ୍ତି, 'ଠାକୁରଙ୍କ ସହିତ ମୋତେ ତୁଳନା କରୁଛ ?' ପ୍ରିୟ ପୁତ୍ର ମୋର ! ମୁଁ ହେଉଛି ନାରୀ । ଠାକୁର ମୋତେ ସୁନା ଅଳଙ୍କାର ପିନ୍ଧିବାର ବ୍ୟବସ୍ଥା କରି ଦେଇଥିଲେ ।' ଏସବୁ ସତ୍ତ୍ୱେ ତାଙ୍କର ଏହା ପ୍ରତି ଆଦୌ ଆସକ୍ତି ନଥିଲା କିମ୍ବା ଟଙ୍କା ପଇସା ଉପରେ ଅଧିକ ଗୁରୁତ୍ୱ ଦେଉନଥିଲେ । ଏପରିକି ଟଙ୍କା ପଇସାର କୌଣସି ହିସାବ ମଧ୍ୟ ରଖୁ ନଥିଲେ । କିନ୍ତୁ ଖର୍ଚ୍ଚରେ ମିତବ୍ୟୟିତା ଥିଲା ତାଙ୍କର ଗୁଣ । ତାଙ୍କ ଘର ଉପରେ ୪ଟଙ୍କାର ପଞ୍ଚାୟତ ଟିକସ ବସିବାରୁ ସେ ତାହାକୁ କମ୍ କରିବାକୁ ଦାବି କରିଥିଲେ ।

ଶୁଦ୍ଧ କ୍ଷୀର ସଂଗ୍ରହ କରିବା ସଂପର୍କରେ ଏକ ଘଟଣା ମା'ଙ୍କର ମିତବ୍ୟୟିତାର ପ୍ରମାଣ ଦିଏ । ଜୟରାମବାଟୀରେ ମା'ଙ୍କ ପାଇଁ ଶୁଦ୍ଧକ୍ଷୀର କିଣିବା ପାଇଁ ସ୍ୱାମୀଜ୍ଞାନାନନ୍ଦ ଗଉଡ଼କୁ ମୂଲ୍ୟର ଦୁଇଗୁଣ ଦେଇଥାନ୍ତି । ଏହା ଶୁଣି ମା' ବିରୋଧ କରି କହିଲେ, 'ତୁମେ କ'ଣ କରୁଛ ? ଏଠାରେ ସେଇ ଦୁଧ ଗୋଟେ ପଇସାରେ ମିଳୁଛି ଏବଂ ତୁମେ ତାହାର ଦୁଇଗୁଣ ଦେବା ଫଳରେ, ତୁମେ ଦୁଧ ମୂଲ୍ୟକୁ ବଢ଼ାଇ ଦେଉଛ ।

ଏହା ଫଳରେ ଗରିବ ଲୋକମାନେ କିଣି ପାରିବେ ନାହିଁ । ଏବଂ ଗଉଡ଼ମାନେ କ୍ଷୀରରେ ନିଶ୍ଚିତ ପାଣି ମିଶାଇବେ । ଅଧିକା ପଇସା ଦେଲେ ଯେ ସେମାନେ କ୍ଷୀରରେ ପାଣି ମିଶାଇବେ ନାହିଁ, ଏପରି ଭାବିବା ଭୁଲ୍ । ବରଂ ସେମାନେ ଅଧିକା ପାଣି ମିଶାଇ ଅଧିକା ଟଙ୍କା ରୋଜଗାର କରିବେ । ଦିନେ ମା'ଙ୍କ ପାଖକୁ ଏହି ଭଲ କ୍ଷୀରକୁ ଜଣେ ବ୍ରହ୍ମଚାରୀ ଆଣି ଦେଖାଇଲେ । ଦେଖିଲା ବେଳକୁ ସେଥିରେ ମାଛଟିଏ । ପାଣି ମିଶିଥିବାର, ଅକାଟ୍ୟ ପ୍ରମାଣ । ଏହି କ୍ଷୀରକୁ ଫିଙ୍ଗିଦେବାକୁ ଗଲାବେଳେ ମା' ତାହା କରିବାକୁ ବାରଣ କଲେ ଏବଂ କହିଲେ ଠାକୁରଙ୍କୁ ସମର୍ପଣ ନ କରି ଅନ୍ୟମାନେ ବ୍ୟବହାର କରି ପାରିବେ ।

ଶ୍ରୀମା'ଙ୍କର ଉପସ୍ଥିତ ବୁଦ୍ଧି ବହୁ ସାଧାରଣ ଘଟଣାରେ ଦେଖାଯାଇଛି । ଜୟରାମବାଟୀ ଘରକୁ ଜଣେ ପରିବା ବିକାଳୀ ସ୍ତ୍ରୀ ପ୍ରତ୍ୟେକ ଦିନ ପରିବା ଆଣି କରି ଦିଏ । ସେ କିନ୍ତୁ ଅଧିକା ପଇସା ନିଏ । ତେଣୁ ତାହା ଠାରୁ ପରିବା ନ କିଣିବା ପାଇଁ ଅନ୍ୟମାନେ ସ୍ଥିର କଲେ । ଏହା ଶୁଣି ଶ୍ରୀମା' କହିଲେ, 'ଆଦୌ ସେମିତି କର ନାହିଁ । ସେ ଆମର ଆବଶ୍ୟକତା ପ୍ରତି ଯତ୍ନଶୀଳ । ଏଠାରେ ଯାହା ସବୁ ମିଳୁନି, ସେ ଆମ କହିବା ମୁତାବକ ସବୁ ପ୍ରକାର ପରିବା ଆଣି ଦେଉଥିବାର ତୁମେ କ'ଣ ଦେଖୁନାହଁ ? ଆମ ଦରକାର ବେଳେ ସେ ଆମର ବନ୍ଧୁ । ସେ ଆମର ଭଣ୍ଡାର ରକ୍ଷକ ।'

ସେ କୌଣସି ଜିନିଷକୁ ସାଧାରଣ ଭାବେ ନଷ୍ଟ କରିବାକୁ ଚାହୁଁନଥିଲେ । ଥରେ ଜଣେ ଭକ୍ତ ଫଳ ପାଛିଏ ଆଣିଥିଲେ । ଫଳ ଓଜାଡ଼ିଦେଇ ପାଛିଆଟିକୁ କେହି ଫିଙ୍ଗି ଦେଇଥିବାର ଶ୍ରୀମା' ଦେଖିଲେ । ଏହା ଭଲ ଓ ବ୍ୟବହାର ଯୋଗ୍ୟ ବୋଲି ମା' ଦେଖିଥିଲେ । ସେ ତାକୁ ଅଣାଇଲେ, ଧୋଇଧାଇ ଭବିଷ୍ୟତର ବ୍ୟବହାର ପାଇଁ ରଖିଲେ । ଥରେ ଜଣେ ଶିଷ୍ୟ ପ୍ରସ୍ତୁତ ଖେଚୁଡ଼ିକୁ ଫିଙ୍ଗି ଦେବାକୁ ଯାଉଥିଲେ । ଏହା ଦେଖି ଶ୍ରୀମା' ତାହାର ବିରୋଧ କଲେ । ଗୋଟିଏ ଭିକାରି ସ୍ତ୍ରୀଲୋକକୁ ତାହାକୁ ଦେବାରୁ ସେ ଖୁସିରେ ଗ୍ରହଣ କଲା । ସେ କହିଥିଲେ, 'ପ୍ରତ୍ୟେକଙ୍କୁ ନିଜ ନିଜର ଆବଶ୍ୟକତା ମିଳିବା ଦରକାର । ଯାହା ମଣିଷ ଖାଇ ପାରିବ, ତାହା ଗୋରୁଙ୍କୁ ଦେବା ଠିକ୍ ନୁହେଁ । ଯାହାକୁ ଗୋରୁ ଖାଇ ନପାରିବେ, ତାହାକୁ କୁକୁରକୁ ଦେବା ଓ ଯାହା ଗୋରୁ ଓ କୁକୁର ଖାଇ ନ ପାରିବେ, ତାହାକୁ ପୋଖରୀକୁ ଫିଙ୍ଗିଦେବ । ମାଛମାନେ ଖାଇବେ । କୌଣସି ଖାଦ୍ୟକୁ ନଷ୍ଟ କରିବ ନାହିଁ ।'

ഠഠ

# ରାମକୃଷ୍ଣ ସଂଘ ଗଠନରେ

ସ୍ୱାମୀ ବିବେକାନନ୍ଦ କହିଥିଲେ କୌଣସି ମହାନ୍ କାର୍ଯ୍ୟ ତ୍ୟାଗ ବ୍ୟତୀତ ହୋଇପାରେ ନାହିଁ । ଶ୍ରୀରାମକୃଷ୍ଣଙ୍କ ତିରୋଧାନ ପରେ, ତାଙ୍କ ଦ୍ୱାରା ଦୀକ୍ଷିତ ଶିଷ୍ୟମାନେ ସାହାଭରସା ହରାଇ ଇତଃସ୍ତତ ବୁଲିବାକୁ ଲାଗିଥିଲେ । ନଥିଲା ଖାଦ୍ୟର କୌଣସି ବନ୍ଦୋବସ୍ତ କିମ୍ବା ରହିବା ପାଇଁ ବାସ । ଶ୍ରୀ ରାମକୃଷ୍ଣଙ୍କ ନାମରେ ସଂଘ ଗଠନ କରି ଏହାକୁ ଏକ ବିରାଟ ଆଧ୍ୟାତ୍ମିକ ଆନ୍ଦୋଳନର ରୂପ ଦେବାରେ ସ୍ୱାମୀ ବିବେକାନନ୍ଦ (ନରେନ୍ଦ୍ର ନାଥ)ଙ୍କର ସ୍ୱପ୍ନ ଓ ସମ୍ଭାବନାକୁ ଯେପରି ସମସ୍ତେ ଅସ୍ୱୀକାର କରୁଥିଲେ । କେବଳ ଜଣେ ମାତ୍ର ଥିଲେ ସାହା ଦେବାକୁ, ଆଶ୍ୱାସନା ଦେବାକୁ । ତାଙ୍କରି ଠାରୁ ମିଳିଥିଲା ଆଶା ଓ ଆଶୀର୍ବାଦ । ସେ ଥିଲେ ଶ୍ରୀମା' ସାରଦା ।

୧୮୯୦ ମସିହାରେ ବୋଧଗୟା ଦର୍ଶନ କରିବା ସମୟରେ ଶ୍ରୀମା' ଠାକୁରଙ୍କୁ ପ୍ରାର୍ଥନା କରିଥିଲେ, ତାଙ୍କର ଏହି ସନ୍ନ୍ୟାସୀ ଶିଷ୍ୟମାନେ ଯେପରି ଏକତ୍ର ବାସ କରି ତାଙ୍କ ନାମ ଓ ବାର୍ତ୍ତାର ମହିମାକୁ ପ୍ରଚାର କରନ୍ତି । ଶ୍ରୀମା'ଙ୍କର ଏହି ଆକୁଳ ପ୍ରାର୍ଥନାର ସାକାର ରୂପ ରାମକୃଷ୍ଣ ମଠ ଭାବରେ ରୂପ ପରିଗ୍ରହ କଲା । ୧୮୯୮ ନଭେମ୍ବର ମାସ ୧୨ ତାରିଖ ଠିକ୍ ଶ୍ରୀ ଶ୍ରୀ କାଳୀପୂଜାର ପୂର୍ବଦିନ ଶ୍ରୀମା' ସାରଦା ବେଲୁଡ଼୍ ଯାଇ ସେଠାରେ ଠାକୁରଙ୍କର ପୂଜାର୍ଚ୍ଚନା କଲେ । ଆରମ୍ଭ ହେଲା ବେଲୁଡ଼୍ ମଠ । ଶ୍ରୀମା'ଙ୍କ ମନରେ ଭରି ଯାଇଥିଲା ଗଭୀର ସନ୍ତୋଷ । ତାଙ୍କର ସନ୍ତାନମାନେ ଇତଃସ୍ତତ ନ ବୁଲି ଗୋଟିଏ ସ୍ଥାନରେ ରହି ଠାକୁରଙ୍କର କାର୍ଯ୍ୟ କରିପାରିବେ । ସଂଘକୁ ଗଠନ କରିବା, ନିର୍ଦ୍ଦେଶ ଦେବା, ଆଧ୍ୟାତ୍ମିକ ଚେତନାକୁ ବ୍ୟାପ୍ତ କରିବାରେ ଶ୍ରୀମା'ଙ୍କର ଯୋଗଦାନ ଅବର୍ଣ୍ଣନୀୟ । ସେ ହିଁ ଜୀବନୀ ଶକ୍ତି, କ୍ରିୟାଶକ୍ତି, ଆଧ୍ୟାତ୍ମିକ ଶକ୍ତି ଭାବରେ କାର୍ଯ୍ୟ କରିଛନ୍ତି । ଠାକୁରଙ୍କ ତିରୋଧାନର ଅଳ୍ପଦିନ ପରେ ବୃନ୍ଦାବନଠାରେ ଯୋଗୀନ୍ (ସ୍ୱାମୀ ଯୋଗାନନ୍ଦ)ଙ୍କୁ ସନ୍ନ୍ୟାସୀ ମନ୍ତ୍ରରେ ଦୀକ୍ଷା ଦେଇ ଗୁରୁର ଆସନରେ ଅଧିରୂଢ଼ା ହୋଇଛନ୍ତି ।

ସ୍ୱାମୀ ବିବେକାନନ୍ଦଙ୍କର ମନ ଯେତେବେଳେ ଏ ଦେଶରେ ନବଜାଗରଣ ଆଣିବା ପାଇଁ ବ୍ୟାକୁଳିତ ହୋଇଛି ଏବଂ ଚିକାଗୋ ଧର୍ମ ମହାସଭାରେ ଯୋଗ

ଦେବାକୁ ଉତ୍କଣ୍ଠିତ ହୋଇଉଠିଛି, ତାଙ୍କ ଉତ୍କଣ୍ଠାର ଅବସାନ ଘଟିଛି ଶ୍ରୀମା' ସାରଦା ଦେବୀଙ୍କର ଆଶୀର୍ବାଦ ପାଇ । ସେ ମନରେ କୌଣସି ସନ୍ଦେହ ନ କରି ଗନ୍ତବ୍ୟ ସ୍ଥଳରେ ପହଞ୍ଚିବା ଲକ୍ଷ୍ୟରେ ଆଗେଇ ଯାଇଛନ୍ତି । ଆମେରିକାରୁ ଫେରିଆସି ୧୮୯୭ ମସିହାରେ ଆରମ୍ଭ କରିଛନ୍ତି ରାମକୃଷ୍ଣ ମିସନ ଓ ୧୮୯୮ରେ ବେଲୁଡ଼ ମଠ । ଶ୍ରୀମା' ସାରଦା ହୋଇଛନ୍ତି ଏହାର ପ୍ରଧାନ ପ୍ରେରଣାଦାୟିନୀ ଯାହା ଫଳରେ ରାମକୃଷ୍ଣ ସଂଘ ବାସ୍ତବିକ ସଂଘରେ ପରିଣତ ହୋଇପାରିଛି । କେବଳ ରାମକୃଷ୍ଣ ମଠ ଓ ମିସନ ପ୍ରତିଷ୍ଠାର ପ୍ରେରଣାଦାୟିନୀ ହୋଇ ନାହାନ୍ତି ବରଂ ତାଙ୍କର ୧୯୨୦ ମସିହାରେ ମହାସମାଧି ହେବା ପର୍ଯ୍ୟନ୍ତ ସେ ସଂଘର ମୂଳଉତ୍ସ ଓ ପଥ ପ୍ରଦର୍ଶକ ଭାବରେ କାର୍ଯ୍ୟ କରିଛନ୍ତି । ମଠ ଓ ମିସନର ପରିଚାଳନା ସନ୍ନ୍ୟାସୀମାନଙ୍କ ହସ୍ତରେ ନ୍ୟସ୍ତ ଥିଲେ ମଧ୍ୟ, ଶ୍ରୀମା'ଙ୍କର ନିଷ୍ପତ୍ତି ସଂଗଠନର ବିକାଶ ଓ ପ୍ରଗତି ପାଇଁ ଶେଷ କଥା ବୋଲି ସମସ୍ତେ ଗ୍ରହଣ କରିଛନ୍ତି । ଦୁର୍ଗାପୂଜା ସମୟରେ ପଶୁବଳି ପ୍ରଥା ବନ୍ଦ କରିବା ସଂପର୍କରେ ତାଙ୍କର ସିଦ୍ଧାନ୍ତକୁ ହିଁ ଗ୍ରହଣ କରାଯାଇଛି । ସେ ହିଁ ସମାଜ ସେବା କାର୍ଯ୍ୟକୁ ଅନୁମୋଦନ କରି ଏହା ଠାକୁରଙ୍କର କାର୍ଯ୍ୟ ବୋଲି କହିଛନ୍ତି । ମାୟାବତୀ ବେଦାନ୍ତ ଆଶ୍ରମରେ ମୂର୍ତ୍ତିପୂଜାର ଆବଶ୍ୟକତା ନାହିଁ ବୋଲି,ଶ୍ରୀମା' ହିଁ କହି ସ୍ୱାମୀ ବିବେକାନନ୍ଦଙ୍କର ବିଚାର ଓ କାର୍ଯ୍ୟକୁ ସମର୍ଥନ କରିବାରୁ ଦ୍ୱନ୍ଦ୍ୱର ଅବସାନ ଘଟିଛି । ମୁର୍ସିଦାବାଦରେ ରିଲିଫ୍ କାର୍ଯ୍ୟ କରିବାବେଳେ ସ୍ୱାମୀ ଅଖଣ୍ଡାନନ୍ଦଙ୍କର ସ୍ୱାସ୍ଥ୍ୟର ଅବନତି ଘଟିବାରୁ, ତାଙ୍କୁ ଫେରି ଆସିବାକୁ ଶ୍ରୀମା' ନିର୍ଦ୍ଦେଶ ଦେଇଛନ୍ତି ଓ ତାହାକୁ ସ୍ୱାମୀ ଅଖଣ୍ଡାନନ୍ଦ ଗ୍ରହଣ କରିଛନ୍ତି ।

କଲିକତା ପ୍ଲେଗ ଆକ୍ରାନ୍ତ ଲୋକମାନଙ୍କର ସେବାପାଇଁ ଅର୍ଥ ଆବଶ୍ୟକ ହେବାରୁ ବେଲୁଡମଠ ପାଇଁ କିଣା ଯାଇଥିବା ଜମିକୁ ବିକ୍ରୀ କରିଦେବା ପାଇଁ ସ୍ୱାମୀଜୀଙ୍କର ଆଗ୍ରହକୁ ଶ୍ରୀମା' ଅନୁମୋଦନ କରି ପାରିନାହାନ୍ତି । ଅବଶ୍ୟ ପରେ ଅର୍ଥ ଆସିଛି ସେହି ସେବା କାର୍ଯ୍ୟ ପାଇଁ । ଶ୍ରୀମା' ନିବେଦିତାଙ୍କ ବିଦ୍ୟାଳୟର ଶୁଭ ପ୍ରଦାନ କରି ନାରୀଶିକ୍ଷା ପାଇଁ ରାମକୃଷ୍ଣ ସଂଘର ପ୍ରଚେଷ୍ଟାକୁ ସ୍ୱୀକୃତି ପ୍ରଦାନ କରିଛନ୍ତି ଏବଂ ନାରୀମାନଙ୍କର ସନ୍ନ୍ୟାସିନୀ ଭାବରେ ବଞ୍ଚିବାର ଆଗ୍ରହକୁ ଗ୍ରହଣ କରିଛନ୍ତି । ଶ୍ରୀମା' କାହାକୁ ତାହାର ଦୋଷ ପାଇଁ ଦଣ୍ଡ ଦେଇ ନାହାନ୍ତି ବରଂ ତାଙ୍କୁ ସୁରକ୍ଷା ପ୍ରଦାନ କରି ସଂଶୋଧିତ ହେବାର ସୁଯୋଗ ସୃଷ୍ଟି କରିଛନ୍ତି ।

ସଂଘର ଆଧ୍ୟାତ୍ମିକ ଗୁରୁ ଭାବରେ ସେ ସମସ୍ତଙ୍କୁ ଦୀକ୍ଷା ପ୍ରଦାନ କରିଛନ୍ତି । କୌଣସି ବାଛବିଚାର ତାଙ୍କ ନିକଟରେ ସ୍ଥାନ ପାଇ ନାହିଁ । ଏପରିକି ପାରଂପାରିକ ପ୍ରଥାକୁ ସେ ଭାଙ୍ଗି ଦେଇଛନ୍ତି । ପ୍ରଥମେ ସ୍ୱାମୀ ବିବେକାନନ୍ଦ ବେଲୁଡ଼ ମଠ ଠାରେ

ଦୁର୍ଗାପୂଜା ଆରମ୍ଭ କରିଛନ୍ତି ୧୯୦୧ ମସିହାରେ । ଏହି ପୂଜା କରିବାକୁ ରକ୍ଷଣଶୀଳ ମାନଙ୍କର ବିରୋଧକୁ ଭ୍ରୁକ୍ଷେପ ନ କରି ଶ୍ରୀମା' ସେଥିରେ କେବଳ ଯୋଗ ଦେଇ ନାହାଁନ୍ତି ବରଂ ତାଙ୍କ ନାମରେ ହିଁ ଏହି ପୂଜା ରାମକୃଷ୍ଣ ସଂଘରେ ଏଯାବତ୍ ଚଳିଆସୁଛି । ମଠରେ ସମସ୍ତ ପ୍ରକାର ଧାର୍ମିକ ଉତ୍ସବାନୁଷ୍ଠାନ ତାଙ୍କ ନାମରେ ହିଁ ଚାଲିଛି । କାରଣ ଶ୍ରୀମା'ସାରଦା ସମଗ୍ର ସଂଘର ସଂଘ ଜନନୀ । ତାଙ୍କ ଜୀବନର ଛତ୍ରେ ଛତ୍ରେ ତାଙ୍କର ଜନନୀ, ସଂଘ ଜନନୀ, ବିଶ୍ୱ ଜନନୀ ଓ ଦିବ୍ୟ ଜନନୀର ରୂପ ଦେଖିବାକୁ ମିଳେ । ସେଇଥିପାଇଁ ସେ ସଂଘର ବିଭିନ୍ନ କେନ୍ଦ୍ରରେ, ଭକ୍ତମାନଙ୍କ ଘରେ ଏପରିକି ସର୍ବସାଧାରଣରେ ଠାକୁର ଶ୍ରୀରାମକୃଷ୍ଣଙ୍କ ସହିତ ପୂଜିତ ହେଉଛନ୍ତି । ଠାକୁର, ମା' ଓ ସ୍ୱାମୀଜୀ ଏହି ତ୍ରୟୀ ଫଟୋ ସବୁ ସ୍ଥାନରେ ପୂଜା ବେଦି ମଣ୍ଡନ କରିଛନ୍ତି ।

ରାମକୃଷ୍ଣ ମଠ ହେଉଛି ସନ୍ନ୍ୟାସୀ ସଂଘ । କିନ୍ତୁ ଏହାର ପ୍ରେରଣା ଦାତ୍ରୀ ହେଉଛନ୍ତି ଶ୍ରୀମା' ସାରଦା, ଯାହାଙ୍କର ପବିତ୍ର ଜୀବନ ଏହି ସଂଘକୁ ପବିତ୍ରତମ ଓ ଶୃଙ୍ଖଳିତ କରିପାରିଛି ।

ସ୍ୱାମୀ ବିବେକାନନ୍ଦ କହିଥିଲେ, 'ଏହି ମଠ ଧର୍ମ ସାଧନା ଓ ଜ୍ଞାନ ଅଭ୍ୟାସର ଏକ କେନ୍ଦ୍ରୀୟ ଅନୁଷ୍ଠାନ ହେବ । ଏଠାରୁ ଯେଉଁ ଆଧାତ୍ମିକ ଶକ୍ତିର ଉତ୍ସରଣ ହେବ, ତାହା ସମଗ୍ର ବିଶ୍ୱକୁ ବ୍ୟାପିଯିବ ଏବଂ ମନୁଷ୍ୟ ମାନଙ୍କର ଆଗ୍ରହ ଓ କର୍ମର ଗତିକୁ ନୂତନ ମାର୍ଗ ଦେଖାଇବ । ଏଠାରୁ ଜ୍ଞାନ, ଭକ୍ତି, କର୍ମର ସମନ୍ୱୟର ଆଦର୍ଶ ବ୍ୟାପ୍ତ ହେବ । ଏପରି ସମୟ ଆସିବ ଯେତେବେଳେ ଏହି ମଠର ସନ୍ନ୍ୟାସୀମାନଙ୍କର ସାମାନ୍ୟ ଇଚ୍ଛା ମାତ୍ରକେ ମୃତପ୍ରାୟ ମନୁଷ୍ୟମାନଙ୍କ ଆତ୍ମା ମଧ୍ୟରେ ଅଫୁରନ୍ତ ଶକ୍ତି ସଞ୍ଚାର ହେବ । ଏହି ସମସ୍ତ ଦୃଶ୍ୟ ମୋ ଆଗରେ ଜଳଜଳ ଦେଖାଯାଉଛି ।'

ବର୍ତ୍ତମାନ ସମଗ୍ର ବିଶ୍ୱରେ ରାମକୃଷ୍ଣ ମଠ ଓ ମିସନର ବ୍ୟାପ୍ତି ଓ ବିସ୍ତୃତିର ମୂଳ ଉତ୍ସ ହେଉଛନ୍ତି ଶ୍ରୀ ଶ୍ରୀ ମା' ସାରଦା ଦେବୀ ।



# ତାଙ୍କର ବାର୍ତ୍ତା

ପ୍ରତ୍ୟେକ ମହାପୁରୁଷ ଏହି ଜଗତକୁ ବାର୍ତ୍ତା ଦେଇଛନ୍ତି ନିଜର ଜୀବନ ଓ ଉପଦେଶ ମାଧ୍ୟମରେ । ଆଧ୍ୟାତ୍ମିକ କ୍ଷେତ୍ରରେ ବାଣୀଠାରୁ ଜୀବନ ମହତ୍ତର ଓ ଅନ୍ୟ ଏକ ବିଶେଷତା ରଖେ । ଶ୍ରୀମା' ସାରଦା ଏହି ପର୍ଯ୍ୟାୟଭୁକ୍ତ । ଶ୍ରୀମାଙ୍କ ବାଣୀ 'ଦିବ୍ୟଜନନୀ କଥାମୃତ' (The gospel of holy mother) ପୁସ୍ତକରେ ଲିପିବଦ୍ଧ । ପ୍ରତ୍ୟେକ ଆଧ୍ୟାତ୍ମିକ ଉପଦେଶର ଦୁଇଟି ଦିଗ ରହିଛି । ପ୍ରଥମଟି ଧର୍ମ ନୀତି ଓ ଅନ୍ୟଟି ହେଲା ସଂସ୍କୃତି ବା ଦର୍ଶନ । ପ୍ରଥମଟି ବ୍ୟକ୍ତିତ୍ୱ ସହିତ ଜଡ଼ିତ ହୋଇ ରହିଥିବା ବେଳେ ଦ୍ୱିତୀୟଟି ନୈତିକ ସିଦ୍ଧାନ୍ତ ସହିତ ଜଡ଼ିତ ହୋଇଥାଏ । ଧର୍ମନୀତି ସଂପର୍କିତ ଉପଦେଶରେ ବିଶ୍ୱାସ ଓ ଭକ୍ତିଭାବ ଦେଖିବାକୁ ମିଳେ ।

ଯେକୌଣସି ଆଧ୍ୟାତ୍ମିକ ଆନ୍ଦୋଳନ ପାଇଁ ଧର୍ମନୀତି ଓ ଦର୍ଶନ ଉଭୟ ଆବଶ୍ୟକ । ଏହି ଦୁଇଟିରେ ସମାନତା ଓ ସମନ୍ୱୟ ରକ୍ଷା କରି ପାରିଲେ, ଆଧ୍ୟାତ୍ମିକ ଆନ୍ଦୋଳନ ପୁଷ୍ଟ ଓ ବର୍ଦ୍ଧିତ ହୁଏ । ଧର୍ମନୀତି ଆଧ୍ୟାତ୍ମିକ ଆନ୍ଦୋଳନର ହୃଦୟ ହେବାବେଳେ ଦର୍ଶନ ବା ସଂସ୍କୃତି ଏହାର ପଞ୍ଜରା ହାଡ଼ । ବାସ୍ତବତାରୁ ଦୂରେଇ ଗଲେ ଧର୍ମନୀତି ଭାବବାଦ ବା ଭାଗ୍ୟବାଦରେ ରୂପାନ୍ତରିତ ହୁଏ । ଏହା ଜୀବନ ପାଇଁ କୌଣସି ମୂଲ୍ୟ ରଖେନା ଏବଂ ସମାଜ ପ୍ରତି ବାଧକ ହୁଏ ।

ଶ୍ରୀରାମକୃଷ୍ଣ ଯେଉଁ ଆଧ୍ୟାତ୍ମିକ ଆନ୍ଦୋଳନର ଅଯମାରମ୍ଭ କରିଥିଲେ, ସେଥିସହିତ ଏହି ଦୁଇଟି ଦିଗ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ରହିଛି । ଏହି ଆନ୍ଦୋଳନର ଧାର୍ମିକ ଦିଗଟି ହେଉଛି ଶ୍ରୀରାମକୃଷ୍ଣ ହେଉଛନ୍ତି ଅବତାର ପୁରୁଷ ଯାହାଙ୍କ ଠାରେ ପୂର୍ବରୁ ଅବତରି ଥିବା ସମସ୍ତ ଅବତାରମାନଙ୍କର ଗୁଣ ବିଦ୍ୟମାନ । ସେ ଜୀବନ୍ତ ମୂର୍ତ୍ତି ଯାହାଙ୍କ ସହିତ ପ୍ରେମ ଓ ଶୃଙ୍ଖଳା ମାଧ୍ୟମରେ ସଂପର୍କ ସ୍ଥାପନ କରିହୁଏ । ତାଙ୍କର ଜୀବନ ଓ ବ୍ୟକ୍ତିତ୍ୱ ମନୁଷ୍ୟ ପାଇଁ ମୁକ୍ତିର ବାଟ ଫିଟାଇଛି ଏବଂ ତାଙ୍କ ପ୍ରତି ନିଷ୍ଠା ଓ ଭକ୍ତି ପୂର୍ବକ ଉପାସନା ଦ୍ୱାରା ଯେ କୌଣସି ବ୍ୟକ୍ତି ଆଧ୍ୟାତ୍ମିକ ଚେତନା ପର୍ଯ୍ୟାୟରେ ପହଞ୍ଚିପାରେ ।

ଶ୍ରୀରାମକୃଷ୍ଣଙ୍କର ଦାର୍ଶନିକ ଦିଗଟି ହେଉଛି ତାଙ୍କ ଜୀବନ ମାଧ୍ୟମରେ, ତାଙ୍କର

ଶିଷ୍ୟମାନଙ୍କ ମାଧମରେ, ତାଙ୍କର ଉପଦେଶ ମାଧମରେ ପ୍ରସ୍ଫୁଟିତ ମହାନ୍ ଆଦର୍ଶ । ଦ୍ୱିତୀୟତଃ ବିଶ୍ୱର ଭିନ୍ନ ଭିନ୍ନ ଧର୍ମଧାରାର ସମନ୍ୱୟରେ ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ଉପସ୍ଥାପିତ ନବବେଦାନ୍ତ ବା ଧର୍ମ ବିଜ୍ଞାନ ।

ଏହାକୁ ଠିକ୍ ଢଙ୍ଗରେ ଆଲୋଚନା କଲେ, ଶ୍ରୀମା' ସାରଦାଙ୍କର ଉପଦେଶକୁ ବୁଝାଯାଏ । ଶ୍ରୀମା' ଏହି ଆନ୍ଦୋଳନର ଧର୍ମନୀତିର ସଫଳ ପ୍ରତିନିଧି । ତେଣୁ ତାଙ୍କୁ ଏହି ଆନ୍ଦୋଳନର 'ଶକ୍ତି' କହିବା ଯଥାର୍ଥ । ଶ୍ରୀମା' ହେଉଛନ୍ତି ସର୍ବପ୍ରଥମ ଯେ କି ଅକୁଣ୍ଠ ଚିତ୍ତ ଓ ହୃଦୟରେ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଭକ୍ତି ଓ ଶ୍ରଦ୍ଧାର ସହିତ ସେବା କରିଛନ୍ତି । ଶ୍ରୀରାମକୃଷ୍ଣଙ୍କର ଏହି ସଂସାରରେ ଅବତୀର୍ଣ୍ଣ ହେବାର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ପୂରଣ କରିବାରେ ସାହାଯ୍ୟକାରୀର ଭୂମିକା ନିଭେଇଛନ୍ତି । ଜୀବନ ତମାମ ଶ୍ରୀମା' ଠାକୁରଙ୍କର ଉପସ୍ଥିତିକୁ ଉପଲବ୍ଧି କରିଛନ୍ତି । ତାଙ୍କୁ ଯେପରି ପୂଜା କରିଛନ୍ତି, ନିର୍ଦ୍ଦେଶ ପାଇଁ ଅପେକ୍ଷା କରିଛନ୍ତି ଏଥିରୁ ତାହା ପ୍ରମାଣିତ । ତାଙ୍କ ଜୀବନରୁ ଏହି ସଂସାରରେ ବଞ୍ଚିବାର ଆଦର୍ଶ ଦେଖିବାକୁ ମିଳେ ଯଦିଓ ସେ ସଂସାର ଭିତରେ ନଥିଲେ । କାରଣ ଶ୍ରୀମା' ପରିବାର ମଧ୍ୟରେ ରହି ଅନେକ ଦୁଃଖ, କଷଣ ଓ ଯାତନାକୁ ସହ୍ୟ କରି ମଧ୍ୟ ନିଜର ତ୍ୟାଗ, ସେବା, ଭକ୍ତିଭାବକୁ ଦୃଢ଼ ଭାବରେ ଧରି ରଖିଥିଲେ ।

ସେ ସ୍ତ୍ରୀ, ଧାତ୍ରୀ ଓ ମା', ଏହି ତିନିଗୋଟି ଭାବର ନିଜ ଭିତରେ ସଫଳ ସମନ୍ୱୟ କରିଥିଲେ । ଆଧ୍ୟାତ୍ମିକଗୁରୁ ଶ୍ରୀ ରାମକୃଷ୍ଣଙ୍କର ସହଧର୍ମିଣୀ ଭାବରେ ସେ ବ୍ରହ୍ମଚାରିଣୀ ବ୍ରତକୁ ନିଷ୍ଠାର ସହ ପାଳନ କରି ନିଜର ପବିତ୍ରତାର ମହାନ୍ ପରକାଷ୍ଠାକୁ ପ୍ରତିପାଦନ କରିଥିଲେ । ସେ ନିଜର ମାତୃତ୍ୱର ପରିଚୟ ଦେଇ ଅଗଣିତ ଭକ୍ତ ଓ ଶିଷ୍ୟମାନଙ୍କ ମଧ୍ୟରେ ମା'ର ପ୍ରେମ, ସ୍ନେହ, ଶ୍ରଦ୍ଧା ଅକାତରରେ ଅଜାଡ଼ି ଦେଇଥିଲେ । ଶ୍ରୀମା' ରାମକୃଷ୍ଣଙ୍କର ଆଦର୍ଶ ମାତୃତ୍ୱର ଶେଷ କଥା । ଶ୍ରୀମା' ନିଜ ଜୀବନରେ ସ୍ପଷ୍ଟ ଭାବରେ ଦେଖାଇ ଦେଇଗଲେ ଯେ ଯୌନ ଆକର୍ଷଣ ବ୍ୟତୀତ ମଧ୍ୟ ସ୍ତ୍ରୀର ସ୍ୱାମୀ ପ୍ରତି ଭକ୍ତି ରହିପାରେ, ସନ୍ତାନ ଜନ୍ମ ନ କରି ମଧ୍ୟ ସନ୍ତାନମାନଙ୍କ ପ୍ରତି ସ୍ନେହ ଦିଆଯାଇପାରେ, ଜୀବନର ସାଧାରଣ ଅବସ୍ଥା ଦେଇ ଗତି କଲାବେଳେ ମଧ୍ୟ ଚରମ ସତ୍ୟ ପ୍ରତି ଅନୁରକ୍ତି ରହିପାରେ । ଶ୍ରୀମା' ଆଧୁନିକ ନାରୀମାନଙ୍କୁ ଦେଖାଇ ଦେଇଗଲେ ଯେ ନାରୀ ନିଜର ଆତ୍ମାକୁ ବିନଷ୍ଟ ନକରି ବ୍ୟାପକ ସମ୍ଭାବନା ମଧ୍ୟରେ ନିଜକୁ ପ୍ରକାଶ କରିପାରେ । ଭକ୍ତମାନଙ୍କ ସହିତ ଆଲୋଚନା କଲାବେଳେ ସେ ଯେଉଁ କେତେକ ମୂଲ୍ୟବାନ ଉପଦେଶ ଦେଇ ଯାଇଛନ୍ତି, ତାହା ମଧ୍ୟ ଅତ୍ୟନ୍ତ ଉଲ୍ଲେଖ ଯୋଗ୍ୟ ଓ ଗୁରୁତ୍ୱ ପୂର୍ଣ୍ଣ ।

ଶ୍ରୀମା' ତାଙ୍କର ଉପଦେଶ ମାଧମରେ ବେଦାନ୍ତ ଶାସ୍ତ୍ରର ସାରକଥା କହିଥିଲେ

ମଧ୍ଯ ସେ ଦର୍ଶନ ସମ୍ବନ୍ଧୀୟ ସୂକ୍ଷ୍ମତା ମଧ୍ୟକୁ ପ୍ରବେଶ କରି ନାହାନ୍ତି । ସେ ସ୍ୱୀକାର କରିଛନ୍ତି ଯେ ଆଧ୍ୟାତ୍ମିକ କ୍ରମ ବିବର୍ତ୍ତନରେ, ବ୍ୟକ୍ତି ଏପରି ଅବସ୍ଥାରେ ପହଞ୍ଚେ ଯେଉଁଠାରେ ରୂପ ବା ଆକୃତିର ପରିପ୍ରକାଶର ଅନୁଭୂତି ଅନିତ୍ୟ ବା କ୍ଷଣସ୍ଥାୟୀ ଜଣାପଡ଼େ ଏବଂ ଈଶ୍ୱର ସମ୍ବନ୍ଧୀୟ ବିଚାର ସଂପ୍ରସାରିତ ହୁଏ । ସେ କହିଛନ୍ତି, 'ସମୟ କ୍ରମେ ଈଶ୍ୱର ଏକ ଭିନ୍ନ ସତ୍ତା ବୋଲି ଜଣେ ଅନୁଭବ କରିପାରେ ନାହିଁ । ଜ୍ଞାନ ପ୍ରାପ୍ତି ହେବା ପରେ, ଜଣେ ଦେଖେ ଯେ ଦେବଦେବୀ ଓ ମୂର୍ତ୍ତିମାନ ସବୁ ମାୟା, ସବୁ କିଛି ସମୟ କ୍ରମେ ଆସେ ଏବଂ ସମୟକ୍ରମେ ଅନ୍ତର୍ଦ୍ଧାନ ହୋଇଯାଏ ।'

ଅଦ୍ୱୈତ ସତ୍ୟର ଲକ୍ଷ୍ୟକୁ ଗ୍ରହଣ କରି ଥିଲେ ମଧ୍ୟ ଆଧ୍ୟାତ୍ମିକ ପ୍ରଚେଷ୍ଟାରେ ଭକ୍ତିର ମାର୍ଗ ଶ୍ରେଷ୍ଠମାର୍ଗ ଏହା ଥିଲା ତାଙ୍କର ଦୃଢ଼ ମତ । ଏଥିପାଇଁ କାହା ସହିତ ସେ ବୁଝାମଣା କରିବାକୁ ପ୍ରସ୍ତୁତ ନଥିଲେ । ତେଣୁ ଥରେ ଜଣେ ଶିଷ୍ୟ ତାଙ୍କ ନିକଟରେ ଈଶ୍ୱରଙ୍କର ଅନିତ୍ୟତା ଓ ସୃଷ୍ଟି ସଂପର୍କରେ ଯେତେବେଳେ କହିଲେ, ସେ ଉତ୍ତରରେ କହିଥିଲେ, "ଥରେ ନରେନ୍ଦ୍ର ମୋତେ କହିଲେ, 'ମା', ଗୁରୁଙ୍କ ପାଦପଦ୍ମ ସଂପର୍କରେ ଯେଉଁ ଜ୍ଞାନରେ କୁହାଯାଇଛି, ତାହା ଅଜ୍ଞତା । ଜ୍ଞାନର କ'ଣ ମୂଲ୍ୟ ଯଦି ତାହା ପ୍ରମାଣ କରେ ଯେ ଗୁରୁଙ୍କର କିଛି ମୂଲ୍ୟ ନାହିଁ ।' ଏହିପରି ଶୁଖିଲା ଆ◌ାଲୋଚନା ଓ ଦର୍ଶନର କୌଣସି ମୂଲ୍ୟନାହିଁ । ଯୁକ୍ତି ମାଧ୍ୟମରେ କିଏ ଈଶ୍ୱରଙ୍କୁ ଜାଣିଛି ? ଏପରିକି ମହାନ୍ ଋଷି ଶୁକ ଓ ବ୍ୟାସ ବଡ଼ ବଡ଼ ପିମ୍ପୁଡି ସଦୃଶ୍ୟ ବିରାଟ ଚିନି ଗଦାରୁ କେତେ ଅଳ୍ପ ଖଣ୍ଡ ମାତ୍ର ନେଇ ପାରିଛନ୍ତି ।"

ତାଙ୍କର ଏହି ବକ୍ତବ୍ୟରୁ ସେ କୌଣସି ଧର୍ମନୀତିକୁ ମୂଳ ସିଦ୍ଧାନ୍ତ ବୋଲି ଗ୍ରହଣ କରି ନେଇ ନାହାଁନ୍ତି । ସେ ଅଦ୍ୱୈତ ଅବସ୍ଥାରେ ଚୈତନ୍ୟକୁ ଅସ୍ୱୀକାର କରି ନାହାନ୍ତି କିନ୍ତୁ ତାକୁ ଅତ୍ୟଧିକ ଉଦ୍‌ଭାସିତ ମଧ୍ୟ କରି ନାହାନ୍ତି । ଈଶ୍ୱର, ସଚ୍ଚିଦାନନ୍ଦ ହେଉଛନ୍ତି ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ଆଦର୍ଶ ଯାହାଙ୍କୁ ଲାଭ କରିବାକୁ ମନୁଷ୍ୟ ଚାହେଁ, ଏବଂ ସେଥିପାଇଁ ମନୁଷ୍ୟର କର୍ତ୍ତବ୍ୟ ହେଉଛି ତାଙ୍କର ପୂଜା ବା ଆରାଧନା କରିବା । ତେଣୁ ଶ୍ରୀମା'ଙ୍କର ଉପଦେଶ ହେଉଛି ଭକ୍ତି ମାର୍ଗ । ସେ ସବୁବେଳେ ଭକ୍ତ ଓ ଶିଷ୍ୟମାନଙ୍କୁ ଈଶ୍ୱର ତୁମର 'ନିଜର' ବୋଲି ଦେଖିବାକୁ କହିଛନ୍ତି ଏବଂ ତାଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିବାର ଉପଦେଶ ଦେଇଛନ୍ତି । କାରଣ ଆଧ୍ୟାତ୍ମିକ ସାଫଲ୍ୟ, ତାଙ୍କର କରୁଣାରୁ ହିଁ ପ୍ରାପ୍ତ ହୋଇଥାଏ । ତେଣୁ ଶ୍ରୀମା'ଙ୍କ ମତରେ ଈଶ୍ୱରଙ୍କର ଛୋଟ ପିଲାର ପ୍ରକୃତି । କାରଣ ସାନ ସାନ ପିଲା ଯେପରି କୌଣସି ଜିନିଷକୁ ଶହେ ଥର ମାଗିଲେ ମଧ୍ୟ ଦିଅନ୍ତି ନାହିଁ, କିନ୍ତୁ ଅନ୍ୟକାହାକୁ ଥରେ ଅନୁରୋଧରେ ଦେଇ ଦିଅନ୍ତି; ଈଶ୍ୱରଙ୍କର କରୁଣା ମଧ୍ୟ ସେହିପରି ।

ଏହାଦ୍ୱାରା ଶ୍ରୀମା' ବ୍ୟକ୍ତି ନିଜ ଚେଷ୍ଟାରୁ ବିରତ ହେବା ଉଚିତ ବୋଲି କହିନାହାନ୍ତି । ଯଦିଓ ସେ ବାରମ୍ବାର କହିଛନ୍ତି, 'ନିଃସନ୍ଦେହରେ ସବୁକଥା ଈଶ୍ୱରଙ୍କ ଇଚ୍ଛା ଉପରେ ନିର୍ଭର କରେ' ତଥାପି 'ମନୁଷ୍ୟ କାର୍ଯ୍ୟ କରିବା ଉଚିତ୍ କାରଣ ଈଶ୍ୱର ତାଙ୍କର ଇଚ୍ଛାକୁ ମନୁଷ୍ୟର କର୍ମଦ୍ୱାରା କରାନ୍ତି ।' ତେଣୁ ସେ ଆଧ୍ୟାତ୍ମିକ ଅଭ୍ୟାସକୁ ସମୁଚିତ ଗୁରୁତ୍ୱ ଦେବାକୁ କହିଛନ୍ତି । ତାଙ୍କ ମତରେ, ମନ୍ତ୍ର କିମ୍ବା ଶାସ୍ତ୍ର ଦ୍ୱାରା ସବୁ କିଛି ହେବନାହିଁ । ପବିତ୍ର ପ୍ରେମଭକ୍ତି ହିଁ କେବଳ ସବୁକିଛିକୁ ଜୟ କରିପାରିବ ।'

ଆଧ୍ୟାତ୍ମିକ ଅଭ୍ୟାସ ମନକୁ ପବିତ୍ର କରିବାରେ ସାହାଯ୍ୟ କରେ । ତାହା ଭକ୍ତିର ପ୍ରଥମ ପାହାଚ । ଏହା କର୍ମବନ୍ଧନକୁ କାଟି ପକାଏ ଏବଂ ଇନ୍ଦ୍ରିୟମାନଙ୍କର ଶକ୍ତିକୁ ବଶୀଭୂତ କରେ । ଈଶ୍ୱରଙ୍କର ନାମ ସାଂସାରିକ ଭାବନାରୁ ମୁକ୍ତ କରେ । ଈଶ୍ୱର ହୁଏତ କାହାକୁ କାହାକୁ ମୁକ୍ତି ଦେଇ ପାରନ୍ତି, କିନ୍ତୁ କ୍ୱଚିତ ମଣିଷଙ୍କୁ ଭକ୍ତି ପ୍ରଦାନ କରନ୍ତି । ତେଣୁ ଈଶ୍ୱରଙ୍କର କରୁଣା ଉପରେ ଗୁରୁତ୍ୱ ଦେବାବେଳେ ଶ୍ରୀମା' ବାରମ୍ବାର ନିୟମିତ ଆଧ୍ୟାତ୍ମିକ ଅଭ୍ୟାସ କରିବାକୁ କହିଛନ୍ତି, 'ଅଭ୍ୟାସରୁ ନିବୃତ୍ତ ହେବା ଠିକ୍ ନୁହେଁ, କାରଣ ତୁମ୍ଭେ ତାଙ୍କର ରୂପ ଦର୍ଶନ କରିପାରିବ ନାହିଁ । ନିୟମିତ ଅଭ୍ୟାସ ପ୍ରୟୋଜନ ।' ଈଶ୍ୱରଙ୍କର ଅପରୋକ୍ଷାନୁଭୂତି ଈଶ୍ୱରଙ୍କର କରୁଣାରୁ ଯେ କୌଣସି ସମୟରେ ହୋଇପାରିବ । ଶ୍ରୀମା' ଆଧ୍ୟାତ୍ମିକ ଅଭ୍ୟାସରେ ଜପକୁ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଦେଇଛନ୍ତି । ତାଙ୍କ ମତରେ, ମନ୍ତ୍ର ସହିତ ଦୀକ୍ଷା ଶରୀରକୁ ପବିତ୍ର କରେ । ଈଶ୍ୱର ଆମକୁ ଆଙ୍ଗୁଳି ଦେଇଛନ୍ତି । ତାହା ସାହାଯ୍ୟରେ ତାଙ୍କର ନାମ ଜପ କଲେ ଆଶୀର୍ବାଦ ମିଳିବ । ଜଣେ ବ୍ୟାୟାମପଟୁ ବ୍ୟକ୍ତି ଗୋଟିଏ ବାଛୁରୀକୁ ତା ବାହୁରେ ଜନ୍ମହେବା ଦିନଠାରୁ ବୋହି କରିନିଏ । ସେ ଏହା ପ୍ରତ୍ୟେକ ଦିନ କରେ ଏବଂ ଯାହା ଫଳରେ ସେ ନିଜର ଏତେ ଶକ୍ତି ଆହରଣ କରି ପାରେ ଯେ ବିନା ଚେଷ୍ଟାରେ ସମ୍ପୂର୍ଣ୍ଣ ବଢ଼ିଯାଇ ଥିବା ପଶୁଟିକୁ ଉଠାଇ ନେଇପାରେ । ଠିକ୍ ସେହିପରି ଆଧ୍ୟାତ୍ମିକ ଉନ୍ନତି ଜଣେ ଲାଭ କରେ ନିୟମିତ ଭାବରେ ଜପ କରିବା ଦ୍ୱାରା । ନିୟମିତ ହବାରେ ଜପ କଲେ, ଜଣକର ମନ ସ୍ଥିର ହୋଇଯାଏ ଏବଂ ଧ୍ୟାନସ୍ଥ ହୁଏ । ଯାହା ଫଳରେ କୁଣ୍ଡଳିନୀ ଜାଗ୍ରତ ହୁଏ । ଯେତେବେଳେ ଗୋଟିଏ ପବିତ୍ର ମନ ଜପ କରେ, ପବିତ୍ର ଶବ୍ଦମାନ ହୃଦୟ ମଧ୍ୟରେ ଓ ବାହାରେ ବିନା ଚେଷ୍ଟାରେ ଉଠନ୍ତି । ଏହିମରି ଅବସ୍ଥାରେ ଯେ ପହଞ୍ଚେ, ସେ ଜପରେ ସଫଳତା ପାଏ ।

ଜପ ଓ ଧ୍ୟାନ ସହିତ ଉତ୍ତମ କାର୍ଯ୍ୟ କରିବା ଉପରେ ଶ୍ରୀମା' ଗୁରୁତ୍ୱ ଦେଇଛନ୍ତି । କାରଣ ଦିନରାତି ଚବିଶ ଘଣ୍ଟା ଧରି କେହି ଆଧ୍ୟାତ୍ମିକ ଅଭ୍ୟାସ କରିପାରିବ ନାହିଁ । କାରଣ ଗୋଟିଏ ଅଳସୁଆ ମନ ସୈତାନର କାର୍ଯ୍ୟସ୍ଥଳ ପାଲଟି ଯାଏ । ତେଣୁ

ସେବାକାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଉଚିତ୍ । ଅସୁବିଧା ଓ ଦୁର୍ଯୋଗ ସମୟରେ ଆଧ୍ୟାତ୍ମିକ ପିପାସୁ ବ୍ୟକ୍ତି ଧୈର୍ଯ୍ୟଧରିବା ବିଧେୟ । ଦୁଃଖଦୈନ୍ୟ ଈଶ୍ୱରଙ୍କର କରୁଣା । ବ୍ୟସ୍ତ ନ ହୋଇ ଆଖିରେ ଲୁହ ଓ ମନରେ ଭକ୍ତି ନେଇ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ଉଚିତ । ଗୃହୀ ବା ସନ୍ନ୍ୟାସୀ ଯେ ହେଉନା କାହିଁକି ଆଧ୍ୟାତ୍ମିକ ଜୀବନ ପ୍ରତି ଯଦି ପ୍ରକୃତ ନିଷ୍ଠା ଥାଏ, ତେବେ ସନ୍ତୁଷ୍ଟ ରହିବା ଆବଶ୍ୟକ । ଶରୀର ଏବଂ ସୁଖ ପ୍ରତି ଅନାସକ୍ତ ହେବା ହିଁ ଆଧ୍ୟାତ୍ମିକ ଜୀବନର ପ୍ରଥମ ଆବଶ୍ୟକତା । ଆଜି ମଣିଷ ଶରୀର ଅଛି, କାଲିକୁ ରହି ନ ପାରେ । ଏହି କ୍ଷୁଦ୍ର ଜୀବନରେ ଯନ୍ତ୍ରଣା ଓ ଆନନ୍ଦ ମିଶି କରି ରହିଛି । ତେଣୁ ତ୍ୟାଗ ଓ ବୈରାଗ୍ୟ ଅଭ୍ୟାସ କଲେ ମନରେ ଈଶ୍ୱରଙ୍କ ପ୍ରତି ପ୍ରେମ ଜାଗ୍ରତ ହେବ । ସେ ଆଧ୍ୟାତ୍ମିକ ଜୀବନ ସମ୍ପର୍କରେ ସଂକ୍ଷେପରେ କହିଛନ୍ତି, 'ଯେ ସବୁକିଛି ତାଙ୍କ ପାଇଁ ତ୍ୟାଗ କରିଛି ସେ ହିଁ ଜୀବନ୍ତ ଈଶ୍ୱର । ଈଶ୍ୱରଙ୍କର ଶରଣାପନ୍ନ ହେଲେ ଭାଗ୍ୟର ବିପର୍ଯ୍ୟୟ ମଧ୍ୟ ଓଲଟି ଯାଏ ।'

ଆଧୁନିକ ଯୁଗର ବୈଜ୍ଞାନିକ ମାନେ କହିଛନ୍ତି ମାନବ ସଭ୍ୟତା ଦୁଇଟି ପର୍ଯ୍ୟାୟ ଅତିକ୍ରମ କରି ତୃତୀୟ ପର୍ଯ୍ୟାୟରେ ପହଞ୍ଚିଛି । ପ୍ରଥମ ପର୍ଯ୍ୟାୟରେ ଅଜୈବିକ ସ୍ତରରୁ ଜୈବିକ ସ୍ତର, ଦ୍ୱିତୀୟ ପର୍ଯ୍ୟାୟରେ ଜୈବିକସ୍ତରରୁ ମନୋ-ସାମାଜିକ ସ୍ତର ଅତିକ୍ରମ କରି ତୃତୀୟ ପର୍ଯ୍ୟାୟରେ କ୍ରମବିକାଶର ସ୍ତରକୁ ଉତ୍ତରଣ କରିଛି । ଏହି ଗୁରୁତ୍ୱ ପୂର୍ଣ୍ଣ ମତାଦର୍ଶରେ ଦ୍ୱନ୍ଦ୍ୱ ହିଁ ପ୍ରବଳ । ବିଭିନ୍ନ ପ୍ରତିଦ୍ୱନ୍ଦ୍ୱୀ ଆଦର୍ଶବାଦର ସଂଘାତରେ ମନୁଷ୍ୟ ଆଜି ବିଭ୍ରାନ୍ତ । ବିବର୍ତ୍ତନ ପଥର ଏହି କ୍ରାନ୍ତିଲଗ୍ନରେ ଶ୍ରୀ ଶ୍ରୀ ମା'ଙ୍କ ଆହ୍ୱାନ- 'ଜଗତକୁ ଆପଣାର କରି ନେବାକୁ ଶିଖ । କେହି ପର ନୁହେଁ, ଜଗତ ତୁମର' ଏହି ମହାନ୍ ବାର୍ତ୍ତା ମାନବ ସଭ୍ୟତାର ଉତ୍ତରଣକୁ ଆଗେଇ ନେଇ ପାରିବ ।



# ଈଶ୍ୱରଙ୍କର ଦିବ୍ୟ ମାତୃତ୍ୱର ପ୍ରକାଶ

ଶ୍ରୀମା' ନିଜେ ଘୋଷଣା କରିଛନ୍ତି ଯେ ଠାକୁର ଶ୍ରୀରାମକୃଷ୍ଣ ତାଙ୍କୁ ଈଶ୍ୱରଙ୍କର ଦିବ୍ୟ ମାତୃତ୍ୱର ପରିପ୍ରକାଶ ପାଇଁ ଛାଡ଼ି ଯାଇଛନ୍ତି । ଶ୍ରୀମା' ତାଙ୍କର ଦେହତ୍ୟାଗର ପାଞ୍ଚଦିନ ପୂର୍ବରୁ ଜଣେ ମହିଳା ଭକ୍ତଙ୍କୁ ଉପଦେଶ ଦେଇ କହିଥିଲେ, 'ଯଦି ତୁମେ ଶାନ୍ତି ଚାହଁ, ଅନ୍ୟର ଦୋଷ ଦେଖ ନାହିଁ । ବରଂ ନିଜର ଦୋଷ ଦେଖ । ଏହି ସଂସାରକୁ ନିଜର କରିବାକୁ ଶିଖ । କେହି ପର ନୁହେଁ, ଏହି ସମଗ୍ର ସଂସାର ତୁମ ନିଜର ।' ଏଥିରେ ଶ୍ରୀମା'ଙ୍କର ସମଗ୍ର ଜୀବନର ଚରିତ୍ରବତ୍ତା ଓ ଗୁଣ ପ୍ରକାଶ ପାଇଛି । ତାଙ୍କର ଦିବ୍ୟ ପ୍ରକୃତି ଉନ୍ମୋଚିତ ହୋଇଛି । ଆମେ ଈଶ୍ୱରଙ୍କର ଦିବ୍ୟ ମାତୃତ୍ୱକୁ ମୁହାଁମୁହିଁ ଦେଖି ପାରୁଛନ୍ତି ।

ଈଶ୍ୱରଙ୍କୁ ମା' ଭାବରେ ଡାକିବାର ଅର୍ଥ କ'ଣ ? ଦେବତ୍ୱର ଲିଙ୍ଗଭେଦ ଚିହ୍ନିତ କରିବା ଏହାର ଅର୍ଥ ନୁହେଁ । ଯଦିଓ ଈଶ୍ୱରଙ୍କୁ ଦେବୀ ଓ ଦେବ ଭାବରେ ଚିହ୍ନିତ କରାଯାଏ । ଈଶ୍ୱରଙ୍କୁ ଶିବ ଓ ଶକ୍ତିର ସମ୍ମିଳିତ ଭାବେ ଗ୍ରହଣ କରାଯାଏ । ଶ୍ରୀରାମକୃଷ୍ଣ ଶକ୍ତିକୁ ନାରୀର ଅଂଶ ଭାବରେ ଗ୍ରହଣ ନକରି ସଗୁଣ ବ୍ରହ୍ମଭାବରେ ଗ୍ରହଣ କରିଛନ୍ତି । ସଗୁଣ ବ୍ରହ୍ମ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ସ୍ଥିତି ଓ ପ୍ରଳୟ । ଭକ୍ତିରେ ଏହି ସଗୁଣ ବ୍ରହ୍ମକୁ ପିତା ବା ମାତା, ମୁନିବ, ବନ୍ଧୁ, ପ୍ରେମିକ, ଶିକ୍ଷକ ଇତ୍ୟାଦି ଭାବରେ ଚିହ୍ନିତ କରାଯାଏ । ଠାକୁର ଶ୍ରୀରାମକୃଷ୍ଣ କିନ୍ତୁ ସଗୁଣ ବ୍ରହ୍ମକୁ ସମସ୍ତ ଜୀବମାନଙ୍କର ମା' ରୂପରେ ଦେଖିଛନ୍ତି ।

ମନୁଷ୍ୟ ତାହାର ଅନୁଭବରୁ ଜାଣେ ଯେ ମା'ର ପ୍ରେମ ଓ ଭଲ ପାଇବାରେ କୌଣସି ସର୍ତ୍ତ ନାହିଁ, ସ୍ୱାର୍ଥ ନାହିଁ । ତେଣୁ ଶଙ୍କରାଚାର୍ଯ୍ୟ କହିଛନ୍ତି, କୁପୁତ୍ର ଥାଇ ପାରନ୍ତି, କିନ୍ତୁ କୁମାତା ନାହାଁନ୍ତି । ଏପରି ଦେଖାଯାଏ ଯେ ସବୁଠାରୁ ଦୁର୍ବଳ ପିଲାଟି ମା'ର ଅତି ଆପଣାର, ନିଜର ହୋଇଥାଏ । ଶ୍ରୀମଦ୍ ଭଗବଦ୍ ଗୀତାରେ ମଧ୍ୟ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ଯେ, ଈଶ୍ୱର ସମସ୍ତଙ୍କ ପ୍ରତି ସମାନ । ତାଙ୍କ ନିକଟରେ କେହି ପର ବା ନିଜର ନୁହଁନ୍ତି । କିନ୍ତୁ ଯେ ଈଶ୍ୱରଙ୍କ ନିକଟରେ ଭକ୍ତିର ସହିତ ସମ୍ପୂର୍ଣ୍ଣ ସମର୍ପଣ କରନ୍ତି ଓ ଈଶ୍ୱରଙ୍କ ଉପରେ ସଂପୂର୍ଣ୍ଣ ଭାବରେ ନିର୍ଭର କରନ୍ତି, ସେ ଈଶ୍ୱରଙ୍କ

ସହିତ ରୁହନ୍ତି ଏବଂ ଈଶ୍ୱର ମଧ ତାଙ୍କ ସହିତ ରହନ୍ତି ।

ଯେତେବେଳେ ଶ୍ରୀମା'ଙ୍କୁ ଦିବ୍ୟ ମାତୃତ୍ୱର ପରିପ୍ରକାଶ ବୋଲି କୁହାଯାଉଛି, ତାହାକୁ ମାନସିକ ଦୃଷ୍ଟିକୋଣରୁ ଦେଖି ଗ୍ରହଣ କରାଯିବା ଉଚିତ୍ । କାରଣ ସେ ଦେବୀ ଦୁର୍ଗା, ଲକ୍ଷ୍ମୀ ଇତ୍ୟାଦି ଭାବରେ ପୃଥିବୀରେ ଦେଖାଯାଇ ନାହାନ୍ତି । ଶ୍ରୀମା' କାହାରି ମଧରେ କୌଣସି ଖରାପ ଗୁଣ ଦେଖିନାହାନ୍ତି ଏବଂ ଯେ ତାଙ୍କ ନିକଟକୁ ମା' ମା' କହି ଉପସ୍ଥିତ ହୋଇଛନ୍ତି, ତାହାକୁ ଆଦରି ନେଇଛନ୍ତି । କୌଣସି ବାଛ ବିଚାର ନାହିଁ । ଏକଥା କେତେ ଥର ଗୋଲାପମା' ଅଭିଯୋଗ କରିଛନ୍ତି । ସଂସାର ଦୃଷ୍ଟିରେ ଯେତେ ଦୋଷତ୍ରୁଟି, ପାପପୁଣ୍ୟ ତାହା ତାଙ୍କ ପ୍ରେମର ଫଲ୍‌ଗୁ ସ୍ରୋତକୁ ବନ୍ଦ କରି ଦେଇନାହିଁ । ଅବାରିତ ଗତିରେ ମା'ଙ୍କର ପ୍ରେମ ସନ୍ତାନ ମାନଙ୍କ ପାଇଁ ବହି ଚାଲିଛି । ଯେ କେହି ଭକ୍ତ ତାଙ୍କ ନିକଟକୁ ଦୀକ୍ଷା ନେବାପାଇଁ ଆସିଛନ୍ତି, ସେମାନଙ୍କର ଦୀକ୍ଷା ନେବାର ଯୋଗ୍ୟତା ସଂପର୍କରେ ସେ ବିଚାର ନ କରି, ସମସ୍ତଙ୍କୁ ଦୀକ୍ଷା ଦେଇଛନ୍ତି । ସେ ସମସ୍ତଙ୍କର ମା' ହୋଇଛନ୍ତି, ବିଚାରପତି ହୋଇ ବାଛବିଚାର କରି ନାହାନ୍ତି । ସେଇଥିପାଇଁ ସ୍ୱାମୀ ପ୍ରେମାନନ୍ଦ ଦୀକ୍ଷାର୍ଥୀମାନଙ୍କୁ ଶ୍ରୀମା'ଙ୍କ ନିକଟକୁ ପଠାଇ ଦେଇଛନ୍ତି । ସେ ମଧ ନିର୍ବିକାର ଭାବରେ ସମସ୍ତ ବିଷକୁ ପାନ କରିଛନ୍ତି ଏବଂ ତାହା ତାଙ୍କ ବ୍ୟକ୍ତିତ୍ୱକୁ ସମୁଜ୍ଜଳ କରିଛି । ସେ ସଚେତନ ଭାବରେ ନିଜ ଉପରରେ ଅନ୍ୟର ସମସ୍ତ ପାପବୋଝକୁ ଗ୍ରହଣ କରିଛନ୍ତି କାରଣ ସେ ଜାଣିଥିଲେ, ସେ ଓ ଠାକୁର ଦିବ୍ୟ ପରିପ୍ରକାଶରେ ଏକ ଓ ଅଭିନ୍ନ । ତାଙ୍କ ନିକଟରେ ଯେଉଁମାନେ ଆଶ୍ରୟ ଗ୍ରହଣ କରିବେ ସେମାନଙ୍କର ପାପ ପାଇଁ ତାଙ୍କୁ ଭୋଗିବାକୁ ପଡ଼ିବ । ଏହା ମଧ ସେ ଶିଷ୍ୟଙ୍କ ନିକଟରେ ପ୍ରକାଶ କରିଛନ୍ତି, ଯେତେବେଳେ କେହି ଶିଷ୍ୟ ତାଙ୍କର ପାଦ ସ୍ପର୍ଶ କଲେ ତାଙ୍କୁ ଯନ୍ତ୍ରଣା ହେବ ବୋଲି ଭାବିଚନ୍ତି, ଶ୍ରୀମା' କହିଛନ୍ତି, 'ନାଁ, ମୋର ସନ୍ତାନ; ଆମ୍ଭେ ଏଇଥିପାଇଁ ଜନ୍ମ ହୋଇଛୁ । ଯଦି ଆମେ ଅନ୍ୟର ପାପକୁ ଗ୍ରହଣ ନ କରିବୁ, ଦୁଃଖକୁ ଗ୍ରହଣ ନ କରିବୁ ଏବଂ ତାହାକୁ ନିଜ ଭିତରେ ସମାହିତ ନ କରିବୁ, ତେବେ ତାହାକୁ କିଏ କରିବ ? ପାପୀ ଓ ପୀଡ଼ିତ ମାନଙ୍କର ଦାୟିତ୍ୱ କିଏ ଗ୍ରହଣ କରିବ ?'

ତାଙ୍କର ଶରୀର ଅବସ୍ଥା ଅତ୍ୟନ୍ତ ଖରାପ ଥିବା ବେଳେ କେହି ଜଣେ ଭକ୍ତ କହିଲେ ଯେ ମା'ଙ୍କର ସ୍ୱାସ୍ଥ୍ୟ ଭଲ ହୋଇଗଲେ, ତାଙ୍କୁ ଅନ୍ୟମାନେ ସ୍ପର୍ଶ କରି ପ୍ରଣାମ କରିବାକୁ ଦିଆଯିବ ନାହିଁ । ଏହାର ଉତ୍ତରରେ ମା' କହିଲେ, 'ତୁମେ ଏପରି କାହିଁକି କହୁଛ ? ତୁମେ କ'ଣ ଭାବୁଛ ଠାକୁର କେବଳ ରସଗୋଲା ଖାଇବାକୁ ଆସିଥିଲେ ?' ତାଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ ଠାକୁର ଏବଂ ତାଙ୍କର ଆବିର୍ଭାବ ନିଜ ପାଇଁ କିଛି ପାଇବା ନିମିତ୍ତ ନ ଥିଲା ବରଂ ନିଜ ଜୀବନକୁ ତ୍ୟାଗ କରି ଅନ୍ୟମାନଙ୍କୁ ମୁକ୍ତିର

ମାର୍ଗ ଉନ୍ମୋଚନ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ତାଙ୍କର ସାର୍ବଜନୀନ ପ୍ରେମ ଦୃଷ୍ଟିଭଙ୍ଗୀରେ କୌଣସି ସଂକୀର୍ଣ୍ଣତା ପ୍ରବେଶ କରି ନଥିଲା । ତାଙ୍କ ମାତୃତ୍ୱ ନିକଟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ, ଭାରତୀୟ ଓ ବିଦେଶୀ, ପାପ ଓ ପୁଣ୍ୟ, ଧନୀ ଓ ଦରିଦ୍ର, ହିନ୍ଦୁ ଓ ମୁସଲମାନ, ଚଣ୍ଡାଳ ଓ ବ୍ରାହ୍ମଣ, ସାଧୁ ଓ ଡକାୟତ, ସ୍ତ୍ରୀ ଓ ପୁରୁଷ ଇତ୍ୟାଦିର କୌଣସି ବାଛ ବିଚାର ନଥିଲା । ସେ ସମସ୍ତ ପ୍ରତିବନ୍ଧକକୁ ଭାଙ୍ଗି ପାରିଥିଲେ ।

ଶ୍ରୀମା'ଙ୍କର ଦିବ୍ୟ ମାତୃତ୍ୱରେ ମୁଗ୍ଧ ହୋଇ ଜଣେ ଶିଷ୍ୟ ପଚାରିଲେ, 'ମା, ଆପଣଙ୍କୁ ଦେଖି ସାରିବା ପରେ, ଲୋକମାନେ କିପରି ଅନ୍ୟାନ୍ୟ ଦେବୀମାନଙ୍କୁ ଭକ୍ତି କରିବେ ? ଏହାର ଉତ୍ତରରେ ଶ୍ରୀମା' କହିଲେ, 'କାହିଁକି ନୁହେଁ ? ସେମାନେ ମୋର ଅଂଶବିଶେଷ ।' ଏହା ଶ୍ରୀମାଙ୍କର ଆତ୍ମ-ପ୍ରତିଷ୍ଠାର ବକ୍ତବ୍ୟ ନୁହେଁ ବରଂ ଦିବ୍ୟ ମାତୃତ୍ୱର ପରାକାଷ୍ଠା ।

ଶ୍ରୀମା'ଙ୍କର ଜୀବନକୁ ନିବିଡ଼ ଭାବରେ ଦେଖିଲେ ଜଣାଯାଏ ଯେପରି ସେ ମୃଦୁତାର ଧାରା । ତାଙ୍କ ବ୍ୟବହାରରେ କେହି କେବେ ହେଲେ ଦେଖିନାହିଁ ରୂଢ଼ତା, କଠୋରତା, କ୍ରୂରତା ଓ ନିଷ୍ଠୁରତା । ସେ ସମସ୍ତଙ୍କ ଉପରେ ତାଙ୍କ ମୃଦୁତାର ପ୍ରୟୋଗ ଦ୍ୱାରା ଆଧିପତ୍ୟ ବିସ୍ତାର କରିଛନ୍ତି । ମହାଭାରତରେ କୁହାଯାଇଛି,

'ମୃଦୁନାଂ ଦାରୁଣଂ ହନ୍ତି ମୃଦୁନା ହନ୍ତ୍ୟ ଦାରୁଣଂ ।<br>
ନାସେବ୍ୟଂ ମୃଦୁନାଂ କିଞ୍ଚିତ୍ ତସ୍ମାତ୍ ତୀକ୍ଷ୍ଣତରଂ ମୃଦୁଃ ।'

ଅର୍ଥାତ୍ ମୃଦୁତା ଦ୍ୱାରା କଠୋରତାକୁ ଜୟ କରାଯାଏ, ନମ୍ରତାକୁ ମଧ୍ୟ ଜୟ କରାଯାଏ । ମୃଦୁତା ଦ୍ୱାରା ସମସ୍ତେ ଅଭିଭୂତ ହୁଅନ୍ତି । ତେଣୁ ମୃଦୁତା ଏକ ତୀକ୍ଷ୍ଣ ଅସ୍ତ୍ର ତୁଲ୍ୟ । ଏହି ଅସ୍ତ୍ର ଦ୍ୱାରା ହିଁ ଶକ୍ତି ରୂପିଣୀ ମା'ସାରଦା ଜଗଦ୍‌ବାସୀଙ୍କୁ ଅଭିଭୂତ ତଥା ବଶୀଭୂତ କରିଛନ୍ତି ।



# ଭକ୍ତମାନଙ୍କ ପ୍ରତି ଶ୍ରଦ୍ଧା

**ଭକ୍ତ ଓ ଶିଷ୍ୟମାନଙ୍କ ପ୍ରତି ଶ୍ରଦ୍ଧା**

**ଗିରିଶ ଚନ୍ଦ୍ରଘୋଷ-**

୧୧ ଫେବୃୟାରୀ ୧୯୧୨ । ମା'ଙ୍କର ଶିଷ୍ୟ ଓ ଭକ୍ତ ସରଯୁବାଳା ଦେବୀ ଶ୍ରୀମା'ଙ୍କ ନିକଟରେ ପହଞ୍ଚିଥାନ୍ତି । ଶ୍ରୀମା' ଦୁଃଖ ପ୍ରକାଶ କରି କହିଲେ, "ହାୟ ! ଗିରିଶ ବାବୁ ଚାଲିଗଲେ । ଆଜକୁ ୪ଦିନ ହେଲା । ତାଙ୍କର ପରିବାରର ଲୋକମାନେ ମୋତେ ନିମନ୍ତ୍ରଣ କରିବାକୁ ଏଠାକୁ ଆସିଥିଲେ । ସେଠାକୁ ଆଉ ଯିବା କ'ଣ ମୋ ଦ୍ୱାରା ସମ୍ଭବ ? ଗିରିଶଙ୍କର କି ଅକାଟ୍ୟ ବିଶ୍ୱାସ ଓ ଭକ୍ତି ଠାକୁର ଶ୍ରୀ ରାମକୃଷ୍ଣଙ୍କ ପ୍ରତି ? ତୁମେ ସେହି ଘଟଣା ଶୁଣିଛ ? ସେ ଶ୍ରୀରାମକୃଷ୍ଣଙ୍କୁ ତାଙ୍କର ପୁତ୍ର ହୋଇ ଜନ୍ମ ହେବାକୁ ପ୍ରାର୍ଥନା କରିଥିଲେ । ତାହାର ଉତ୍ତରରେ ଶ୍ରୀ ରାମକୃଷ୍ଣ କହିଲେ, 'ମୁଁ କାହିଁକି ତୁମର ପୁଅ ହୋଇ ଜନ୍ମ ହେବାକୁ ଚାହିଁବି ?' କିନ୍ତୁ, ମୋର ସନ୍ତାନ, କିଏ ଜାଣେ ପ୍ରଭୁଙ୍କର ଇଚ୍ଛା କ'ଣ ? ଶ୍ରୀ ରାମକୃଷ୍ଣଙ୍କର ମହାସମାଧିର କିଛି ଦିନ ପରେ ଗିରିଶଙ୍କର ପୁତ୍ର ସନ୍ତାନ ଜନ୍ମ ଲାଭ କଲା । ଏକ ଅଦ୍ଭୁତ ପିଲା । ତାଙ୍କୁ ଯେତେବେଳେ ଚାରିବର୍ଷ, ସେ କାହା ସହିତ ଶବ୍ଦଟିଏ ମଧ୍ୟ ଉଚ୍ଚାରଣ କରେ ନାହିଁ । ତାର ଭାବଭଙ୍ଗୀରୁ ଲୋକମାନେ ତାହାର ମନକଥା ଜାଣି ପାରନ୍ତି, ତା'ର ବାପ-ମା' ତାକୁ ଶ୍ରୀରାମକୃଷ୍ଣ ଭାବରେ ବିଚାର କରନ୍ତି । ସେମାନେ ତାର ସବୁ ଜିନିଷ ପୋଷାକ, ଖାଇବା ପ୍ଲେଟ୍, କପ୍, ଗିଲାସ ଇତ୍ୟାଦି ଅଲଗା କରି ରଖିଥାନ୍ତି । ତାହାକୁ ଅନ୍ୟ କେହି ବ୍ୟବହାର କରନ୍ତି ନାହିଁ ।

ଦିନେ ସେହି ବାଳକ ମୋତେ ଦେଖିବାକୁ ଭାରି ଅତିଷ୍ଠ ହୋଇଉଠିଲା । ଘରର ଉପର ତାଲାରେ ମୋର ଛବି ଥିଲା । ସେ ଘରର ସମସ୍ତଙ୍କୁ ସେଠାକୁ ଟାଣି ଟାଣି ନେଲା ଏବଂ ଛବିଆଡ଼କୁ ସେମାନଙ୍କୁ ଦେଖାଇ ଚିତ୍କାର କଲା । ପ୍ରଥମେ ସେମାନେ ତା' କଥା କିଛି ବୁଝି ପାରିଲେ ନାହିଁ । ତା'ପରେ ସେମାନେ ତାକୁ ମୋ ନିକଟକୁ ଆଣିଲେ । ଯଦିଓ ସେ ମାତ୍ର ଚାରିବର୍ଷର ପିଲା ଥିଲା, ସେ ମୋତେ ସାଷ୍ଟାଙ୍ଗ ପ୍ରଣାମ କଲା । ତା'ପରେ ସେ ପ୍ରଥମ ମହଲାକୁ ଯାଇ ତା'ବାପାର ଲୁଗା କାନିଧରି ତାକୁ ଟାଣିବାକୁ ଲାଗିଲା । ସେ ଚାହୁଁଥିଲା ଯେ ତା'ର ବାପା ମୋତେ ଦେଖନ୍ତୁ ।

ଗିରିଶ ବିକଳରେ କାନ୍ଦିକାନ୍ଦି କହିଲା, 'ମୁଁ ପାରିବି ନାହିଁ ମୋ ଧନମାଳୀ । ମୁଁ ମା'ଙ୍କୁ ଦେଖି ପାରିବି ନାହିଁ । ମୁଁ ମହାପାପୀ ।'' କିନ୍ତୁ ପିଲାଟି ନଛୋଡ଼ ବନ୍ଧା । ଶେଷକୁ ଗିରିଶ ରାଜି ହେଲା । ସେ ପିଲାକୁ କାଖରେ ଧରିଲା । ତା'ର ଦେହ ସମ୍ପୂର୍ଣ୍ଣ ଥରୁଥିଲା ଓ ଆଖିରୁ ଧାର ଧାର ଲୁହ ବହୁଥିଲା । ସେ ଉପରକୁ ଆସି ମୋ ସମ୍ମୁଖରେ ଲମ୍ୱହୋଇ ସାଷ୍ଟାଙ୍ଗ ପ୍ରଣାମ କଲା ।

ସେ କହିଲା, ମା' ଏହି ପିଲାଟି ମୋତେ ଆପଣଙ୍କର ପବିତ୍ର ପାଦ ଦର୍ଶନ କରିବାକୁ ବାଧ କଲା । ମାତ୍ର ସେହି ପିଲାଟି ମାତ୍ର ଚାରିବର୍ଷରେ ମରିଗଲା ।"

'ଥରେ ଗିରିଶ ଓ ତା' ସ୍ତ୍ରୀ ତାଙ୍କ ଘରର ଛାତ ଉପରେ ପବନରେ ବୁଲୁଥିଲେ । ମୁଁ ସେତେବେଳେ ବଳରାମଙ୍କ ଘରେ ରହୁଥିଲି । ଉଭୟ ଘର ପାଖାପାଖି । ମୁଁ ମଧ୍ୟ ସେହି ସମୟରେ ଛାତ ଉପରକୁ ଯାଇଥିଲି । ମୁଁ ଦେଖିନାହିଁ ଯେ ଗିରିଶ ତା'ଘର ଛାତ ଉପରୁ ମୋତେ ଦେଖିପାରିବ । ତା'ର ସ୍ତ୍ରୀ ତାକୁ କହିଲା, 'ସେଠାକୁ ଚାହଁ । ଦିବ୍ୟ ମା' ଘର ଛାତରେ ଏ ପାଖ ସେପାଖ ହେଉଛନ୍ତି ।' ହଠାତ୍ ଗିରିଶ ମୋ ଆଡ଼କୁ ପଛକରି ଦେଲେ ଏବଂ ତାଙ୍କ ସ୍ତ୍ରୀକୁ କହିଲେ, 'ନାଁ, ନାଁ, ମୁଁ ଏପରି ଲୁଚିଛପି ମା'ଙ୍କୁ ଦେଖି ପାରିବି ନାହିଁ । ମୋର ଦୃଷ୍ଟି ତ୍ରୁଟିପୂର୍ଣ୍ଣ । ସେ ତତ୍‌କ୍ଷଣାତ୍ ଛାତ ଉପରୁ ତଳକୁ ଓହ୍ଲାଇ ଆସିଲା । ମୁଁ ଏକଥା ତା'ର ସ୍ତ୍ରୀଠାରୁ ଶୁଣିଛି ।'

## ଭଗିନୀ ନିବେଦିତା

ଶ୍ରୀମା' ନିବେଦିତାଙ୍କ ଜୀବନୀ ଶୁଣିବା ବେଳେ ତାଙ୍କ ଆଖିରୁ ଲୁହଧାର ଗଡ଼ିବାକୁ ଲାଗିଲା । ସେ ନିବେଦିତାଙ୍କ ସଂପର୍କରେ କହିଲେ, 'ନିବେଦିତାଙ୍କର କି ନିଷ୍ପାପର ଭକ୍ତି । ମୋ ପାଇଁ କୌଣସି କାର୍ଯ୍ୟ କରିବାକୁ ସେ ଅଧିକା ବୋଲି ଭାବୁ ନଥିଲେ । ବହୁ ସମୟରେ ସେ ମୋତେ ରାତିରେ ଦେଖିବାକୁ ଆସନ୍ତି । ଦିନେ ଦେଖିଲେ ଆଲୁଅ ମୋ ଆଖିରେ ସିଧା ପଡୁଛି, ସେ ବତୀଚାରିପାଖରେ କାଗଜ ଲଗାଇଦେଲେ । ସେ ମୋ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ କରିବେ ଏବଂ ଅତି ଧୀର ଭାବରେ ମୋ ପାଦଧୂଳି ତାଙ୍କ ରୁମାଲରେ ନେବେ । ମୁଁ ଅନୁଭବ କରିଛି ଯେ ସେ ମୋର ପାଦସ୍ପର୍ଶ କରିବାକୁ ସମ୍ଭ୍ରମ ହୁଅନ୍ତି ।' ଶ୍ରୀମା' ନିବେଦିତାଙ୍କୁ ନିଜର କନ୍ୟାପରି ଦେଖୁଥିଲେ । ପରସ୍ପର ପରସ୍ପରର ଭାଷା ଜାଣି ନଥିଲେ ମଧ୍ୟ ଉଭୟଙ୍କର ପରସ୍ପର ପ୍ରତି ସ୍ନେହ ଭାଷାର ପ୍ରତିବନ୍ଧକକୁ ଦୂର କରିପାରି ଥିଲା । ଥରେ ମା' ଗୋଟିଏ ନିଜ ହାତ ତିଆରି ପଶମର ପଙ୍ଖା ନିବେଦିତାଙ୍କୁ ଦେବାରୁ, ସେ ତାହାକୁ ମୁଣ୍ଡରେ ଲଗାଇ କହିଲେ, 'କି ସୁନ୍ଦର, କି ଚମତ୍କାର ।' ଏହା ଦେଖି ଶ୍ରୀମା' କହିଲେ, 'ସାମାନ୍ୟ ଜିନିଷଟିଏ ପାଇ ତା'ର କେତେ ଆନନ୍ଦ ! ଆହା; କିପରି ସରଳ ବିଶ୍ୱାସ ! ଯେପରି କି ସାକ୍ଷାତ ଦେବୀ ! ନରେନ୍‌କୁ କେତେ ଭକ୍ତି କରେ । ନରେନ୍ଦ୍ର ଏ ଦେଶରେ ଜନ୍ମିଛି

ବୋଲି ସର୍ବସ୍ୱ ଛାଡ଼ି ମନ ପ୍ରାଣ ଦେଇ ତା'ର କାମ କରୁଛି । କିପରି ଗୁରୁଭକ୍ତି ! ଏ ଦେଶକୁ କେତେ ଭଲପାଏ ।'

ନିବେଦିତାଙ୍କ ଦେଇଥିବା ଜର୍ମାନ ଡ଼ବାଟିରେ ମା' ଠାକୁରଙ୍କ କେଶ ରଖୁଥିଲେ ଏବଂ କହୁଥିଲେ, 'ପୂଜା କରିବା ସମୟରେ ଏହି ଡବାଟିକୁ ଦେଖିଲେ ନିବେଦିତା କଥା ମନେ ପଡ଼େ ।' ପୁଣି କହୁଥିଲେ, 'ନିବେଦିତା କହିଥିଲା, 'ପୂର୍ବଜନ୍ମରେ ମୁଁ ହିନ୍ଦୁ ଥିଲି । ଠାକୁରଙ୍କ କଥା ସେ ଦେଶରେ ପ୍ରଚାର ହେବ ବୋଲି ସେଠାରେ ଜନ୍ମିଛି ।'

୧୯୧୦ ମସିହା ଡିସେମ୍ବର ୧୧ ତାରିଖରେ ନିବେଦିତା ମା'ଙ୍କ ଉଦ୍ଦେଶ୍ୟରେ ଯେଉଁ ଚିଠିଟି ପଠାଇଥିଲେ, ତାହା ଶ୍ରୀମା'ଙ୍କର ଦିବ୍ୟଜନନୀ ହେବାର ଗୌରବକୁ ଗୌରବାନ୍ୱିତ କରିଛି । ସେ ଲେଖିଥିଲେ, 'ମା'ଗୋ ! ଭଲ ପାଇବାରେ ପରିପୂର୍ଣ୍ଣ ତୁମେ । ତୁମର ସେହି ପ୍ରେମରେ ଉଲ୍ଲାସ ବା ଉଗ୍ରତା ନାହିଁ, ତାହା ପୃଥିବୀର ଭଲ ପାଇବା ନୁହେଁ, ତାହା ସ୍ନିଗ୍ଧ ଶାନ୍ତ, କଲ୍ୟାଣ କର । ତାହା ସ୍ୱର୍ଣ୍ଣପ୍ରଭାରେ ଆଲୋକିତ, କ୍ରୀଡ଼ା-ମାଧୁର୍ଯ୍ୟରେ ବିମଣ୍ଡିତ । ''' ବାସ୍ତବିକ ତୁମେ ଭଗବାନଙ୍କର ଅପୂର୍ବତମ ସୃଷ୍ଟି, ଶ୍ରୀରାମକୃଷ୍ଣଙ୍କ ବିଶ୍ୱପ୍ରେମ ଧାରଣର ନିଜସ୍ୱ ପାତ୍ର ଯେଉଁ ସ୍ମୃତି ଚିହ୍ନଟିକୁ ସେ ତାଙ୍କର ସନ୍ତାନମାନଙ୍କ ପାଇଁ ରଖିଯାଇଛନ୍ତି ଯେଉଁମାନେ ନିଃସଙ୍ଗ ଓ ନିଃସହାୟ ।'

## ପଦ୍ମ ବିନୋଦ

ମାଷ୍ଟର ମହାଶୟ (ମହେନ୍ଦ୍ର ନାଥଗୁପ୍ତ)ଙ୍କ ବିଦ୍ୟାଳୟର ଛାତ୍ର ବିନୋଦ ବିହାରୀ ସୋମ ମାଷ୍ଟରଙ୍କ ସାନ୍ନିଧ ଓ ଚେଷ୍ଟାରୁ ଠାକୁରଙ୍କର ଭକ୍ତ ହୋଇ ପଦ୍ମବିନୋଦ ନାମରେ ପରିଚିତ ହୋଇଥିଲେ । ସେ ଥିଏଟରରେ ଯୋଗ ଦେଇଥିଲେ । ସାଙ୍ଗମାନଙ୍କ ମେଳରେ ମଦ୍ୟପାନ କରି କ୍ରମଶଃ ହୋଇଗଲେ ମଦ୍ୟପ । ସ୍ୱାମୀ ସାରଦାନନ୍ଦଙ୍କୁ ଡାକୁଥିଲେ ଦୋସ୍ତ । ଦିନେ ଅଧ ରାତିରେ ନିଶାସକ୍ତ ପଦ୍ମବିନୋଦ ଶ୍ରୀମା'ଙ୍କ ଘର ବାଟଦେଇ ଯିବାବେଳେ ନାନା ପ୍ରକାର ଅଶାଳୀନ ଭାଷାରେ ବକି ବକି ଯାଉଥିଲେ ଏବଂ ବାରମ୍ବାର 'ଦୋସ୍ତ'ଙ୍କୁ ଡାକୁଥିଲେ । କାଳେ ଶ୍ରୀମା'ଙ୍କ ନିଦ୍ରାରେ ବ୍ୟାଘାତ ଘଟିବ, ସେହି ଭୟରେ କେହି ଉତ୍ତର ଦେଉ ନଥିଲେ । ଦିନେ ରାତିରେ ନିଶାଗ୍ରସ୍ତ ପଦ୍ମବିନୋଦ କୌଣସି ଉତ୍ତର ନ ପାଇ ଗୀତ ଗାଇବାକୁ ଲାଗିଲେ ।

ଉଠଗୋ କରୁଣାମୟୀ ଖୋଲ ଗୋ କୁଟୀର ଦ୍ୱାର ।
ଅନ୍ଧାରେ ଦିଶଇ ନାହିଁ ହୃଦ କମ୍ପେ ଅନିବାର ॥
ଉଚ୍ଚସ୍ୱରେ ଡାକୁଛି ତାରା ତୁମକୁ ଯେ କେତେଥର ।
ଦୟାମୟୀ ହୋଇ ଆଜି ଏ କି କର ବ୍ୟବହାର ॥

ସନ୍ତାନେ ରଖି ବାହାରେ, ଅଛ ଶୋଇ ଅନ୍ତଃପୁରେ ।
'ମା' 'ମା' ବୋଲି ଡାକୁଛି ମୁଁ ହେଲି ଅସ୍ଥି ଚର୍ମ ସାର ॥
ଧ୍ୱନି-ବର୍ଣ୍ଣ-ତାନ ଲୟେ ତିନିଗ୍ରାମ ବସାଇଲେ
ଏତେ ଡାକେ ତେବେ ନିଦ୍ରା ଭାଙ୍ଗେ ନାହିଁ ମା' ତୁମର ॥
ଖେଳେ ମତ୍ତ ଥିଲି ବୋଲି ତୁମେ ମୁହଁ ବଙ୍କାଇଲ ।
ଚାହିଁ ମା' ମୁହଁ ଫେରାଇ, ନ ଖେଳିବ କେବେ ଦୀନ ॥
ରାମ କହେ ତ୍ୟଜି ତୋତେ କିଏ ସାହା ହେବ ମୋତେ ।
ମା' ବିନା କେ ନେବ ମୋର ଏ ଅକୃତି ଅଧମ ଭାର ॥

ପଦ୍ମବିନୋଦଙ୍କର ଏହି ଆକୁଳ ଓ ବ୍ୟାକୁଳ ପ୍ରାର୍ଥନା ଶ୍ରୀମା' ସାରଦାଦେବୀଙ୍କର କର୍ଣ୍ଣଗୋଚର ହେଲା । ଗୀତ ଶେଷ ହୋଇ ଯାଇଥିଲା । ପରିବେଶରେ ଥିଲା ସମ୍ପୂର୍ଣ୍ଣ ନିରବତା । ଶ୍ରୀମା' ରହୁଥିବା ଉପର ମହଲାର ଝରକାଟି ଖୋଲିଗଲା ।

ଆନନ୍ଦରେ ଗଦ୍ ଗଦ୍ ହୋଇ ଉଠିଲେ ପଦ୍ମବିନୋଦ । ଅତ୍ୟନ୍ତ ଆତୁରଭାବରେ କହିଲେ, 'ଉଠିଛ ମା' ! ପୁଅର ଡାକ ଶୁଣିଛ । ମୋର ପ୍ରଣାମ ନିଅ ମା' । ଏତକ କହି ସାରି ପଦ୍ମବିନୋଦ ରାସ୍ତାରେ ଧୂଳି ଉପରେ ଗଡ଼ିବାକୁ ଲାଗିଲେ । ପୁଣି ଗାଇବାକୁ ଆରମ୍ଭ କଲେ, 'ଯତନେ ହୃଦୟେ ରଖ ଆଦରିଣୀ ଶ୍ୟାମ ମା'କୁ, (ମନ) ତୁହି ଦେଖ୍ ଆଉ ମୁଁ ଦେଖେ; ଆଉ ଯେପରି କେହି ନ ଦେଖେ ।'

ଜୋରରେ ପାଟି କରି କହିଲେ, 'ମୁଁ ଦେଖେ, ଦୋସ୍ତନ ଦେଖେ ।' ପରଦିନ ପଚାରିଲେ, 'ପିଲାଟି କିଏ ?' ସବୁ ଶୁଣି ସାରି କହିଲେ, 'ଦେଖୁଛୁ କିପରି ଜ୍ଞାନରେ ପୂର୍ଣ୍ଣ ।'

ଆଉ ଦିନେ ରାତ୍ରିରେ ପଦ୍ମବିନୋଦ ଏହିପରି ଶ୍ରୀମା'ଙ୍କର ଦର୍ଶନ ଲାଭ କରିଥିଲେ । ଭକ୍ତମାନେ ଶ୍ରୀମା'ଙ୍କୁ ମଧ୍ୟରାତ୍ରିରେ ଉଠିବା ଅନୁଚିତ ବୋଲି କହିବାରୁ ଶ୍ରୀମା' କହିଥିଲେ, 'ପୁଅର ଏହି ଡାକରେ ମୁଁ ସ୍ଥିର ହୋଇ ରହି ପାରେ ନାହିଁ ।'

କିଛି ଦିନ ପରେ କଠିନ ରୋଗାକ୍ରାନ୍ତ ହୋଇ ପଦ୍ମବିନୋଦ ଡାକ୍ତରଖାନାରେ ରହିଲେ । ସେ ଠାକୁରଙ୍କର ଅମୃତମୟ ବାଣୀ ଶ୍ରୀ ରାମକୃଷ୍ଣ କଥାମୃତ ଶ୍ରବଣ କରି ଠାକୁରଙ୍କ ନାମ ନେଇ ଦେହତ୍ୟାଗ କଲେ ।

ଏହି ଖବର ଶ୍ରୀମା' ଶୁଣିବାକୁ ପାଇଲେ ଏବଂ କହିଲେ, 'ତାହା ହେବ ନାହିଁ, ସେ ଯେ ଠାକୁରଙ୍କ ସନ୍ତାନ । କାଦୁଅ ବୋଲି ହୋଇଥିଲା, ଏବେ ଯାହାଙ୍କ ପୁଅ, ତାଙ୍କ କୋଳକୁ ଚାଲିଗଲା ।'

## ନାଗ ମହାଶୟ (ଦୁର୍ଗାଚରଣ ନାଗ)

ଦିନେ ମହିଳା ଭକ୍ତ ଶ୍ରୀମତୀ ସୁଶୀଳା ମଜୁମଦାର ଶ୍ରୀମା'ଙ୍କୁ ଦର୍ଶନ କରିବାକୁ ଉଦ୍‌ବୋଧନ ଗୃହକୁ ଗଲେ । ସେ କିପରି ନାଗ ମହାଶୟଙ୍କୁ ସାକ୍ଷାତ୍ କରିଥିଲେ ଓ ନାଗ ମହାଶୟ ଶ୍ରୀରାମକୃଷ୍ଣଙ୍କ ଭାବରେ କିପରି ସଦାସର୍ବଦା ମଗ୍ନ ତାହା ଶ୍ରୀମା'ଙ୍କ ନିକଟରେ ବର୍ଣ୍ଣନା କଲେ । ଏହା ଶୁଣି ଶ୍ରୀମା' ଅତିଶୟ ପ୍ରୀତ ହୋଇ କହିଲେ, 'ଆହା; ମୁଁ କ'ଣ ତାଙ୍କ ସଂପର୍କରେ କହିବି ? ସେ ମୋତେ ଦିବ୍ୟ ଜନନୀ ପରିଦେଖନ୍ତି । ପ୍ରଥମେ ଯେତେବେଳେ ମୋତେ ସେ ଦେଖିବାକୁ ଆସିଲେ ମୁଁ ଏକାଦଶୀ ବ୍ରତ ପାଳନ କରୁଥିଲି । ସେତେବେଳେ ମୋ ନିକଟକୁ କୌଣସି ପୁରୁଷ ଭକ୍ତଙ୍କୁ ଆସିବାକୁ ଅନୁମତି ଦିଆଯାଉନଥିଲା । ଭକ୍ତମାନେ ପାହାଚକୁ ମୁଣ୍ଡରେ ଛୁଇଁ ମୋତେ ପ୍ରଣାମ ଜଣାଉଥିଲେ । ଜଣେ ପରିଚାରିକା ଆଗନ୍ତୁକ ଭକ୍ତଙ୍କର ନାମ ଘୋଷଣା କରି କହିବେ, 'ମା ଅମୁକ (ନାମନେଇ) ଭକ୍ତ ଆପଣଙ୍କୁ ପ୍ରଣାମ କରୁଛନ୍ତି ଏବଂ ମୁଁ ଆଶୀର୍ବାଦ ପ୍ରଦାନ କରିବି । ସେହିଦିନ ପରିଚାରିକା କହିଲା, 'ମା'; ଏହି ନାଗ ମହାଶୟ କିଏ ? ସେ ଆପଣଙ୍କୁ ପ୍ରଣାମ ଜଣାଉଛନ୍ତି କିନ୍ତୁ ବାରମ୍ବାର ମୁଣ୍ଡକୁ ଖୁବ୍ ଜୋର୍‌ରେ ପାହାଚରେ ପିଟି ଚାଲିଛନ୍ତି । ତାଙ୍କ ମୁଣ୍ଡରୁ ରକ୍ତ ବାହାରିବା ଅବସ୍ଥା ହୋଇଗଲାଣି । ମହାରାଜ (ସ୍ୱାମୀ ଯୋଗାନନ୍ଦ) ତାଙ୍କ ପଛରେ ଛିଡ଼ା ହୋଇଛନ୍ତି । ତାଙ୍କୁ ଏଥିରୁ ନିବୃତ୍ତ ରହିବାକୁ ବାରମ୍ବାର କହୁଛନ୍ତି କିନ୍ତୁ ସେ ପଦଟିଏ ଶବ୍ଦ ମଧ୍ୟ ଉଚ୍ଚାରଣ କରୁନାହାଁନ୍ତି । ସେ ପ୍ରାୟ ଅଚେତ ହେବା ଅବସ୍ଥାକୁ ଆସିଗଲେଣି । ମା', ସେ କ'ଣ ପାଗଳ ?'

ମୁଁ ତାକୁ କହିଲି, 'ପ୍ରିୟ ମୋର ! ଯୋଗୀନ୍‌ଙ୍କୁ କୁହ ତାଙ୍କୁ ଉପରକୁ ପଠାଇବେ ।' ତାଙ୍କୁ ଧରି ଯୋଗୀନ୍ ମୋ ନିକଟକୁ ନେଇ କରି ଆସିଲେ । ମୁଁ ଦେଖିଲି ଯେ ତାଙ୍କର ମୁଣ୍ଡ ଫୁଲି ଯାଇଛି, ଆଖିରୁ ଲୁହ ଗାଲ ଉପରେ ଧାର ଧାର ବୋହି ଯାଉଛି ଏବଂ ତାଙ୍କର ପାଦ ଟଳମଳ ହେଉଛି । ଲୁହ ଦ୍ୱାରା ଆଖି ଅନ୍ଧ ହୋଇ ସେ ମୋତେ ଦେଖି ପାରୁ ନାହାଁନ୍ତି । ମୁଁ ତାଙ୍କୁ ବସାଇଲି । ସେ କେବଳ ମା' ! ମା' ! ବୋଲି ଡାକୁଥାନ୍ତି ଯେପରି ପାଗଳ, କିନ୍ତୁ ଅପରପକ୍ଷରେ ସେ ଥା'ନ୍ତି ନୀରବ, ଧୀରସ୍ଥିର । ମୁଁ ତାଙ୍କର ଲୁହ ପୋଛି ଦେଲି । ସେ ଆସିବା ବେଳେ ମୁଁ ଲୁଚି, ମିଠାଇ ଓ ଫଳ ଖାଇବାକୁ ବସିଥିଲି । ମୁଁ ସେଥିରୁ ଅଳ୍ପ ଟିକିଏ ଗ୍ରହଣ କରି ଏବଂ ତାଙ୍କୁ ପ୍ରସାଦ ଖୋଇବାକୁ ଚେଷ୍ଟା କଲି । କିନ୍ତୁ ସେ ଖାଇ ପାରିଲେ ନାହିଁ । ସେ ଖାଦ୍ୟକୁ ଗିଳି ପାରିଲେ ନାହିଁ କାରଣ ତାଙ୍କର ବାହ୍ୟ ଚେତନା ଆଦୌ ନଥିଲା । ସେ ମୋର ପାଦକୁ ସ୍ପର୍ଶ କରି ବସି ରହିଥାନ୍ତି ଏବଂ 'ମା', 'ମା' କହି ଚାଲିଥାନ୍ତି । ମୋର

ପରିଚାରିକା କହିବାକୁ ଲାଗିଲା, 'ମା, ଆପଣଙ୍କର ଖାଦ୍ୟ ନଷ୍ଟ ହେଲା । ମହାରାଜ (ସ୍ୱାମୀ ଯୋଗାନନ୍ଦ)ଙ୍କୁ କହିବା ତାକୁ ଏଠାରୁ ନେଇଯିବେ ।' ମୁଁ କହିଲି, 'ଅପେକ୍ଷା କର । ସେ ଟିକିଏ ଥୟ ହୁଅନ୍ତୁ ।' ମୁଁ ତାଙ୍କର ମୁଣ୍ଡକୁ ଆଉଁସି ଦେବାକୁ ଲାଗିଲି ଏବଂ କିଛି ସମୟ ଠାକୁରଙ୍କ ନାମ ନେଲି । ସେ ତାଙ୍କର ବାହ୍ୟ ଚେତନା ଫେରି ପାଇଲେ । ତା'ପରେ ମୁଁ ମୋର ଖାଦ୍ୟ ଖାଇଲି ଏବଂ ତାଙ୍କୁ ମଧ୍ୟ ଖୁଆଇଲି । ସେ ତାଙ୍କ ଖାଦ୍ୟ ଖାଇ ସାରିବା ପରେ, ତାଙ୍କୁ ତଳକୁ ନିଆଗଲା । ଯିବା ପୂର୍ବରୁ ସେ କେବଳ କହିଲେ, 'ମୁଁ ନୁହେଁ, ତୁମେ ! ମୁଁ ନୁହେଁ ତୁମେ ।' ସେଠାରେ ପାଖ ଆଖରେ ଥିବା ଭକ୍ତମାନଙ୍କୁ ମୁଁ କହିଲି, 'ଦେଖ୍, ସେ କିପରି ଜ୍ଞାନୀ । ସେ ମୋ ପାଇଁ ସବୁ କିଛି କରି ପାରନ୍ତି ।'

ଦିନେ ସେ ମଇଳା ଚିରା ଲୁଗା ଖଣ୍ଡିଏ ପିନ୍ଧି ମୁଣ୍ଡରେ ନିଜ ଗଛର ବଛାବଛା ଆମ୍ବ ଟୋକେଇରେ ମୁଣ୍ଡାଇ ଆସି ପହଞ୍ଚିଲେ । ତାଙ୍କ ମନରେ ଇଚ୍ଛା ଥାଏ ସେ ମୋ ପାଖରେ ବସି ମୋତେ ଖୁଆଇବେ । କିନ୍ତୁ ସେ ତାହା କହିପାରୁ ନଥାନ୍ତି । ସେ ଟୋକେଇକୁ ମୁଣ୍ଡାଇ ଦୀନ ଦରିଦ୍ରଙ୍କ ପରି ଚାରିଆଡ଼େ ବୁଲୁଥାନ୍ତି । ଯୋଗେନ୍ ଖବର ଦେଲେ ଯେ ମା'ଙ୍କୁ କୁହ ନାଗମହାଶୟ ଆମ୍ବ ନେଇ ଆସିଛନ୍ତି । ସେ ଗୋଟିଏ ହେଲେ ଶବ୍ଦ ଉଚ୍ଚାରଣ କରୁ ନାହାଁନ୍ତି କିନ୍ତୁ ଆମ୍ବ ଟୋକେଇ କାହାକୁ ଦେଉନାହାନ୍ତି ।' ମୁଁ କହିଲି, 'ତାଙ୍କୁ ଏଠାକୁ ପଠାଅ । ତାଙ୍କୁ ଯେତେବେଳେ ପଠାଗଲା, ସେ ତାଙ୍କ ମୁଣ୍ଡରେ ଆମ୍ବ ଟୋକେଇ ଧରି ଆସିଲେ। ଜଣେ ବ୍ରହ୍ମଚାରୀ ତାଙ୍କ ମୁଣ୍ଡରୁ ଟୋକେଇଟିକୁ ଓହ୍ଲାଇ ଦେଲେ । ମୁଁ ସେ ପର୍ଯ୍ୟନ୍ତ ମୋର ଠାକୁରଙ୍କ ଉପାସନାଶେଷ କରି ନଥାଏ । ମୋତେ ପ୍ରଣାମ କରି, ସେ ପୂର୍ବପରି ଚେତାଶୂନ୍ୟ ହୋଇଗଲେ । ସେ ଠାକୁରଙ୍କ ନାମ ନେଉଥାନ୍ତି ଏବଂ ମା', ମା' ବୋଲି କହି ଚାଲିଥାନ୍ତି । ତାଙ୍କ ଆଖିରୁ ଲୁହ ଧାର ଧାର ଝରୁଥାଏ । ଆମ୍ବଗୁଡ଼ିକ ଅତି ଉତ୍ତମ କିସମର ଥାଏ । କେତେ ଗୁଡ଼ିଏ ଆମ୍ବରେ ଚୂନ ଚିହ୍ନ ଦିଆଯାଇଥାଏ । କେତେଗୁଡ଼ିଏ କଟା ହୋଇ ଠାକୁରଙ୍କୁ ସମର୍ପଣ କରାଗଲା । କନ୍ୟା ଯୋଗୀନ୍ ମୋ ପାଇଁ ପ୍ରସାଦ ଶାଳପତ୍ର ଥାଳିରେ ଆଣିଦେଲା। ମୁଁ ଅଳ୍ପ ଖାଇଲି ଏବଂ ଗୋଲାପକୁ କହିଲି, 'ତାଙ୍କୁ ଗୋଟିଏ ପତ୍ର ଥାଳି ଦିଅ । ପତ୍ର ଥାଳି ଆସିବାପରେ ମୁଁ ମୋ ଥାଳିରୁ କିଛି ଖଣ୍ଡ ଆମ୍ବ ତାଙ୍କ ଥାଳିରେ ରଖିଲି ଏବଂ କହିଲି, ଖାଅ ।' କିନ୍ତୁ କିଏ ଖାଇବ ? ତାଙ୍କର ଶରୀରର ସଚେତନତା ନଥାଏ ଏବଂ ହାତଗୁଡ଼ିକ ଅଥର୍ବ । ମୁଁ ତାଙ୍କର ହାତ ଧରି ତାଙ୍କୁ ଖାଇବାକୁ କହିଲି । କିନ୍ତୁ ସେ ଖାଇଲେ ନାହିଁ । ବରଂ ସେ ଖଣ୍ଡିଏ ଆମ୍ବ ନେଇ ତାଙ୍କ ମୁଣ୍ଡରେ ଘଷିବାକୁ ଲାଗିଲେ । ମୁଁ ତଳମହଲାକୁ ଖବର ଦେଲି । ସେ ତାଙ୍କୁ ତଳମହଲାକୁ ନେଇଗଲେ ।

ଭୂଇଁକୁ ଛୁଇଁ ମୁଣ୍ଡରେ ବାରମ୍ବାର ପ୍ରଣାମ କରିବା ଫଳରେ ତାଙ୍କର ମୁଣ୍ଡର କପାଳ ଫୁଲି ଯାଇଥାଏ । ସେ ତାଙ୍କର ଖାଦ୍ୟ ଖାଇ ପାରିଲେ ନାହିଁ । ମୁଁ ଶୁଣିଛି ଯେ କିଛି ସମୟ ପରେ ସେ ତାଙ୍କର ଚେତାଶକ୍ତି ଫେରି ପାଇଲେ ଏବଂ ଚାଲିଗଲେ ।''ନାଗ ମହାଶୟଙ୍କ ପ୍ରତି ଶ୍ରୀମା'ଙ୍କ ଅତୀବ ଶ୍ରଦ୍ଧା ଏଥିରୁ ଜଣାପଡ଼େ । ଦିନେ ଶ୍ରୀମା' ନିଜ ଶୟନ କକ୍ଷରେ ଥିବା ଫଟୋମାନଙ୍କ ମଧ୍ୟରେ ଥିବା ନାଗ ମହାଶୟଙ୍କ ଛବିକୁ ଚାହିଁ ରହି କହିଲେ, 'କେତେ ଭକ୍ତ ଆସିଲେ, କିନ୍ତୁ ଏପରି ଆଉ କାହାକୁ ଦେଖିଲି ନାହିଁ ।'



# ଭକ୍ତମାନଙ୍କ ସହିତ କଥୋପକଥନ

ଶ୍ରୀମା' ବହୁ ସମୟରେ ଭକ୍ତମାନଙ୍କୁ ସାକ୍ଷାତ୍ ଦେବା ସହିତ ସେମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେଉଥିଲେ । ଜଗତ୍ ଜନନୀ ଶ୍ରୀମା' ସାରଦାଦେବୀଙ୍କର ମୁଖ ନିସୃତ ମଧୁର ବଚନ ପଶ୍ଚାତ୍‌ଭାଗରେ ଭକ୍ତର ଆଧ୍ୟାତ୍ମିକ ଜୀବନର ଉତ୍ତରଣ ଘଟୁ, ଏହାହିଁ ଥିଲା ମୁଖ୍ୟ ଉଦ୍ଦେଶ୍ୟ । ସହଜ, ସରଳ ଓ ସାବଲୀଳ ଢଙ୍ଗରେ ଏହି କଥୋପକଥନ ମଧ୍ୟରେ ଭକ୍ତର ଜୀବନ ଜିଜ୍ଞାସାକୁ ସଠିକ୍ ମାର୍ଗ ଦେଖାଇ ଶ୍ରୀମା' ସାରଦା ଭକ୍ତମାନଙ୍କୁ ସ୍ନେହ ଶ୍ରଦ୍ଧାର ଆକର୍ଷଣରେ ବାନ୍ଧି ପାରିଛନ୍ତି ।

ଶ୍ରୀମା' ଭକ୍ତଙ୍କୁ ମହାଭାରତ ପଢ଼ିବାକୁ କହିଛନ୍ତି । ମହାଭାରତ ପଢ଼ାସରିଛି । ଶ୍ରୀମା' ହାତଯୋଡ଼ି ବହିଟିକୁ ନମସ୍କାର କରିଛନ୍ତି । ଜୟରାମବାଟୀରେ ତାଙ୍କର ବ୍ୟସ୍ତ ବହୁଳ ଜୀବନ ସଂପର୍କରେ ସୂଚନା ଦେଇ କହୁଛନ୍ତି, 'କୌଣସି ନା କୌଣସି କାର୍ଯ୍ୟରେ ସଦାସର୍ବଦା ଲାଗିରୁହ । ଏହା ଶରୀର ଓ ମନ ପାଇଁ ସ୍ୱାସ୍ଥ୍ୟ କାରକ । ତାଙ୍କ ଝିଅାରୀ ନଳିନୀର କ୍ରୋଧ ଭାବ ଦେଖି ଶ୍ରୀମା' ତାକୁ ସେପରି କ୍ରୋଧ ପ୍ରକାଶ ନ କରିବାକୁ କହି କହିଲେ, 'ସ୍ତ୍ରୀ ଲୋକମାନେ ଅତି ସହଜରେ ରାଗ କରିବା ଉଚିତ୍ ନୁହେଁ । ସେମାନେ ସହନଶୀଳ ହେବା ଉଚିତ୍ । ପିଲାଦିନେ ସେମାନଙ୍କର ସୁରକ୍ଷା ବାପାମାଆ କରନ୍ତି ଏବଂ ଯୁବାବସ୍ଥାରେ ସ୍ୱାମୀ । ସ୍ତ୍ରୀଲୋକେ ସାଧାରଣତଃ ଅତିବେଶୀ ସଂବେଦନଶୀଳ । ସାମାନ୍ୟ କଥାରେ ସେମାନେ ଆଘାତ ପାଆନ୍ତି । ସେମାନେ ପିତାମାତା ବା ସ୍ୱାମୀ ସହିତ ଅସୁବିଧା ସମୟରେ ଧୈର୍ଯ୍ୟ ରଖିବା ଉଚିତ୍ ।'

ଗୋଲାପମା' ରାଧୁ ସ୍କୁଲକୁ ନଯିବା ସଂପର୍କରେ ମତଦେବାରୁ ଶ୍ରୀମା' କହୁଛନ୍ତି 'ସେ ସ୍କୁଲକୁ ଯାଉ । ସେ ସ୍କୁଲରୁ ଶିକ୍ଷାଲାଭ କଲେ ଓ ଦରକାରୀ କଳାଶିକ୍ଷା କଲେ ଅଂନ୍ୟ ମାନଙ୍କର ବହୁ ମଙ୍ଗଳ କରିପାରିବ । ସେ ଗୋଟିଏ ପଛୁଆ ଗାଁରେ ବାହାହୋଇଛି । ଶିକ୍ଷାମାଧ୍ୟମରେ ସେ କେବଳ ନିଜର ଉନ୍ନତି କରିବ ନାହିଁ ବରଂ ଅନ୍ୟମାନଙ୍କୁ ସାହାଯ୍ୟ କରି ପାରିବ ।'

ଦିନେ ଶ୍ରୀମା' ବିଛଣାରେ ଶୋଇଛନ୍ତି ଏବଂ ପରିଚାରିକା କାମିନୀ ତାଙ୍କର ଆଣ୍ଠୁଗଣ୍ଠି ବାତ ଯୋଗୁଁ ଦରଜ ହୋଇଥିବା ଆଣ୍ଠୁରେ ଔଷଧ ତେଲ ଲଗାଇ ଦେଉଛନ୍ତି ।

ଶ୍ରୀମା' ଉପସ୍ଥିତ ଥିବା ଭକ୍ତଙ୍କୁ କହୁଛନ୍ତି, 'ଶରୀର ଓ ଆତ୍ମା ପୃଥକ୍ । ଆତ୍ମା ସମଗ୍ର ଶରୀରରେ ବ୍ୟାପ୍ତ । ତେଣୁ ମୁଁ ଗୋଡ଼ରେ ଯନ୍ତ୍ରଣା ପାଉଛି । ଯଦି ମୁଁ ମୋର ମନକୁ ଆଣ୍ଠୁରୁ ଦୂରେଇ ନେବି, ତେବେ ମୁଁ କୌଣସି ଯନ୍ତ୍ରଣା ଅନୁଭବ କରିବି ନାହିଁ ।'

ଭକ୍ତ ପଚାରୁଛନ୍ତି, 'ମା' ! ଈଶ୍ୱରଙ୍କର ଆଶୀର୍ବାଦ ହେଲେ ଜଣେ ଯେ କୌଣସି ସମୟରେ ଆଧ୍ୟାତ୍ମିକ ଅପରୋକ୍ଷାନୁଭୂତି କରିପାରେ । ତେଣୁ ତାଙ୍କୁ ଉଚିତ୍ ସମୟ ପାଇଁ ଅପେକ୍ଷା କରିବାକୁ ପଡ଼ିବ ନାହିଁ ।'

ଶ୍ରୀମା' ଏହାର ଉତ୍ତର ଦେଇ କହିଲେ, 'ତାହା ଠିକ୍ । କିନ୍ତୁ ଯେଉଁ ଆମ୍ବ ଠିକ୍ ସମୟରେ ଅର୍ଥାତ୍ ଜ୍ୟେଷ୍ଠ ମାସରେ ପାଚେ ସେ ଯେପରି ମିଠା, ଆମ୍ବ ଅସମୟରେ ପାଚିଲେ କ'ଣ ସେମିତି ମିଠା ଲାଗିବ ? ମନୁଷ୍ୟମାନେ ଋତୁ ବାହାରେ ଫଳ ପାଇବାକୁ ଚେଷ୍ଟା କରିଛନ୍ତି । ଏପରିକି ଆଶ୍ୱିନ ମାସରେ ଆମ୍ବ ଓ ପଣସ ମିଳୁଛି । କିନ୍ତୁ ଏହା ସେପରି ମିଠା ନୁହେଁ, ଯେପରି ତା' ସମୟରେ ପାଚିଲେ ମିଠା ଲାଗେ । ଈଶ୍ୱରଙ୍କର ଅପରୋକ୍ଷନୁଭୂତିରେ ମଧ୍ୟ ସେଇ ଏକକଥା ।'

ଆଉ ଦିନେ ଭକ୍ତ ପଚାରିଲେ, 'ମା', ଯଦି ଈଶ୍ୱର ବୋଲି କେହି ପ୍ରକୃତରେ ଅଛନ୍ତି, ତେବେ ଏହି ସଂସାରରେ ଏତେ ଦୁଃଖ ଓ ଯନ୍ତ୍ରଣା କାହିଁକି ? ସେ (ଈଶ୍ୱର) କ'ଣ ଦେଖି ପାରୁ ନାହାଁନ୍ତି ? ତାଙ୍କର (ଈଶ୍ୱର) କ'ଣ ଏହାକୁ ଦୂର କରିବାର ଶକ୍ତି ନାହିଁ ?'

ଶ୍ରୀମା' କହୁଛନ୍ତି, 'ସୃଷ୍ଟିରେ ହିଁ ଦୁଃଖ ଓ ଆନନ୍ଦ ରହିଛି । ଯଦି ଦୁଃଖ ନଥାନ୍ତା, ତେବେ ସୁଖକୁ କ'ଣ କେହି ପ୍ରଶଂସା କରନ୍ତା ? ତା'ଛଡ଼ା, ସବୁ ଲୋକମାନେ କିପରି ସୁଖ ପାଇ ପାରିବେ ? କେହି ସଦାସର୍ବଦା ଏହି ସଂସାରରେ ଦୁଃଖ ଭୋଗ କରନ୍ତି ନାହିଁ । କେହି ଏହି ସଂସାରରେ ଦୁଃଖରେ ସମୟ କାଟିବ ନାହିଁ । ପ୍ରତ୍ୟେକ କର୍ମର ଫଳ ମିଳେ ଏବଂ ସେହି ଅନୁସାରେ ସମସ୍ତେ ସୁଯୋଗ ପାଆନ୍ତି ।'

ଭକ୍ତ ପଚାରିଲେ, 'ତେବେ ଏସବୁ କ'ଣ କର୍ମଯୋଗୁଁ ?'

ମା' କହିଲେ, 'ଯଦି ତାହା ନୁହେଁ, ତେବେ କ'ଣ ପାଇଁ ? ଈଶ୍ୱରଙ୍କର ଇଚ୍ଛା ବ୍ୟତୀତ କିଛି ଘଟିବ ନାହିଁ । ଏପରି କି ଘାସ ମଧ୍ୟ କଅଁଳିବ ନାହିଁ । କେବଳ ଈଶ୍ୱରଙ୍କର ଇଚ୍ଛା ଦ୍ୱାରା ହିଁ ସବୁ କିଛି ହୁଏ । କେବଳ ହିଁ ଈଶ୍ୱର ଯେ କି ନିଜର ଇଚ୍ଛାକୁ ମଣିଷର କର୍ମ ମାଧ୍ୟମରେ ପ୍ରକାଶ କରନ୍ତି ।'

ଜଣେ ଭକ୍ତଙ୍କୁ ପରାମର୍ଶ ଦେବା ଛଳରେ କହୁଛନ୍ତି, 'ବଡ଼ ମାନଙ୍କର ଉପଦେଶ ମାନିବା ଉଚିତ । ସେହି ପିଲାଟିର କାମ କରିବାକୁ ମନ ନାହିଁ । କୌଣସି କାମ ନ କଲେ ମନକୁ କିପରି ଭଲ ରଖି ପାରିବ ? ଦିନରାତି ଚବିଶ ଘଣ୍ଟା କ'ଣ ଧ୍ୟାନ

କରାଯାଇପାରେ ? ତେଣୁ ଜଣକୁ କିଛିନା କିଛି କାମ ନେବାକୁ ହେବ । ତାହା ମନକୁ ଉତ୍ତମ ଅବସ୍ଥାରେ ରଖିପାରେ ।'

ଭକ୍ତ ପଚାରୁଛନ୍ତି, ମା', ଈଶ୍ୱର ତାଙ୍କର ସୁରକ୍ଷା ନ ଦେଲେ ମୁଁ ମନରେ ଉଠୁଥିବା ଇଚ୍ଛାମାନଙ୍କୁ କିପରି ଦୂର କରିପାରିବି ? ଗୋଟିଏ ଇଚ୍ଛା ଚାଲିଗଲେ, ଆଉ ଏକ ଇଚ୍ଛା ତାହାର ସ୍ଥାନ ପୂରଣ କରୁଛି ।'

ଶ୍ରୀମା' କହୁଛନ୍ତି, 'ଯେ ପର୍ଯ୍ୟନ୍ତ ଅହଂ ରହିଛି, ସେ ପର୍ଯ୍ୟନ୍ତ ଇଚ୍ଛାମାନ ରହିବେ । କିନ୍ତୁ ଇଚ୍ଛାମାନେ ତୁମର କ୍ଷତି କରି ପାରିବେ ନାହିଁ । ଠାକୁର ତୁମର ସୁରକ୍ଷା କରିବେ । ତୁମେ ତାଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କର । ସେ ଯଦି ଚାହାଁନ୍ତି, ତୁମର ମଙ୍ଗଳ କରନ୍ତୁ, ନଚେତ୍ ତୁମକୁ ବୁଡ଼ାଇ ପକାନ୍ତୁ ।

ଆମର ଦୁଃଖ ଓ ସୁଖପାଇଁ କର୍ମ ହିଁ କେବଳ ଦାୟୀ । ଏପରିକି ଠାକୁରଙ୍କ କର୍ମର ପ୍ରଭାବରୁ ଯନ୍ତ୍ରଣା ଭୋଗ କରିବାକୁ ହୋଇଥିଲା । ଦିନେ ତାଙ୍କର (ଠାକୁର)ଙ୍କର ଭାଇ ଦେହ ଅସୁସ୍ଥ ଅବସ୍ଥାରେ ଥିବାବେଳେ ପାଣି ପିଉ ଥିଲେ । ସେ ଅଳ୍ପପାଣି ପିଇଛନ୍ତି କି ନାହିଁ ଠାକୁର ତାଙ୍କ ହାତରୁ ପାଣି ଗ୍ଲାସକୁ ଛଡ଼ାଇ ନେଲେ । ଭାଇ ରାଗିଗଲେ ଏବଂ କହିଲେ, 'ତୁମେ ମୋତେ ପାଣି ପିଇବାରେ ବାଧା ସୃଷ୍ଟିକଲ । ତୁମେ ମଧ୍ୟ ସେହିପରି ଯନ୍ତ୍ରଣା ଭୋଗ କରିବ । ତୁମେ ମଧ୍ୟ ତୁମ ଗଳାରେ ସେହିପରି ଯନ୍ତ୍ରଣା ପାଇବ ।'

ଠାକୁର କହିଲେ, ''ଭାଇ, ମୋର ତୁମକୁ କଷ୍ଟଦେବାର ଉଦ୍ଦେଶ୍ୟ ନଥିଲା । ତୁମେ ଅସୁସ୍ଥ । ପାଣି ତୁମର ସ୍ୱାସ୍ଥ୍ୟ ଖରାପ କରିବ । ସେଇଥିପାଇଁ ମୁଁ ପାଣି ଗ୍ଲାସ ତୁମ ହାତରୁ ଛଡ଼ାଇ ନେଲି । ତେବେ ତୁମେ କାହିଁକି ମୋତେ ଏପରି ଅଭିଶାପ ଦେଲ ?'' ଭାଇ କାନ୍ଦି କାନ୍ଦି କହିଲେ, 'ଭାଇ, ''ମୁଁ ଜାଣେ ନାହିଁ । ଏହି ଶବ୍ଦଗୁଡ଼ିକ ମୋର ପାଟିରୁ ବାହାରି ପଡ଼ିଲା । ଏହା ନିଶ୍ଚିତ ଭାବେ ଫଳିବ ।'' ଠାକୁର ରୋଗରେ ପଡ଼ିଥିବା ସମୟରେ ମୋତେ କହିଲେ, ''ମୁଁ ମୋ ତଣ୍ଟିରେ ଏହି ଗଳାକର୍କଟ ରୋଗ ସେହି ଅଭିଶାପରୁ ଭୋଗ କରୁଛି । ତୁମେ ଭବିଷ୍ୟତରେ ଏପରି ଯନ୍ତ୍ରଣା ଭୋଗ କରିବ ନାହିଁ । ମୁଁ ତୁମର ସମସ୍ତ କଷ୍ଟକୁ ଗ୍ରହଣ କରିଛି ।'' ଏହାର ଉତ୍ତରରେ ମୁଁ କହିଲି, ''ଯଦି ଏପରି ଘଟଣା ତୁମକୁ ଘଟେ, ତେବେ ସାଧାରଣ ଲୋକମାନେ କିପରି ରହିପାରିବେ ?'' ଏହାଶୁଣି ଠାକୁର ମନ୍ତବ୍ୟ ଦେଲେ, ''ମୋର ଭାଇ ଜଣେ ନୈଷ୍ଠିକ ଲୋକଥିଲେ । ତାଙ୍କର ବାକ୍ୟ ନିଶ୍ଚିତ ସତ୍ୟ ହେଲା । ସମସ୍ତଙ୍କର କଥା କ'ଣ ଏହିପରି ପୂର୍ଣ୍ଣ ହୁଏ ?''

କର୍ମର ଫଳ ସ୍ଥିର ନିଶ୍ଚିତ । କିନ୍ତୁ ଠାକୁରଙ୍କର ନାମ ଜପ କରି, ଏହାର ଗଭୀର

ପ୍ରଭାବକୁ କମ୍ କରାଯାଇ ପାରିବ । ଯଦି ତୁମର ଏକବିରାଟ କ୍ଷତ ହେବାର ଭବିତବ୍ୟ ରହିଛି, ତୁମେ ଅତ୍ୟନ୍ତ ପକ୍ଷେ କ୍ଷୁଦ୍ର ପିନ୍‌କଣ୍ଟାର କ୍ଷତ ଭୋଗ କରିବ । ଜପ ଓ ପବିତ୍ରତା ଫଳରେ କର୍ମର ପ୍ରଭାବକୁ ପ୍ରତିରୋଧ କରାଯାଇ ପାରିବ । କର୍ମର ଗଭୀର ପ୍ରଭାବକୁ ଈଶ୍ୱରଙ୍କ ପବିତ୍ରନାମ ନେଇ କମ୍ କରାଯାଇ ପାରିବ ।''

ଭକ୍ତ ପଚାରୁଛନ୍ତି 'ମା', ବହୁ ଲୋକ ମନ୍ତ୍ର ନିଅନ୍ତି । କିନ୍ତୁ ସେମାନେ କ'ଣ ପାଆନ୍ତି କିଛି ବୁଝି ହୁଏନା ।

ଶ୍ରୀମା' ଉତ୍ତର ଦେଲେ, 'ମନ୍ତ୍ର ସାହାଯ୍ୟରେ ଶକ୍ତି ପ୍ରଦାନ ହୁଏ । ଗୁରୁ ଶିଷ୍ୟ ନିକଟକୁ ଯାଆନ୍ତି ଓ ଶିଷ୍ୟ ଗୁରୁ ନିକଟକୁ । ସେଇଥିପାଇଁ ଗୁରୁ ଦୀକ୍ଷା ଦେବା ସମୟରେ ଶିଷ୍ୟର ସମସ୍ତ ପାପକୁ ଗ୍ରହଣ କରିଥାନ୍ତି ଏବଂ ଶାରିରୀକ ଯନ୍ତ୍ରଣା ଭୋଗ କରନ୍ତି । ଗୁରୁ ହେବା ଅତ୍ୟନ୍ତ କଷ୍ଟସାଧ୍ୟ । କାରଣ ସେ ଶିଷ୍ୟର ସବୁ ପାପର ଦାୟିତ୍ୱ ନିଅନ୍ତି । ଯଦି ଶିଷ୍ୟ କିଛି ପାପ କରନ୍ତି, ତାହା ଗୁରୁଙ୍କୁ ପ୍ରଭାବିତ କରେ । ଅପର ପକ୍ଷରେ ଯଦି ଶିଷ୍ୟ ଉତ୍ତମ ହୋଇଥାନ୍ତି, ଗୁରୁ ମଧ୍ୟ ଉପକୃତ ହୁଅନ୍ତି । କେତେକ ଶିଷ୍ୟ ଖୁବ୍ ଶୀଘ୍ର ଉନ୍ନତି କରନ୍ତି ଏବଂ ଅନ୍ୟ କେତେକ ଅତ୍ୟନ୍ତ ଧୀର ଭାବରେ । ଏହା ମନ ଉପରେ ନିର୍ଭର କରେ, ଯାହା ତାହାର ଅତୀତର କର୍ମ ଫଳରେ ସେ ଲାଭ କରିଥାଏ ।'

ଜଣେ ସ୍ତ୍ରୀଲୋକ ଶ୍ରୀମା'ଙ୍କୁ ଗୋଟିଏ ପତ୍ର ଲେଖିଥିଲେ, 'ମା', ମୁଁ ବୟସରେ କମ୍ । ମୋର ଶାଶୁ ଓ ଶ୍ୱଶୁର ଆପଣଙ୍କ ନିକଟକୁ ଯିବାକୁ ଅନୁମତି ଦେଉନାହାଁନ୍ତି । ମୁଁ ସେମାନଙ୍କର ଇଚ୍ଛା ବିରୁଦ୍ଧରେ କିପରି ଯିବି ? ମୋର ଇଚ୍ଛା ତୁମ ନିକଟକୁ ଯାଇ ଆଶୀର୍ବାଦ ପାଇବାକୁ ?' ଶ୍ରୀମା' ଉତ୍ତର ଦେଇ କହିଛନ୍ତି, 'ସନ୍ତାନ ମୋର, ତୁମର ଏଠାକୁ ଆସିବା ପ୍ରୟୋଜନ ନାହିଁ । ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ ବ୍ୟାପ୍ତ ସେହି ପ୍ରଭୁଙ୍କୁ ପ୍ରାର୍ଥନା କର । ସେ ତୁମର ଉପରେ ଆଶୀର୍ବାଦ ବର୍ଷା କରିବେ ।' ଭକ୍ତ ପଚାରୁଛନ୍ତି, 'ମା', ମନ କାହିଁକି ସ୍ଥିର ରହୁନାହିଁ ? ମୁଁ ଯେତେବେଳେ ଈଶ୍ୱରଙ୍କୁ ଭାବିବାକୁ ଚାହୁଁଛି, ମୁଁ ଦେଖୁଛି ଏହା ସଂସାରରେ ଯାବତୀୟ ବସ୍ତୁ ପ୍ରତି ଆକର୍ଷିତ ? ଶ୍ରୀମା' କହିଛନ୍ତି ''ଯଦି ମନ ସଂସାର ବିଷୟ ପ୍ରତି ସଦାସର୍ବଦା ଆକର୍ଷିତ ଯଥା ଟଙ୍କା ପଇସା ଓ ପରିବାର ଏହା କ୍ଷତିକାରକ । ତା'ଛଡ଼ା ପ୍ରତ୍ୟେକ ଦିନର କର୍ମ ସହିତ ମନ ବୁଲୁଥାଏ । ଯଦି ତୁମେ ଧ୍ୟାନରେ ସଫଳ ହେଉନାହଁ , ତେବେ ଜପ ଅଭ୍ୟାସ କର । ଜପ ପୂର୍ଣ୍ଣତା ଆଣିଦେବ । ଜପ ମାଧ୍ୟମରେ ଜଣେ ପୂର୍ଣ୍ଣତା ପାଇବ। ଯଦି ଧ୍ୟାନ କରିବାର ଆଗ୍ରହ ଆସିବ, ତେବେ ଭଲ ଓ ଉତ୍ତମ । ଯଦି ନୁହେଁ, ତେବେ ମନକୁ ଧ୍ୟାନ କରିବା ପାଇଁ ବାଧ୍ୟ କରନାହିଁ ।'

'ଯଦି ମନକୁ କାର୍ଯ୍ୟ ଭିତରେ ନିୟୋଜିତ କରି ରଖିବ, ତେବେ ତାହା କ୍ଷୁଦ୍ର

ଚିନ୍ତାରେ ବ୍ୟସ୍ତ ହେବନାହିଁ । କିନ୍ତୁ ଯଦି ତୁମେ ଅଳସୁଆ ହୋଇବସ, ତେବେ ମନ ବିଭିନ୍ନ ଚିନ୍ତାରେ ବ୍ୟସ୍ତ ରହିବ ।' ଶିଷ୍ୟ ପଚାରିଲେ, 'ମା, ଜପ କରିବାବେଳେ ମନ କାହିଁକି ସେଥିରେ ନିମଗ୍ନ ହେଉନାହିଁ ?' ଶ୍ରୀମା' କହୁଛନ୍ତି, 'ତୁମେ ଅଭ୍ୟାସ କଲେ ସଫଳ ହେବ । ଅଭ୍ୟାସ ଆଦୌ ଛାଡ଼ ନାହିଁ । ମନ ସ୍ଥିର ନ ହେଲେ ମଧ୍ୟ ଜପକର । ତୁମର ଆଧାତ୍ମିକ ଅଭ୍ୟାସ ନିଷ୍ଠାର ସହିତ କର । ତାଙ୍କର (ଈଶ୍ୱର) ନାମ ବାରମ୍ବାର ନେଲେ ମନ ସ୍ଥିର ହେବ ଯେପରି ବତୀର ଅଗ୍ନିଶିଖା ପବନରୁ ସୁରକ୍ଷିତ ରହେ। ପବନ ଅଗ୍ନିଶିଖାକୁ ଅସ୍ଥିର କରେ । ସେହିପରି ଇଚ୍ଛାମାନେ ମନକୁ ସ୍ଥିର କରିପାରନ୍ତି ନାହିଁ । ଏହାଛଡ଼ା, ଯଦି ମନ୍ତ୍ର ଠିକ୍ ଭାବରେ ଉଚ୍ଚାରିତ ନ ହୁଏ, ତେବେ ଫଳପାଇବାରେ ବିଳମ୍ବ ଘଟେ । ଜଣେ ମହିଳାଙ୍କର ମନ୍ତ୍ର ଥିଲା 'ରିକ୍ମିଣୀ ନାଥାୟ ।' ସେ 'ରୁକୁ' 'ରୁକୁ' ବୋଲି ଉଚ୍ଚାରଣ କରନ୍ତି । ଏହାଫଳରେ ତାଙ୍କର ଉନ୍ନତି ବାଧାପ୍ରାପ୍ତ ହେଲା । କିନ୍ତୁ ପ୍ରଭୁଙ୍କର ଆଶୀର୍ବାଦରୁ ସେ ପରେ ତାଙ୍କର ମନ୍ତ୍ର ସଂଶୋଧନ କରିପାରିଲେ ।'

ଜଣେ ଭକ୍ତ ମା'ଙ୍କୁ ପଚାରିଲେ, "ଠାକୁର କହିଛନ୍ତି, 'ଯେଉଁମାନେ ଏଠାକୁ ଆସନ୍ତି (ଅର୍ଥାତ୍ ଯେଉଁମାନେ ଶ୍ରୀରାମକୃଷ୍ଣଙ୍କୁ ସେମାନଙ୍କର ଆଧାତ୍ମିକ ଆଦର୍ଶ ଭାବରେ ଗ୍ରହଣ କରନ୍ତି) ପୁନରାୟ ଜନ୍ମ ହେବେ ନାହିଁ । ପୁନଶ୍ଚ ସ୍ୱାମୀଜୀ କହିଛନ୍ତି । ''ସନ୍ନ୍ୟାସରେ ଦୀକ୍ଷିତ ନ ହେଲେ କାହାରି ମୋକ୍ଷ ପ୍ରାପ୍ତ ହୁଏନା । ତେବେ ଗୃହୀମାନଙ୍କ ପାଇଁ ମାର୍ଗ କ'ଣ ?''

ଶ୍ରୀମା' ଉତ୍ତର ଦେଲେ, 'ହଁ, ଠାକୁର ଯାହା କହିଛନ୍ତି ଠିକ୍, ସ୍ୱାମୀଜୀ ଯାହା କହିଛନ୍ତି ତାହା ମଧ୍ୟ ଠିକ୍ । ଗୃହୀମାନଙ୍କୁ ବାହ୍ୟିକ ତ୍ୟାଗ କରିବାର ଆବଶ୍ୟକତା ନାହିଁ । ଅନ୍ତଃସ୍ଥ ତ୍ୟାଗ ସେମାନଙ୍କ ନିକଟକୁ ଆପେ ଆପେ ଆସିବ । କେତେକ ମଧ୍ୟ ବାହ୍ୟିକ ତ୍ୟାଗ ଆବଶ୍ୟକ କରନ୍ତି । ତୁମେ ଭୟ କରୁଛ କାହିଁକି ? ଠାକୁରଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କର ଏବଂ ସଦାସର୍ବଦା ମନେ ରଖ ଯେ ସେ ଅଛନ୍ତି ।' ଶିଷ୍ୟ ପଚାରୁଛନ୍ତି, 'ମା: ମୁଁ ଠାକୁରଙ୍କୁ ଦେଖିନାହିଁ ।'

ମା' କହିଲେ, 'ଠାକୁର ନିଜେ ହେଉଛନ୍ତି ପ୍ରଭୁ ।'

ଶିଷ୍ୟ- ଯଦି ଠାକୁର ହେଉଛନ୍ତି ଈଶ୍ୱର, ତେବେ ତୁମେ କିଏ ?'

ଶ୍ରୀମା'- 'ମୁଁ ଆଉ କିଏ ହୋଇପାରେ ?'

ଶିଷ୍ୟ-'ଯଦି ତୁମେ ଚାହିଁବ, ତେବେ ମୋତେ ଠାକୁରଙ୍କୁ ଦେଖାଇ ଦେଇ ପାରିବ ?'

ଶ୍ରୀମା- 'ଠାକୁର ଯେତେବେଳେ ନରେନ୍ଦ୍ର (ସ୍ୱାମୀ ବିବେକାନନ୍ଦ)ଙ୍କୁ ସ୍ପର୍ଶ କଲେ, ସେ ଚକିତ ହୋଇଉଠିଲେ । ଆଧାତ୍ମିକ ଶୃଙ୍ଖଳା ଅଭ୍ୟାସ କର ଏବଂ ତୁମେ

ତାଙ୍କୁ ଦେଖି ପାରିବ ।'

ଶିଷ୍ୟ- 'ତୁମକୁ ଗୁରୁ ଭାବରେ ପାଇ ଜଣକର ଆଧ୍ୟାତ୍ମିକ ସାଧନା କରିବାର ଆବଶ୍ୟକତା କ'ଣ ?'

ଶ୍ରୀମା'- 'ହଁ, ତାହା ଠିକ୍ । କିନ୍ତୁ କଥାଟି ହେଲା, ରୋଷେଇ ପାଇଁ ଘରେ ସବୁ ପ୍ରକାର ଖାଦ୍ୟ ସାମଗ୍ରୀ ରହିଥାଇ ପାରେ କିନ୍ତୁ ଜଣକୁ ରୋଷେଇ କରିବାକୁ ହେବ ଓ ଖାଇବାକୁ ହେବ । ଯେ ଚଞ୍ଚଳ ରୋଷେଇ କରେ, ସେ ଚଞ୍ଚଳ ଖାଏ । କେହି ସକାଳେ ଖାଆନ୍ତି, କେହି ସଂଧ୍ୟାବେଳେ ଏବଂ ଅନ୍ୟ କେହି ଅଛନ୍ତି ସେମାନେ ଭୋକରେ ରୁହନ୍ତି କାରଣ ସେମାନେ ଅଳସୁଆ ଏବଂ ରୋଷେଇ କରିବାକୁ ଚାହାଁନ୍ତି ନାହିଁ ।'

ଶିଷ୍ୟ- 'ମା; ତୁମେ କ'ଣ କହିଲ ମୁଁ ବୁଝି ପାରିଲି ନାହିଁ ।'

ଶ୍ରୀମା'- 'ଯେ ଅତି ନିଷ୍ଠାର ସହ ଆଧ୍ୟାତ୍ମିକ ଶୃଙ୍ଖଳାକୁ ଅଭ୍ୟାସ କରେ, ସେ ଶୀଘ୍ର ଈଶ୍ୱରଙ୍କୁ ପାଏ । ଯଦି ଜଣେ ଆଦୌ ଆଧ୍ୟାତ୍ମିକ ଶୃଙ୍ଖଳାକୁ ଅଭ୍ୟାସ ନକରେ, ସେ ତାଙ୍କୁ (ଈଶ୍ୱରଙ୍କୁ) ଜୀବନର ଶେଷ ମୁହୂର୍ତ୍ତରେ ପାଇବ- ନିଶ୍ଚୟ ପାଇବ କିନ୍ତୁ ଯେଉଁ ଲୋକ କେବଳ ପାଟିତୁଣ୍ଡ କରେ ଏବଂ ଆଦୌ ଆଧ୍ୟାତ୍ମିକ ଶୃଙ୍ଖଳା ଅଭ୍ୟାସ କରେ ନାହିଁ, ତାକୁ ବହୁ ସମୟ ଦରକାର ।

ଦିନେ ଈଶ୍ୱର ବିଶ୍ୱାସ ସଂପର୍କରେ ଭକ୍ତର ସଂଶୟକୁ ଦୂର କରିବା ପାଇଁ ଶ୍ରୀମା' କହୁଛନ୍ତି, 'ପୁଅ ମୋର; କେବଳ କ'ଣ ପୁସ୍ତକ ଅଧ୍ୟୟନ କରି କେହି ବିଶ୍ୱାସ ପାଏ ? ଅତ୍ୟଧିକ ଅଧ୍ୟୟନ ବିଭ୍ରାନ୍ତ କରେ । ମନେକର ମୁଁ ତୁମକୁ ଚିଠିଟିଏ ଲେଖିଲି ଯେ ତୁମେ ଏହି ଏହି ଜିନିଷ ଆଣିବ । କେତେ ସମୟ ପର୍ଯ୍ୟନ୍ତ ତୁମର ଏହି ଚିଠିଟି ଦରକାର ? ସେ ପର୍ଯ୍ୟନ୍ତ ଦରକାର ଯେ ପର୍ଯ୍ୟନ୍ତ ଏହା କ'ଣ ଜାଣିନାହଁ । ଯେତେବେଳେ ତୁମେ ଚିଠିର ବିଷୟବସ୍ତୁ ଜାଣିବ, ତେବେ ତାହାର ଆଉ ଆବଶ୍ୟକତା କ'ଣ ? ତା'ପରେ ତୁମର ଦରକାର ସେହି ଜିନିଷଗୁଡ଼ିକୁ ଆଣିବା । ତାହା ନ କରି, ଚିଠିଟିକୁ ଦିନରାତି ପଢ଼ିବାରେ ଲାଭ କ'ଣ ?'

ଭୋଜନ କରିବା ସଂପର୍କରେ ଶ୍ରୀମା' କହନ୍ତି, 'ପ୍ରଥମେ ପ୍ରଭୁଙ୍କୁ ସମର୍ପଣ କର ଯାହା ତୁମେ ଖାଇବାକୁ ଯାଉଛ । ତା'ପରେ ତାହାକୁ ପ୍ରସାଦ ଭାବରେ ଗ୍ରହଣ କର । ଏହା ତୁମର ରକ୍ତକୁ ପରିଷ୍କାର କରିବ ଏବଂ ପରିଷ୍କାର ରକ୍ତ ତୁମର ମନକୁ ପରିଷ୍କାର କରିବ ।'

ଶ୍ରୀମା' ତିନୋଟି ବିଷୟ ପ୍ରତି ସାବଧାନ ରହିବାକୁ ପରାମର୍ଶ ଦେଇ କହିଛନ୍ତି, 'ପ୍ରଥମରେ ନଈକୂଳ ଉପରେ ଥିବା ଗୃହ । ଯେକୌଣସି ସମୟରେ ନଈ ପାଣି ଗୃହକୁ ଭାଙ୍ଗିଦେଇ ଭସାଇ ଦେଇପାରେ । ଦ୍ୱିତୀୟରେ ସାପ, ତାକୁ ଦେଖିବା ମାତ୍ରେ ତୁମେ ସାବଧାନ ହୋଇଯିବ । କାରଣ ତୁମେ ଜାଣିନାହଁ କେତେବେଳେ ସେ ତୁମକୁ

ଆକ୍ରମଣ କରିବ । ତୃତୀୟ ହେଉଛି ସନ୍ନ୍ୟାସୀ । ତୁମେ ଯେତେବେଳେ ସନ୍ନ୍ୟାସୀ ଦେଖିବ, ତାଙ୍କୁ ସମ୍ମାନ ଦେବ । ତାଙ୍କୁ ଅସମ୍ମାନ ସୂଚକ ଇଙ୍ଗିତ ମଧ୍ୟ କରିବ ନାହିଁ ।'

ଦିନେ ଶ୍ରୀମା' କହିଲେ, 'ତୁମେ ଯେତେ ଜପ କରନା କାହିଁକି, ତୁମେ ଯେତେ କର୍ମ କରନା କାହିଁକି ଏହାର କିଛି ମୂଲ୍ୟନାହିଁ । ଯଦି ମହାମାୟା ମାର୍ଗ ଉନ୍ମୋଚନ ନ କରନ୍ତି, ତାହାହେଲେ କ'ଣ କେହି କିଛି କରି ପାରିବ ? ହେ ବଦ୍ଧଜୀବ ! ସମର୍ପଣ କର, ସମର୍ପଣ କର । ତେବେ ଯାଇ ସେ ଦୟାର୍ଦ୍ରହୋଇ ତୁମ ପାଇଁ ପଥ ପରିଷ୍କାର କରିଦେବେ ।' ଏହା କହିସାରିବା ପରେ ସେ ଠାକୁରଙ୍କ ଜୀବନରେ କାମାରପୁକୁରଠାରେ ଘଟିଥିବା ଗୋଟିଏ ଘଟଣା ବର୍ଣ୍ଣନା କଲେ ।

'ଦିନେ ଜ୍ୟେଷ୍ଠ ମାସ ସଂଧ୍ୟାରେ ପ୍ରବଳ ବର୍ଷା ହେଲା । ସମଗ୍ର ଅଞ୍ଚଳ ପାଣିରେ ବୁଡ଼ିଗଲା । ଠାକୁର ମୁଖ୍ୟରାସ୍ତାରେ ପାଣି ଆଡ଼େଇ ଡୋମପଡ଼ା ଆଡ଼କୁ ଯାଉଥିଲେ । ସେଠାରେ ବହୁ ମାଛ ଏକାଠି ହୋଇଥିବାର ଦେଖି ଲୋକମାନେ ବାଡ଼ିରେ ବାଡ଼େଇ ମାଛ ମାନଙ୍କୁ ମାରୁଥିଲେ । ଗୋଟିଏ ମାଛ ଠାକୁରଙ୍କର ଗୋଡ଼ ଚାରିପାଖରେ ବୁଲିବାକୁ ଲାଗିଲା । ଏହାକୁ ଲକ୍ଷ୍ୟକରି, ଠାକୁର କହିଲେ, 'ହେ, ଏହି ମାଛଟିକୁ ମାର ନାହିଁ । ଏହା ମୋର ଗୋଡ଼ ଚାରିପାଖରେ ବୁଲୁଛି, ମୋ ପାଖରେ ସଂପୂର୍ଣ୍ଣ ସମର୍ପଣ କରିଛି । ଯଦି କେହି ଅଛ, ତେବେ ଏହି ମାଛଟିକୁ ନେଇ ପୋଖରୀରେ ଛାଡ଼ି ଦିଅ ।' ତା'ପରେ ସେ ନିଜେ ସେହି ମାଛଟିକୁ ନେଇ ପୋଖରୀରେ ଛାଡ଼ି ଦେଲେ ଏବଂ କହିଲେ, 'ଆହାଃ, ଯଦି କେହି ଏହିପରି ଭାବରେ ସମର୍ପଣ କରେ, ତେବେ ଯାଇ ସେ ସୁରକ୍ଷା ଲାଭ କରେ ।'

ଶ୍ରୀମା'ଙ୍କର ଏହି ଉକ୍ତି ଗୀତାର ସେହି ଶ୍ଳୋକର ଯଥାର୍ଥତାକୁ ପ୍ରତିପାଦନ କରେ ।

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ॥

ଋକ୍‌ବେଦ : ୧୮/୬୬

ଅର୍ଥାତ୍' ତୁମେ ସମସ୍ତ ପ୍ରକାର ଧର୍ମ ଓ ଅଧର୍ମ ପରିତ୍ୟାଗ କରି ଏକମାତ୍ର ମୋତେ ହିଁ ଆଶ୍ରୟ କର; ମୁଁ ତୁମକୁ (କର୍ମ-ବନ୍ଧନ ରୂପକ) ସମସ୍ତ ପ୍ରକାର ପାପରୁ ମୁକ୍ତ କରିବି- ତୁମେ ଶୋକ କର ନାହିଁ ।'

ଶ୍ରୀମା'ଙ୍କର ଭକ୍ତମାନଙ୍କ ସହିତ ଏହି କଥୋପକଥନ ପ୍ରତ୍ୟେକ ମନୁଷ୍ୟ ପାଇଁ ଶିକ୍ଷଣୀୟ, ଗ୍ରହଣୀୟ ଓ ବଞ୍ଚିବାର ଧ୍ୟେୟ ।



# ମହାସମାଧି

ଜାନୁଆରୀ ୧୯୧୯ ମସିହାରେ ଶ୍ରୀମା' ଜୟରାମବାଟୀ ଅଭିମୁଖେ ଯାତ୍ରା କଲେ । ନିଜର ଜନ୍ମମାଟିକୁ ଏହା ଥିଲା ତାଙ୍କର ଶେଷଦର୍ଶନ । ରାଧୁ ଆସନ୍ନ ସନ୍ତାନ ପ୍ରସବା ଥିବା ହେତୁ ତାଙ୍କର ଜୟରାମବାଟୀକୁ ଯିବା ହୋଇଥିଲା । ବାଟରେ କୋଆଲପଡ଼ାରେ ଥିବା ଜଗଦମ୍ବା ଆଶ୍ରମରେ ରହିବାକୁ ପଡ଼ିଥିଲା । ସେଠାରେ ମେ'୯ତାରିଖ ଦିନ ରାଧୁର ପୁଅଟିଏ ଜନ୍ମଲାଭକରିବାରୁ ଶ୍ରୀମା' ଆଶ୍ୱସ୍ତ ହେଲେ । ଜୁଲାଇ ଶେଷଭାଗରେ ଜୟରାମବାଟୀ ଯାଇ ସେଠାରେ ୨୪ ଫେବୃୟାରୀ ୧୯୨୦ ପର୍ଯ୍ୟନ୍ତ ରହିଥିଲେ । କିନ୍ତୁ ସେଠାରେ ତାଙ୍କ ଦେହ କ୍ରମଶଃ ଖରାପ ହେବାକୁ ଲାଗିଥିଲା । ଏକ ପ୍ରକାର ଜ୍ୱରରେ ସେ ଆକ୍ରାନ୍ତ ହେଲେ ଏବଂ ତାହା ପ୍ରଶମିତ ହେଉ ନଥିଲା । ସ୍ୱାମୀ ସାରଦାନନ୍ଦଙ୍କ  ଅନୁରୋଧ କ୍ରମେ ସେ ୨୪ ଫେବୃୟାରୀରେ ସେଠାରୁ କଲିକତା ଅଭିମୁଖେ ପ୍ରସ୍ଥାନ କଲେ । ତାଙ୍କର ବିଦାୟ ବେଳାରେ ଗ୍ରାମର ଆବାଳ ବୃଦ୍ଧ ବନିତା ସମବେତ ହୋଇ, ତାଙ୍କୁ ପୁଣିଥରେ ଗାଁକୁ ଆସିବାକୁ ଅନୁରୋଧ କରୁଥିଲେ । ଶ୍ରୀମା' ସିଂହବାହିନୀ ଓ ଅନ୍ୟାନ୍ୟ ଦେବଦେବୀଙ୍କ ନାମ ଉଚ୍ଚାରଣ କରି ପ୍ରଣତି ବାଢ଼ିଲେ । ଗାଁର ଶେଷସୀମା ନ ଆସିବା ପର୍ଯ୍ୟନ୍ତ, ସେ ପାଲିଙ୍କିରେ ଚଢ଼ି ଆସିଲେ ନାହିଁ । ତାଙ୍କର ଭାଇ ପ୍ରସନ୍ନର ସ୍ତ୍ରୀ ତାଙ୍କର ପାଦଧୌତ କରି ପାଣି, ପାନ ଓ ମିଠା ସମର୍ପଣ କଲେ ଯେପରି ଦେବୀଙ୍କୁ ପ୍ରଦାନ କରାଯାଏ । କୋଆଲପଡ଼ା ଆଶ୍ରମରେ ରାତିରେ ବିଶ୍ରାମ କଲେ । ସକାଳୁ କଲିକତାକୁ ବାହାରିବା ସମୟରେ ବ୍ରହ୍ମଚାରୀ ଯୋଗେନ୍‌କୁ ଗୋଟିଏ ହାତବାଡ଼ି ଯାହା ପ୍ରସନ୍ନ  ମାମୁଁଙ୍କର ସମ୍ପତ୍ତି ଥିଲା, ତାଙ୍କୁ ଦେବାକୁ ଦେଲେ । ତା' ସହିତ ମଧ ଦେଲେ ମଶାରିଟିଏ ଏବଂ କହିଲେ, 'ପୁଅ ମୋର, ଶରତ (ସାରଦାନନ୍ଦ) ଅଛି, ସେ ସମସ୍ତଙ୍କର ଦେଖାଶୁଣା କରିବ' ୨୭ ଫେବୃୟାରି ରାତି ୯ଟା ବେଳେ କଲିକତାରେ ପହଞ୍ଚିଲେ । ତାଙ୍କୁ ସ୍ୱାଗତ କରିବାକୁ ଅପେକ୍ଷା କରିଥିଲେ ଯୋଗୀନ୍‌ମା ଓ ଗୋଲାପମା' । ସେମାନେ ଶ୍ରୀମା'ଙ୍କର ସେହି କଙ୍କାଳସାର ଶରୀରକୁ ଦେଖି ହତଚକିତ ହୋଇଗଲେ ।

ଜ୍ୱର ରୋଗ ତାଙ୍କୁ ଛାଡୁ ନଥିଲା । ଆୟୁର୍ବେଦ ଚିକିତ୍ସା ଆରମ୍ଭ କଲେ

କବିରାଜ ଶ୍ୟାମ ଦାସ ବାଚସ୍ପତି । କିନ୍ତୁ ସେଥିରେ କିଛି ବିଶେଷ ଲାଭ ନହେବାରୁ ଏଲୋପ୍ୟାଥିକ ଡାକ୍ତର ଡକ୍ଟର ନୀଳରତନ ସରକାର ଚିକିତ୍ସା ଆରମ୍ଭ କଲେ । ସେ ଏହି ଜ୍ୱରକୁ କଳାଜ୍ୱର ବୋଲି ଘୋଷଣା କଲେ । ସେହି ସମୟରେ ଏହି ଜ୍ୱରର ଚିକିତ୍ସା ପାଇଁ କୌଣସି ଔଷଧ ନଥିଲା, ତଥାପି ଚିକିତ୍ସା ଚାଲିଲା । କିନ୍ତୁ ଫଳ କିଛି ହେଲାନାହିଁ । ପ୍ରଥମେ ଜ୍ୱର ସନ୍ଧ୍ୟାରେ, ପରେ ସକାଳେ ଆସୁଥିଲା । କିନ୍ତୁ ଏହା କ୍ରମଶଃ ଦିନସାରା ଲାଗି ରହିଲା । ଉତ୍ତାପ ୧୦୩ ଡିଗ୍ରୀକୁ ବୃଦ୍ଧି ପାଉଥିଲା । ଦିନସାରା ସେ ଭୟଙ୍କର ଜ୍ୱଳନର ପୀଡ଼ା ପାଉଥିଲେ । ତାଙ୍କୁ ସଦାସର୍ବଦା ପଙ୍ଖା କରିବାକୁ ହେଉଥିଲା ଓ ହାତର ପାପୁଲିରେ ବରଫ ଲଦାଯାଉଥିଲା । ଏହି ରୋଗରେ ପଡ଼ିଥିବାବେଳେ ମା'ଙ୍କୁ ଭାତ, ଦୁଧ ଓ ପରିବା ତରକାରି ଦିଆ ଯାଉଥିଲା । ଉତ୍ତମ ଖାଦ୍ୟ ଖାଇବା ଦ୍ୱାରା କାଳେ ତାଙ୍କ ଶରୀର ଓ ସ୍ୱାସ୍ଥ୍ୟ ଫେରିଆସିବ, ସେଥିପାଇଁ ଭଲ ଖାଦ୍ୟ ଦେବାକୁ ଆର୍ଯ୍ୟୁବେଦିକ କବିରାଜ ନିର୍ଦ୍ଦେଶ ଦେଉଥିଲେ ।

ଦିନେ ଶିଷ୍ୟା ସରଳା ଯେ କି ମା'ଙ୍କର ସେବା ଶୁଶ୍ରୂଷାର ଦାୟିତ୍ୱ ନେଇଥିଲେ । ମା'ଙ୍କୁ ଖାଇବାକୁ ଦେବା ସମୟରେ ସେଠାରେ ମା'ଙ୍କର ଗୃହୀ ଭକ୍ତ ଓ ହୋମିଓପ୍ୟାଥିକ ଡାକ୍ତର ଜେ.ଏନ୍.କାଞ୍ଜିଲାଲ ଗୃହକୁ ପଶିଆସି ମା'ଙ୍କୁ ଅଧିକ ଖାଦ୍ୟ ଦିଆଯାଉଥିବାରୁ ଶିଷ୍ୟା ସରଳା ଉପରେ ବିରକ୍ତ ପ୍ରକାଶ କରି ଅଧିକା ଖାଦ୍ୟଦେଇ ମା'ଙ୍କୁ ମାରିଦିଆଯିବ ବୋଲି କହିବା ସହିତ ମା'ଙ୍କ ସେବା ପାଇଁ ଦୁଇଟି ତାଲିମ ନର୍ସ ଆଣିବାକୁ ଘୋଷଣା କଲେ । ଏଥିରେ ଶିଷ୍ୟା ସରଳା କାନ୍ଦ କାନ୍ଦ ହୋଇଗଲେ । ଡାକ୍ତର କାଞ୍ଜିଲାଲ୍ ଚାଲି ଯିବା ପରେ ଶ୍ରୀମା' ସରଳାକୁ ସାନ୍ତ୍ୱନା ଦେଇ ଡାକ୍ତରଙ୍କ ବ୍ୟବହାରକୁ ନାପସନ୍ଦ କଲେ ଏବଂ ସେହି ଡାକ୍ତରଖାନାର ସେବିକାଙ୍କ ସେବା ନେବେ ନାହିଁ ବୋଲି ମଧ କହିଲେ । ସେହିଦିନ ଠାରୁ ତାଙ୍କର ଖାଇବା କମିଗଲା ।

କ୍ରମାଗତ ରୋଗରେ ପଡ଼ି ରହିବା କାରଣରୁ ମା'ଙ୍କର ସ୍ୱଭାବ ଛୋଟ ପିଲା ପରି ହୋଇଯାଇଥାଏ । ସେ ଗଙ୍ଗାରେ ଯାଇ ଗାଧୋଇବାକୁ ଅଳି କରୁଥିଲେ ଏବଂ ତାଙ୍କୁ ସେଠାକୁ ନ ନେବା ପର୍ଯ୍ୟନ୍ତ ସେ ଖାଇବେ ନାହିଁ ବୋଲି ଜିଦ୍ ମଧ କରୁଥିଲେ । ସରଳା ତାଙ୍କୁ ବୁଝାଇ ଖାଇବାକୁ ଦେଲେ ମା' ତାକୁ କହୁଥିଲେ, 'ନାଁ, ମୁଁ ଖାଇବି ନାହିଁ । ତୁମେ ମୋତେ ଖାଇବାକୁ କହୁଛ ଏବଂ ମୋ ବାହୁତଳେ ସେହି କାଠି (ଥର୍ମୋମିଟର)କୁ ରଖିଦେଉଛ ।' ସରଳା ସ୍ୱାମୀ ସାରଦାନନ୍ଦଙ୍କୁ ଡାକିବାକୁ କହିବା ମାତ୍ରେ ସେ ଅଳ୍ପ କିଛି ଖାଉଥିଲେ । ଦିନେ ସେ ଖାଇବାକୁ ପୂରା ମନା କରିଦେଇ ସ୍ୱାମୀ ସାରଦାନନ୍ଦଙ୍କୁ ଡାକିବାକୁ କହିଲେ । ସ୍ୱାମୀ ସାରଦା ନନ୍ଦ ଉପରକୁ ତତ୍‌କ୍ଷଣାତ୍ ଆସିଲେ । ତାଙ୍କ ପ୍ରତି ମା'ଙ୍କର ଆଚରଣରେ ପରିବର୍ତ୍ତନ ଦେଖି ସେ ଅଭିଭୂତ

ହେଲେ । ମା' ପୂର୍ବପରି ଅବଗୁଣ୍ଠନବତୀ ନ ଥିଲେ । ସେ ଶରତ୍ ମହାରାଜଙ୍କୁ ତାଙ୍କ ନିକଟରେ ବସିବାକୁ କହିଲେ, ତାଙ୍କ ଓଠକୁ ଶ୍ରଦ୍ଧାରେ ଛୁଇଁଲେ ଏବଂ ନିଜ ହାତରେ ତାଙ୍କ ଦୁଇ ହାତକୁ ଧରି ଅଭିଯୋଗ ଭରା କଣ୍ଠରେ କହିଲେ, ''ପୁଅ ମୋର, ମୋତେ ସେମାନେ ବିରକ୍ତ କରାଉଛନ୍ତି । ସବୁବେଳେ 'ଖାଅ' 'ଖାଅ' ବୋଲି କହୁଛନ୍ତି । ଏବଂ ସେମାନେ ଗୋଟିଏ କଥା ଜାଣିଛନ୍ତି, କିପରି ମୋ କାଖରେ ସେହି କାଠିଟିକୁ ରଖିବେ । ତୁମେ ତାକୁ (ଶିଷ୍ୟା) କୁହ, ସେ ଯେପରି ମୋତେ ବିରକ୍ତ ନ କରେ ।'

ସ୍ୱାମୀ ସାରଦାନନ୍ଦ ତାଙ୍କୁ ସାନ୍ତ୍ୱନା ଦେଲେ ଏବଂ କିଛି ଖାଇବା କଥା ପଚାରିଲେ । ମା' ହଁ ଭରିଲେ । ଖାଦ୍ୟ ଆସିବାରୁ ମା' କହିଲେ, 'ନାଁ, ତୁମେ ମୋତେ ଖୋଇ ଦିଅ । ମୁଁ ତା' ହାତରୁ ଖାଇବି ନାହିଁ । ତାଙ୍କ ପାଟିରେ ଟିକିଏ କ୍ଷୀର ଦେବା ପରେ ସ୍ୱାମୀ ସାରଦାନନ୍ଦ କହିଲେ, 'ମା', ଟିକିଏ ବିଶ୍ରାମ ନିଅ । ତା'ପରେ ଖାଇବ ।' ଏହାଶୁଣି ମା' ଖୁସିରେ କହିଲେ, 'ଦେଖିଲ, କେତେ ମଧୁର ଭାବରେ ସେ କହୁଛି, 'ମା'ଟିକିଏ ବିଶ୍ରାମ ନିଅ; ତା'ପରେ ଖାଇବ । ମୋ ଛୁଆକୁ କଷ୍ଟଦେଲେ । ପୁଅ ମୋର ଯାଅ; ବିଶ୍ରାମ ନିଅ । ଓହୋ ! ମୋ ପାଇଁ ସେ କେତେ କଷ୍ଟ ଭୋଗିଲାଣି ।'

ତାଙ୍କର ରୋଗ ଓ ଶାରିରୀକ ଯନ୍ତ୍ରଣା ବୃଦ୍ଧି ଘଟିବା ସତ୍ତ୍ୱେ, ତାଙ୍କର ମାତୃତ୍ୱ ଗୁଣ କ୍ଷୁଣ୍ଣ ହୋଇ ନଥିଲା । ସେ ଆଗନ୍ତୁକ ଅତିଥି ମାନଙ୍କର ସତ୍କାର ପ୍ରତି ମଧ ଦୃଷ୍ଟି ରଖିଥିଲେ । ଥରେ ତାଙ୍କର ଭଣଜା ରାମଲାଲ୍ ଏବଂ ଭାଣିଜୀ ଲକ୍ଷ୍ମୀଦେବୀ ତାଙ୍କୁ ଦେଖିବାକୁ ଆସିଥିଲେ । ସେମାନଙ୍କର ଗଲାବେଳେ କିଛି ଉପଢ଼ୌକନ ଦେବାକୁ ମା' ଭୁଲି ଯାଇଥିଲେ । ଏହା ମନେ କରି ସେ ଲକ୍ଷ୍ମୀଦେବୀଙ୍କ ନିକଟକୁ ନୂଆ ଲୁଗା ଓ ଟଙ୍କା ପଠାଇବାର ବ୍ୟବସ୍ଥା କରିଥିଲେ ।

ତାଙ୍କର ଦେହାନ୍ତ ହେବାର ମାସକ ପୂର୍ବରୁ, ତାଙ୍କ କୋଠରିରେ ଥିବା ଠାକୁରଙ୍କର ଫଟୋକୁ ନେଇଯିବାକୁ କହିଥିଲେ କାରଣ ଫଟୋ ଥିଲେ ସେଠାରେ ସେ ପାଇଖାନା କରି ପାରିବେ ନାହିଁ । ତାଙ୍କର ଏହି ଅସୁସ୍ଥତା ସତ୍ତ୍ୱେ, ସେ ସଦାସର୍ବଦା ନିଜକୁ ଠାକୁରଙ୍କର ଇଚ୍ଛା ଉପରେ ଛାଡ଼ି ଦେଇଥିଲେ । ଏପରିକି ରାଧୁ ସହିତ ତାଙ୍କର ଯେଉଁ ସଂପର୍କ ଥିଲା ତାହାକୁ ମଧ ସଂପୂର୍ଣ୍ଣ ତ୍ୟାଗ କରିଥିଲେ । ଠାକୁରଙ୍କ ତିରୋଧାନ ପରେ ଶ୍ରୀମା' ତାଙ୍କର ସଂପର୍କୀୟମାନଙ୍କ ସହିତ ସଂପର୍କ ରଖିବାର ମୂଳ କାରଣ ଥିଲା ସାଂସାରିକ ସ୍ତରରେ ସଚେତନ ରହି ଠାକୁରଙ୍କର ଆବିର୍ଭାବର ଉଦ୍ଦେଶ୍ୟକୁ ପୂରଣ କରିବା । ତାହା ସେ ପୂରଣ କରିସାରି, ଠାକୁରଙ୍କ ନିକଟକୁ ଫେରିଯିବାକୁ ନିଜକୁ ପ୍ରସ୍ତୁତ କରୁଥିଲେ । ଦିନକୁ ଦିନ ସ୍ୱାସ୍ଥ୍ୟ ଖରାପ ଆଡ଼କୁ ଗତିକଲା । ଗୋଡ଼ ଫୁଲିବାକୁ

ଲାଗିଲା । ଏପରିକି ସେ ବିଛଣାରୁ ଉଠି ପାରିଲେ ନାହିଁ । ତାଙ୍କର ମୃତ୍ୟୁର ପାଞ୍ଚଦିନ ପୂର୍ବରୁ ଜଣେ ମହିଳା ଭକ୍ତ ଯାହାଙ୍କୁ ଅନ୍ନପୂର୍ଣ୍ଣାର ମା' ବୋଲି ଡାକନ୍ତି, ତାଙ୍କୁ ଦେଖା କରିବାକୁ ଆସିଲେ । ଯେହେତୁ ତାଙ୍କ ସହିତ କାହାର ସାକ୍ଷାତ୍ ପାଇଁ ଅନୁମତି ଦିଆଯାଉନଥିଲା, ତେଣୁ ସେ ଦୁଆର ମୁହଁ ପାଖରେ ବସି ରହିଲେ । ମା' ତାଙ୍କୁ ଦେଖିପାରି ପାଖକୁ ଡାକିଲେ । ସେ ପ୍ରଣାମ ଜଣାଇ କାନ୍ଦିବାକୁ ଲାଗିଲେ । 'ମା', ଆପଣଙ୍କ ଯିବାପରେ ଆମର କ'ଣ ହେବ ?' ମା' ତାଙ୍କୁ ଅତ୍ୟନ୍ତ କ୍ଷୀଣ ସ୍ୱରରେ ସାନ୍ତ୍ୱନା ଦେଇ କହିଲେ, 'ତୁମେ ଭୟ କରୁଛ କାହିଁକି ? ତୁମେ ଠାକୁରଙ୍କୁ ଦେଖିଛ । କିନ୍ତୁ ମୁଁ ତୁମକୁ ଗୋଟିଏ କଥା କହୁଛି- ଯଦି ତୁମ ମନରେ ଶାନ୍ତି ଚାହଁ, ଅନ୍ୟର ଦୋଷ ଦେଖ ନାହିଁ । ବରଂ ନିଜର ଦୋଷ ଦେଖ । ଏହି ସମଗ୍ର ଜଗତକୁ ନିଜର କରି ଶିଖ । ସନ୍ତାନ ମୋର, କେହି ତୁମର ପର ନୁହେଁ । ଏହି ସମଗ୍ର ଜଗତ ତୁମ ନିଜର ।' ବୋଧହୁଏ ଏହାହିଁ ଥିଲା ସମଗ୍ର ଜଗତକୁ ତାଙ୍କର ଶେଷବାର୍ତ୍ତା ।

ଶେଷ ତିନିଦିନ ସେ କିଛି କହି ନଥିଲେ । କେହି ଯାଇ କଥାବାର୍ତ୍ତା କଲା ବେଳେ ବିରକ୍ତି ପ୍ରକାଶ କରୁଥିଲେ । ଦିନେ ଗୌରୀମା' ତାଙ୍କ ବିଛଣାକୁ ଯାଇ କେତେଥର ଡାକିଲେ । ସେ ତାଙ୍କୁ ଡାକି ହଇରାଣ ନ କରିବାକୁ ଇଙ୍ଗିତ ଦେଲେ । କେବଳ ଥରେ ମାତ୍ର ସ୍ୱାମୀ ସାରଦାନନ୍ଦଙ୍କୁ ଡାକି କହିଥିଲେ, 'ଶରତ୍, ମୁଁ ଚାଲିଲି । ଯୋଗୀନ୍, ଗୋଲାପ ଓ ଅନ୍ୟମାନେ ଏଠାରେ ଅଛନ୍ତି । ତୁମେ ତାଙ୍କର ଦେଖାଶୁଣା କରିବ ।' ଏହା ଥିଲା ତାଙ୍କର ଶେଷବାକ୍ୟ । ମୃତ୍ୟୁର ଶେଷଦିନ ପୂର୍ବରୁ ଶରତ୍ ମହାରାଜଙ୍କୁ ଡାକି କିଛି କହିବା ପାଇଁ ଚାହିଁଥିଲେ କିନ୍ତୁ କହି ପାରି ନଥିଲେ ।

ସେ ୧୯୨୦ ମସିହା ଜୁଲାଇ ୨୦ ତାରିଖ ରାତି ୧.୩୦ ମିନିଟ୍ ସମୟରେ ମହାସମାଧି ଲାଭ କଲେ । ମୃତ୍ୟୁ ସମୟରେ ତାଙ୍କର ମୁଖ ମଣ୍ଡଳ ଓ ଶରୀର କଳା ପଡ଼ିଯାଇ ଥିଲେ ହେଁ, କ୍ରମଶଃ ତାହା ଉଜ୍ଜ୍ୱଳ ସ୍ୱର୍ଣ୍ଣରଙ୍ଗରେ ରୂପାନ୍ତରିତ ହୋଇ ଦେବୀ ଦୁର୍ଗାଙ୍କର ରୂପ ଧାରଣ କରିଥିଲା । ତାଙ୍କର ମରଶରୀରକୁ ବେଲୁଡ଼୍ ମଠକୁ ସକାଳେ ଏକ ବିରାଟ ଶୋଭାଯାତ୍ରାରେ ନିଆଗଲା । ସ୍ୱାମୀ ସାରଦାନନ୍ଦ, ସ୍ୱାମୀ ଶିବାନନ୍ଦ, ମାଷ୍ଟର ମହାଶୟ ଓ ଅଗଣିତ ଭକ୍ତଙ୍କ ଗହଣରେ ଗଙ୍ଗାନଦୀ କୂଳରେ ଦିନ ୨ଟା ବେଳେ ଚିତାରେ ଅଗ୍ନି ସଂଯୋଗ କରାଗଲା । ବେଲୁଡ୍ ମଠର ସେହି ସ୍ଥାନରେ ବର୍ତ୍ତମାନ ଶ୍ରୀମା'ଙ୍କର ମନ୍ଦିର ଦଣ୍ଡାୟମାନ ହୋଇ ଅଗଣିତ ଭକ୍ତମାନଙ୍କର ଶ୍ରଦ୍ଧା ଓ ଭକ୍ତି ସମର୍ପଣର ପୁଣ୍ୟଧାମରେ ପରିଣତ ହୋଇଛି ଏବଂ ଭକ୍ତ ହାତଯୋଡ଼ି କହୁଛି, 'ହେ ଜଗତ୍ ଜନନୀ, ହେ ମାତଃ, ହେ ଅଭୟବର ଦାୟିନୀ ! ମୋତେ ଜଗତର କଲ୍ୟାଣ କରିବାପାଇଁ ଆଶୀର୍ବାଦ କର । ମା' ! ମୋ ହୃଦୟରୁ ସମସ୍ତ ପ୍ରକାର

କାପୁରୁଷତା, ଦୁର୍ବଳତାକୁ ଦୂର କରି ମୋତେ ମନୁଷ୍ୟ କର । ମା', ମୋତେ ମନୁଷ୍ୟ କର । ' ଏବଂ ପାର୍ଥନା କରୁଛି-

ସର୍ବ ମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣି ନମୋଽସ୍ତୁତେ ॥
ସୃଷ୍ଟି ସ୍ଥିତି ବିନାଶାନାମ୍ ଶକ୍ତିଭୂତେ ସନାତନି ।
ଗୁଣାଶ୍ରୟେ ଗୁଣମୟେ ନାରାୟଣି ନମୋଽସ୍ତୁତେ ॥
ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ ।
ସର୍ବସ୍ୟାର୍ତ୍ତି ହରେଦେବି ନାରାୟଣି ନମୋଽସ୍ତୁତେ ॥



# ଶ୍ରୀ ଶ୍ରୀ ମା'ଙ୍କର ଉପଦେଶ

୧. ସମସ୍ତ ବାସନା ତ୍ୟାଗ କରି ଯେଉଁମାନେ ସଚ୍ଚିଦାନନ୍ଦଙ୍କୁ ଚାହାଁନ୍ତି, ସେମାନେ ମୁକ୍ତ ହୋଇ ଯାଆନ୍ତି । ବାସନା ହିଁ ଅତୀତର ଅନନ୍ତ ସଂସ୍କାର ଗୁଡ଼ିକୁ ଜଗାଇଦିଏ ।

୨. ଠାକୁରେ ଏଥର ଦୟାକରି ଲୋକଙ୍କ ମଙ୍ଗଳ ପାଇଁ କଠୋର ତପସ୍ୟା କରିଗଲେ । କେବଳ ହାଡ଼ ଆଉ ଚମଡ଼ା ରହିଥିଲା । ତା' ସାଙ୍ଗକୁ ଲୋକମାନଙ୍କର ପାପନେଇ ରୋଗଭୋଗ । ତାଙ୍କୁ ଭକ୍ତି, ଶ୍ରଦ୍ଧା, ବିଶ୍ୱାସ କଲେ, ତାଙ୍କର ନାମ ଜପ ଲୀଳାଧ୍ୟାନ କଲେ ହିଁ କୁଣ୍ଡଳିନୀ ଆନନ୍ଦରେ ଆପଣା ଛାଏଁ ଜାଗି ଉଠିବେ ।

୩. ଯଦି ଶାନ୍ତି ଚାହଁ, କାହାରି ଦୋଷ ଦେଖ ନାହିଁ । କେବଳ ନିଜର ଦୋଷ ଦେଖିବ । ଜଗତକୁ ଆପଣାର କରିନେବାକୁ ଶିଖ । କେହି ପର ନୁହେଁ, ଜଗତ ତୁମର ।

୪. ଧ୍ୟାନ ନ ହେଲେ ବି ଜପ କରିବ । ଜପାତ୍ ସିଦ୍ଧି, ଜପାତ୍ ସିଦ୍ଧି, ଜପାତ୍ ସିଦ୍ଧି । ମନ ନ ଲାଗିଲେ ବି ଜପଧ୍ୟାନ ଛାଡ଼ିବ ନାହିଁ ।

୫. ଯେଉଁ ବ୍ୟକ୍ତି ଠାକୁର ଶ୍ରୀରାମକୃଷ୍ଣଙ୍କ ଶରଣାଗତ ହୁଏ, ତା'ର ବ୍ରହ୍ମଶାପରେ ମଧ କିଛି କ୍ଷତି ହୁଏ ନାହିଁ ।

୬. ମା', କେତେ ସୌଭାଗ୍ୟରୁ ଆମେ ଏହି ମଣିଷ ଜନ୍ମ ପାଇଛେ । ଯେତେ ପାର, ଭଗବାନଙ୍କୁ ଡାକି ଯାଅ । ସଂସାରର କାମଦାମ ଭିତରେ ଗୋଟିଏ ସମୟକରି ଭଗବାନଙ୍କୁ ଡାକିବାକୁ ହୁଏ ।

୭. ଯେତେବେଳେ ଦୁଃଖ ବିପଦ ଆସିବ, ସେତେବେଳେ କେବଳ ଏତିକି କୁହ 'ମୋର ଜଣେ ମାଆ ଅଛନ୍ତି ।'

୮. ସ୍ୱାମୀ କୁହ, ପୁତ୍ର କୁହ, ଦେହ କୁହ, ସବୁ ମାୟା; ଏଗୁଡ଼ିକ ବନ୍ଧନ । ଏହି ବନ୍ଧନକୁ ଛିନ୍ନ ନ କରି ପାରିଲେ ଏହି ସଂସାର ସମୁଦ୍ର ପାର ହୋଇପାରିବ ନାହିଁ; ଅର୍ଥାତ୍ ଜୀବନ୍ମୁକ୍ତ ହୋଇ ପାରିବ ନାହିଁ ।

୯. ସର୍ବଦା ଇଷ୍ଟ ବା ଈଶ୍ୱର ଚିନ୍ତା କଲେ ଅନିଷ୍ଟ ବା ଅଶୁଭ ପାଖ ପଶି ପାରନ୍ତି ନାହିଁ । ଅଭ୍ୟାସ କଲେ କ୍ରମଶଃ ବୁଝିପାରିବ । ଅସମ୍ଭବ ସମ୍ଭବ ହେବ ।

୧୦. ସାଧନା କରୁ କରୁ ଦେଖିବ, ମୋ ଅନ୍ତରରେ ଯିଏ, ତୁମ ଅନ୍ତରରେ ମଧ୍ୟ ସେ । ହାଡ଼ି, ପାଣ, କଣ୍ଡରାଙ୍କ ଅନ୍ତରରେ ମଧ୍ୟ ସେ ବିରାଜମାନ ଏହିପରି ଭାବିଲେ ସିନା ଅହଂକାର କଟିବ ।

୧୧. ଚାପୁଡ଼ା ତରରେ ଅନେକ ରାମନାମ କରନ୍ତି; କିନ୍ତୁ ଶୈଶବରୁ ଫୁଲ ପରି ମନଟିକୁ ଯେ ଭଗବାନଙ୍କ ଶ୍ରୀଚରଣରେ ଦେଇପାରେ, ସେ ଧନ୍ୟ ।

୧୨. ଅନ୍ୟମାନଙ୍କ ପ୍ରତି କର୍ତ୍ତବ୍ୟ କରିବ । ଈଶ୍ୱରଙ୍କୁ ପ୍ରେମ, ଶ୍ରଦ୍ଧା ଓ ଆତ୍ମ ନିବେଦନ କରିବ । ପବିତ୍ର ହୃଦୟରେ ଈଶ୍ୱରଙ୍କ ପ୍ରକାଶ ସମ୍ଭବ ହୁଏ ।

୧୩. ମଣିଷର ମନଟି ନିଜେ ଆଗେ ଦୋଷ କରେ, ତା'ପରେ ସେ ପରର ଦୋଷ ଦେଖେ । ଏଥିରେ କାହାର କଅଣ ହେବ ? କେବଳ ନିଜର କ୍ଷତି ।

୧୪. ମଣିଷ ଜୀବନ ଏକ ସୁଯୋଗ । ଯୁବାବୟସରେ ଦେହ ମନ ବେଶ୍ ସୁସ୍ଥ ସବଳ ଥାଏ । ସାଧନ, ଭଜନ, ଦାନ, ତୀର୍ଥ ପର୍ଯ୍ୟଟନ, ରୋଜଗାର ଏହି ସମୟରେ କରିବ ।

୧୫. ପାଣିର ସ୍ୱଭାବ ତଳକୁ ଯିବା, ତାହାକୁ ମଧ୍ୟ ସୂର୍ଯ୍ୟ କିରଣ ଆକାଶକୁ ଟାଣିନିଏ । ସେହିପରି ମନର ସ୍ୱଭାବ ନିମ୍ନମୁଖୀ ଭୋଗ ଆଡ଼କୁ, ତାହାକୁ ଭଗବାନଙ୍କ କୃପା ଊର୍ଦ୍ଧ୍ୱଗାମୀ କରିଦିଏ ।

୧୬. ମଣିଷର ଜନ୍ମ ଦୁଃଖରେ ଭରପୂର; ଭଗବାନଙ୍କ ନାମ ନେଇ ସବୁ ଧୈର୍ଯ୍ୟ ସହକାରେ ସହିଯିବାକୁ ହୁଏ । ଦେହ ଧାରଣ କଲେ ସ୍ୱୟଂ ଭଗବାନଙ୍କର ମଧ୍ୟ ଦୁଃଖ କବଳରୁ ତ୍ରାହି ନାହିଁ ।

୧୭. ମଣିଷ ତ ଭଗବାନଙ୍କୁ ଭୁଲି ରହିଛି । ତେଣୁ ଯେତେବେଳେ ପ୍ରୟୋଜନ ପଡ଼େ, ସେତେବେଳେ ସେ ଥରକୁ ଥର ଆସି ସାଧନ କରି ବାଟ ଦେଖାଇ ଦିଅନ୍ତି । ଏଥରକ ଦେଖାଇଲେ- ତ୍ୟାଗ । ସେ ଏଥରକ ଆସିଛନ୍ତି ଧନୀ, ନିର୍ଦ୍ଧନ, ପଣ୍ଡିତ, ମୂର୍ଖ ସମସ୍ତଙ୍କୁ ଉଦ୍ଧାର କରିବା ସକାଶେ । ଖୁବ୍ ଭଲ ଭାବରେ ମଳୟ ପବନ ବହୁଛି । ଯିଏ ଟିକିଏ ପାଲ ଟେକିଦେବ, ଶରଣାଗତ ହେବ, ସେ ଧନ୍ୟ ହୋଇଯିବ । ଥରେ ଯିଏ ଠାକୁରଙ୍କୁ ଡାକିଛି ତାର ଆଉ ଭୟ ନାହିଁ । ଠାକୁରଙ୍କୁ ଡାକୁ ଡାକୁ ତାଙ୍କର କୃପା ହେଲେ ପ୍ରେମ,ଭକ୍ତି ହେବ । ତାଙ୍କର ନାମ ନେବ, ତାଙ୍କଠାରେ ଅବିଚଳ ବିଶ୍ୱାସ ରଖିବ । ସଂସାରରେ ବାପ-ମା' ପିଲାଙ୍କର ଆଶ୍ରୟ ସ୍ଥଳ, ଠାକୁରଙ୍କୁ ସେହିପରି ଜ୍ଞାନ କରିବ ।

୧୮. ମଣିଷକୁ ଭଲ ପାଇଲେ ଦୁଃଖ ଭୋଗିବାକୁ ପଡ଼େ । ଏକମାତ୍ର ଭଗବାନଙ୍କୁ ଭଲ ପାଅ । ଭଗବାନଙ୍କୁ ଭଲ ପାଇଲେ କୌଣସି ଦୁଃଖ ନାହିଁ ।

୧୯. କେବଳ ନାମ କରିଯାଉଛି, କିନ୍ତୁ କାମ-କାର୍ଯ୍ୟରେ ମନ ରହିଛି, ସେଥିରେ କଅଣ ହେବ ?

୨୦. ଭଗବାନଙ୍କୁ ଡାକ ବା ନ ଡାକ । ଯିଏ ବିବାହ ନ କରେ ସେତ ଅର୍ଦ୍ଧମୁକ୍ତ । ଯେତେବେଳେ ଭଗବାନଙ୍କ ଆଡ଼କୁ ଟିକିଏ ମନ ଯିବ, ସେତେବେଳେ ସେ ହୁ ହୁ କରି ଆଗେଇ ଯିବ । ଆଉ ଯିଏ ବାନ୍ଧା ହୋଇ ସଂସାର କରେ, ତା'ର ଭଗବାନଙ୍କ ପ୍ରତି ମନ ହେଲେ ସୁଦ୍ଧା କୌଣସି ମତେ ଉଠିପାରେ ନାହିଁ । ହାତଗୋଡ଼ ସବୁ ବନ୍ଧା ।

୨୧. ମୁଁ ପାପୀର ମା', ତପିର ମଧ୍ୟ ।

୨୨. ଧ୍ୟାନ ଓ ଜପ କଲେ ମନର ମଇଳା ସଫା ହୋଇଯାଏ ଏବଂ ହୃଦୟ ନିର୍ମଳ ହୁଏ ।

୨୩. ଧ୍ୟାନ ସର୍ବଦା କଲେ ଅଭ୍ୟାସରେ ପରିଣତ ହେବ, ଆଉ ଛାଡ଼ିବାକୁ ମନ ହେବ ନାହିଁ ।

୨୪. ମୋତେ ଯିଏ ମାଆ ବୋଲି ଡାକି କିଛି ମାଗିବ, ମୁଁ ତାକୁ ସେଥିରୁ ବଞ୍ଚିତ କରିପାରିବି ନାହିଁ ।

୨୫. ଉପଭୋଗ୍ୟ ବସ୍ତୁର ସଂସ୍ପର୍ଶରେ ଆସିଲେ ତା'ର କବଳିତ ହେବାର ସମ୍ଭାବନା ଥାଏ । ତା'ଠାରୁ ନିରାପଦ ଦୂରତ୍ୱ ରକ୍ଷା କରିବ ।

୨୬. ନାରୀ ଭକ୍ତମାନେ ପୁରୁଷର ନିକଟତର ହେବେ ନାହିଁ । ଏପରିକି ନିଜ ପିତା ଭାଇ ସହ ମଧ୍ୟ ନୁହେଁ । ଅନ୍ୟମାନଙ୍କ କଥା କ'ଣ ବା କହିବି ? ପୁଣି ଥରେ କହୁଛି କୌଣସି ପୁରୁଷ ସହ ଘନିଷ୍ଠତା ରଖ ନାହିଁ ।

୨୭. ନାରୀମାନେ ବେଶୀ ବେଶଭୂଷାରେ ନିଜକୁ ସଜାଇବା ଠିକ୍ ନୁହେଁ । ପବିତ୍ରତା, ଲଜ୍ଜାଶୀଳତା, ବିନୟ ନାରୀର ଭୂଷଣ । ବେଶଭୂଷା ଅନ୍ୟକୁ ଆକୃଷ୍ଟ କରେ । ଯେପରି ରସିକ ଫୁଲର ଆଦର କରେ । ଶୁଙ୍ଘିସାରି ପାଦରେ ଦଳି ଦିଏ ।

□□

# ପରିଶିଷ୍ଟ - କ

## ଶ୍ରୀ ଶ୍ରୀ ମା' ସାରଦାଦେବୀଙ୍କର ଜନ୍ମ ଜାତକ
## ଶ୍ରୀଯୁକ୍ତ ନାରାୟଣଚନ୍ଦ୍ର ଜ୍ୟୋତିରଭୂଷଣଙ୍କ ଦ୍ୱାରା ପ୍ରସ୍ତୁତ

| | | | | | |
|---|---|---|---|---|---|
| | | ୧ | ୨ | ୩ | |
| ୧୨ | | | ଶନି ରାହୁ | ଲଗ୍ନ | |
| ୧୧ | | | | | ୪ |
| ୧୦ | ଶୁକ୍ର | | | ମଙ୍ଗଳ ଚନ୍ଦ୍ର | ୫ |
| | ବୃହସ୍ପତି ସୂର୍ଯ୍ୟ | ବୁଧ କେତୁ | | | ୬ |
| | ୯ | ୮ | ୭ | | |

ଜନ୍ମ ତାରିଖ - ୨୨ ଡିସେମ୍ବର ୧୮୫୩ ମସିହା
୧୨୬୦ ସାଲ ପୌଷ ଆଠ ତାରିଖ ଗୁରୁବାର ଦିନ
କୃଷ୍ଣା ସପ୍ତମୀ ତିଥି, ରାତ୍ରି ୨ଦଣ୍ଡ ୯ ପଳ

# ପରିଶିଷ୍ଟ (ଖ)


ଶ୍ରୀ ଶ୍ରୀମା'ଙ୍କର ପିତୃକୁଳର ବଂଶ ପରିଚୟ
ଖେଲାରାମ ମୁଖୋପାଧ୍ୟାୟ
ନରୋତ୍ତମ
ବୈଦ୍ୟନାଥ
କାର୍ତ୍ତିକ ରାମ
ରାମଚନ୍ଦ୍ର-ଶ୍ୟାମାସୁନ୍ଦରୀ
ତ୍ରୈଲୋକ୍ୟ
ଈଶ୍ୱର
ସୂର୍ଯ୍ୟନାରାୟଣ
ନୀଳମାଧବ
ସାରଦାମଣି
କାଦମ୍ବିନୀ
ପ୍ରସନ୍ନ କୁମାର
(ବଡ଼ମାମୁଁ)
ଉମେଶ ଚନ୍ଦ୍ର
କାଳୀ କୁମାର
ସୁବୋଧ ବାଳା
ବରଦାପ୍ରସାଦ
ଇନ୍ଦୁମତୀ
ଅଭୟ ଚରଣ
ସୁରବାଳା
ରାମପ୍ରିୟା
ସୁବାସିନୀ
ଭୂଦେବ
ରାଧାରମଣ
କ୍ଷୁଦିରାମ
ବିଜୟକୃଷ୍ଣ
ରାଧାରାଣୀ
ନଳିନୀ
ସୁଶୀଳା(ମାକୁ)
କମଳା
ବିମଳା
ଗଣପତି

# ପରିଶିଷ୍ଟ -ଗ

୧. ଜୟରାମବାଟୀରେ ଜନ୍ମ - ୨ ଡିସେମ୍ବର ୧୮୫୩ ମସିହା
୨. ବିବାହ ଓ କାମାରପୁକୁରକୁ ଆଗମନ - ମେ ୧୮୫୯
୩. ଦକ୍ଷିଣେଶ୍ୱର ଆଗମନ - ମାର୍ଚ୍ଚ ୧୮୭୨
୪. ଶ୍ରୀରାମକୃଷ୍ଣଙ୍କର ସେବା - ମାର୍ଚ୍ଚ ୧୮୭୨ ରୁ ସେପ୍ଟେମ୍ବର ୧୮୮୫
୫. ଶ୍ରୀରାମକୃଷ୍ଣଙ୍କର ମା'ଙ୍କୁ ଷୋଡଶୀ ପୂଜା- ୫ ଜୁନ୍ ୧୮୭୨
୬. ଦକ୍ଷିଣେଶ୍ୱରଠାରୁ କାମାରପୁକୁରକୁ - ଅକ୍ଟୋବର ୧୮୭୩
୭. ତାଙ୍କ ପିତା ରାମଚନ୍ଦ୍ର ମୁଖାର୍ଜୀଙ୍କର ମୃତ୍ୟୁ- ୨୬, ମାର୍ଚ୍ଚ ୧୮୭୪
୮. ଶ୍ରୀରାମକୃଷ୍ଣଙ୍କର ଶ୍ୟାମାପୁକୁର ଓ କାଶୀପୁରଠାରେ ସେବା- ଅକ୍ଟୋବର ୧୮୮୫ ଠାରୁ ଅଗଷ୍ଟ ୧୮୮୬
୯. ଶ୍ରୀରାମକୃଷ୍ଣର ମହାସମାଧି - ୧୬ ଅଗଷ୍ଟ ୧୮୮୬
୧୦. ବୃନ୍ଦାବନକୁ ତୀର୍ଥଯାତ୍ରା - ୩୦ ଅଗଷ୍ଟ ୧୮୮୬
୧୧. ପଞ୍ଚତପା ବ୍ରତ ପାଳନ- ୧୮୯୩
୧୨. ବେଲୁଡ ମଠ ଦର୍ଶନ - ୧୨ ନଭେମ୍ବର ୧୮୯୮
୧୩. ମା'ଙ୍କ ସେବାରେ ଗଭୀର ଯତ୍ନ ନେଉଥିବା ଠାକୁରଙ୍କର ଶିଷ୍ୟ ସ୍ୱାମୀ ଯୋଗାନନ୍ଦଙ୍କର ଦେହାନ୍ତ - ୨୮ ମାର୍ଚ୍ଚ ୧୮୯୯
୧୪. ସାନଭାଇ ଅଭୟଚରଣର ମୃତ୍ୟୁ - ୨ ଅଗଷ୍ଟ ୧୮୯୯
୧୫. ରାଧୁର ଜନ୍ମ - ୨୬ ଜାନୁଆରୀ ୧୯୦୦
୧୬. ମା' ଶ୍ୟାମା ସୁନ୍ଦରୀ ଦେବୀଙ୍କର ମୃତ୍ୟୁ- ଜାନୁଆରୀ ୧୯୦୬
୧୭. ଗିରିଶ ଘୋଷଙ୍କ ଘରେ ଦୁର୍ଗାପୂଜା- ୧୯୦୭
୧୮. ଉଦ୍‌ବୋଧନକୁ ପ୍ରଥମ ପ୍ରବେଶ- ୨୩ ତମ ୧୯୦୯
୧୯. ରାମେଶ୍ୱରକୁ ତୀର୍ଥଯାତ୍ରା- ୧୯୧୧
୨୦. ଓଡ଼ିଶାରେ ପଦାର୍ପଣ
୨୧. ରୋଗରେ ଆକ୍ରାନ୍ତ - ଡିସେମ୍ବର ୧୯୧୯
୨୨. ମହାସମାଧି - ୨୧ ଜୁଲାଇ ୧୯୨୦ ରାତି ୧.୩୦ ମିନିଟ୍ ।

# ସହାୟକ ଗ୍ରନ୍ଥସୂଚୀ

1. ଶ୍ରୀଶ୍ରୀମା' ସାରଦାଦେବୀ - ସ୍ୱାମୀ ଗମ୍ଭୀରାନନ୍ଦ
ଶ୍ରୀରାମକୃଷ୍ଣ ମଠ, ଭୁବନେଶ୍ୱର ଦ୍ୱାରା ପ୍ରକାଶିତ
ତୃତୀୟ ସଂସ୍କରଣ
2. The Gospel of the Holy Mother
Recorded by Her Devotee Children
Published Sri Ramakrishna Math, Madras
Published on 1-5-84
3. Sri Sarada Devi- The great wonder
by Apostles, Monks, Savants, Scholars,
Published by Ramakrishna Mission, New Delhi.
First Edition 1984
4. Sri Sarada Devi The Holy Mother
by Swami Tapasyananda
Published by Sri Ramakrishna Math, Madras.
Sixth Edition - 1986
5. Holy mother Sri Sarada Devi
Swami Gambhirananta
Published by Sri Ramakrishna Math, Madras.
Fourth Edition, 1986
6. The Holy Mother
Swami Nivvedananda
Sri Sarada Math, Dakshineswar, Calcutta
June - 1983
7. The Mother as I saw her
by Swami Saradeshanda
First Edition, 1982
8. ଶ୍ରୀ ସାରଦାଦେବୀ, ସଂକ୍ଷିପ୍ତ ଜୀବନୀ ଓ ଉପଦେଶ (ହିନ୍ଦୀ)
ସ୍ୱାମୀ ଅପୂର୍ବାନନ୍ଦ
ରାମକୃଷ୍ଣ ମଠ, ନାଗପୁର,
୩ୟ ପ୍ରକାଶ ୧୯୮୪

